# ଶେଷ ଠିକଣା

(ପାଞ୍ଚଗୋଟି ନାଟକର ସଂକଳନ)




ନାଟ୍ୟକାର :

ଶ୍ରୀ ଦିଲ୍ଲୀଶ୍ୱର ମହାରଣା


Digitized by PPRACHIN, SOA

# ଶେଷ ଠିକଣା
## ଦ୍ୱିତୀୟ ଈଶ୍ୱର, ଆସନ୍ନ ପ୍ରଳୟ, ସୂର୍ଯ୍ୟପରାଗ
## ସୂର୍ଯ୍ୟ ଉଇଁବାର ବେଳ


ନାଟ୍ୟକାର :
**ଶ୍ରୀ ଦିଲ୍ଲୀଶ୍ୱର ମହାରଣା**
ମୋ - ୯୪୩୭୦୮୨୬୦୪

ପ୍ରକାଶିକା :
**ଶ୍ରୀମତୀ ଶୈଳବାଳା ମହାରଣା**
କ୍ଳାନ୍ତିହରା, ବଳରାମ ବିହାର
ଜୁବୁଲିଟାଉନ, ଢେଙ୍କାନାଳ
ମୋ - ୯୮୬୧୦୩୪୨୮୩

ପ୍ରକାଶକାଳ :
**ଡିସେମ୍ବର - ୨୦୧୪**

ମୁଦ୍ରଣ :
**ପ୍ରିଣ୍ଟ ଏନ୍ ପ୍ରିଣ୍ଟ ଡିଜିଟାଲ୍**
ଜଗନ୍ନାଥ ରୋଡ୍, ଢେଙ୍କାନାଳ
ମୋ-୮୯୦୮୧୬୨୩୭୨

ପ୍ରାପ୍ତିସ୍ଥାନ :
**ବାବାଜୀ ପାତ୍ର ବୁକ୍‌ଷ୍ଟୋର୍**
ଲକ୍ଷ୍ମୀବଜାର, ଢେଙ୍କାନାଳ
**ଲେଙ୍କା ବୁକ୍‌ଷ୍ଟୋର**
ମହାବୀର ବଜାର, ଢେଙ୍କାନାଳ

ମୂଲ୍ୟ : **ଟ ୨୦୦/-**





Playwright :
**Sri Dilliswar Moharana**
Mob - 9437082604

Publisher :
**Smt. Sailabala Moharana**
Klantihara, Balaram Vihar
Jubuli Town, Dhenkanal
Mob - 9861034283

Year of Publication :
**December - 2014**

Printed at :
**Print 'n' Print Digital**
Jagannath Road, Dhenkanal
Mob - 8908162372

Available at :
**Babaji Patra Book Store**
Laxmi Bazar, Dhenkanal
**Lenka Book Store**
Mahavir Bazar, Dhenkanal

Price: **Rs 200/-**




Digitized by PPRACHIN, SOA

# କିଛି କଥା

ଗାଳ୍ପିକ ତଥା ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ବିଶିଷ୍ଟ ନାଟ୍ୟକାର ବନ୍ଧୁ ଶ୍ରୀ ଆନନ୍ଦଚନ୍ଦ୍ର ପହିଙ୍କ ଗଳ୍ପ 'ପଣବନ୍ଦୀ' କିଛି ବର୍ଷ ପୂର୍ବେ ଏକ ସାହିତ୍ୟ ପତ୍ରିକାରେ ପଢିଥିଲି । ଗଳ୍ପଟିର କଥାବସ୍ତୁ ମୋତେ ଭଲ ଲାଗିବାରୁ ତାଙ୍କୁ ବଧେଇ ଜଣାଇବା ସଂଗେ ସଂଗେ ଏହାକୁ ନାଟ୍ୟରୂପ ଦିଆଗଲେ ଭଲ ନାଟକଟିଏ ହେବ ବୋଲି ତାଙ୍କୁ ଅନୁରୋଧ କଲି । କାରଣ ପହିବାବୁ ତାଙ୍କ ପ୍ରକାଶିତ ଅନେକ ଗଳ୍ପକୁ ପରେ ନାଟକ ଆକାରରେ ପ୍ରକାଶ କରିଥାନ୍ତି । ମୋ ପ୍ରସ୍ତାବ ଶୁଣୁ ଶୁଣୁ ବନ୍ଧୁ କହିଲେ ଯେହେତୁ ଆପଣ ଗଳ୍ପଟିକୁ ପସନ୍ଦ କରିଛନ୍ତି ନାଟ୍ୟରୂପ ଦେବା କାମଟାକୁ ଆପଣ ହିଁ ହାତକୁ ନେବାକୁ ପଡିବ । ମୂଳ କାହାଣୀକୁ ଏକ ପୂର୍ଣ୍ଣାଙ୍ଗ ନାଟକ କରିବା ପାଇଁ ଏଥିରେ ଆଉକିଛି ଚରିତ୍ର ଯୋଗକଲେ ଗଳ୍ପର ବକ୍ତବ୍ୟ ଆହୁରି ବଳିଷ୍ଠ ଢଙ୍ଗରେ ଉପସ୍ଥାପନ କରାଯାଇପାରିବ ବୋଲି ମୋର ମନେହେଲା । ଏଇ କଥା ପ୍ରକାଶ କରୁ କରୁ ବନ୍ଧୁ ବିନା ଦ୍ୱିଧାରେ, ମୋତେ ଅନୁମତି ଦେଇଦେଲେ । ଏଥିରେ ଯୋଗ କରାଯାଇଥିବା ନୂତନ ଚରିତ୍ରଗୁଡିକ ହେଲା ଗଳ୍ପର ମୁଖ୍ୟ ଚରିତ୍ର ସନାତନଙ୍କ ଦୁଇବନ୍ଧୁ 'ଅକାରଣ' ଓ 'ଶିବାନନ୍ଦ' ଏବଂ ନାତିଆ ଟୋକା 'ଅସୀମ' । ଏହା ବ୍ୟତୀତ ଗମ୍ଭୀର ସମସ୍ୟାଭରା ଏଇ ନାଟକରେ ସାମାନ୍ୟ କିଛି ହାସ୍ୟରସ ଭରିଦେବା ଉଦ୍ଦେଶ୍ୟରେ 'ଯୋଗେଶ' ଓ 'ରଥଶର୍ମା'ଙ୍କ ଚରିତ୍ର । ଯାହାହେଉ ନାଟକ ଲେଖା ଶେଷ ହେଲାପରେ ନାମ ରଖାଗଲା 'ବୁଢା ବାପର ଶେଷ ଠିକଣା' ।

ସାଧାରଣତଃ ମୁଁ ଯେତେବେଳେ କିଛି ନାଟକ ଲେଖା ଶେଷ କରେ ପ୍ରଥମେ ମୋ ନାଟ୍ୟ ସଂସ୍ଥା 'କଳାପରିଷଦ' ଢେଙ୍କାନାଳ ଦ୍ୱାରା ତାକୁ ମଞ୍ଚନ କରାଇ ତା'ର ଶକ୍ତି ପରୀକ୍ଷା କରିନିଏ । ସେଇ ଢଙ୍ଗରେ ଏଇ ନାଟକର ମଧ ପ୍ରାକ୍ ଅଭ୍ୟାସ କାର୍ଯ୍ୟ ଆରମ୍ଭ କରିଦେଲି । କିନ୍ତୁ ନାଟକ ପ୍ରସ୍ତୁତ ହୋଇସାରିଥିଲେ ମଧ କୌଣସି ନା କୌଣସି କାରଣ ନେଇ ନାଟକଟି ମଞ୍ଚସ୍ଥ ନହୋଇ ଅଟକି ରହିଲା । ଏଇପରି ଦୁଇ ଦୁଇ ଥର ଅଟକି ରହିଯିବା ଯୋଗୁଁ ମୁଁ କିଛିଟା ନିରାଶ ବି ହେଲି । ଏମିତି ତିନି ବର୍ଷ କାଳ କଟିଗଲା । ଥରେ ରାଉରକେଲାର ପ୍ରମୁଖ ନାଟ୍ୟାନୁଷ୍ଠାନ



Digitized by PPRACHIN, SOA

'ପ୍ରତିଧ୍ୱନି'ର ସଂଯୋଜକ ତଥା ନାଟ୍ୟ ନିର୍ଦ୍ଦେଶକ ବନ୍ଧୁ ଶରତ ଦାସଙ୍କ ସହିତ କଥା ହେଉହେଉ ଏଇ କଥାଟି ପ୍ରକାଶ କଲି । ମୋ କଥା ଶୁଣୁ ଶୁଣୁ ସେ ପାଣ୍ଡୁଲିପିଟି ପଢିବାକୁ ଇଚ୍ଛା କଲେ । ପାଣ୍ଡୁଲିପିଟି ପଢିଲା ପରେ 'ବୁଢାବାପର ଶେଷ ଠିକଣା' ନାମକୁ କେବଳ 'ଶେଷ ଠିକଣା' ନାମ ରଖି ପ୍ରଥମେ 'ପ୍ରତିଧ୍ୱନି' ସଂସ୍ଥା ଦ୍ୱାରା ମଞ୍ଚସ୍ଥ କରାଇବାକୁ ଆଗେଇ ଆସିଲେ । ରାଉରକେଲାର ପ୍ରମୁଖ ସାଂସ୍କୃତିକ ଅନୁଷ୍ଠାନ 'କଲଚରାଲ୍ ଏକାଡେମୀ'ର ସୁବର୍ଣ୍ଣ ଜୟନ୍ତୀ ନାଟ୍ୟ ମହୋତ୍ସବରେ ଶରତ ବାବୁ ନିଜେ ଗୋଟିଏ ଚରିତ୍ରରେ ଅଭିନୟ କରିବା ସଂଗେ ସଂଗେ ନିର୍ଦ୍ଦେଶନାର ଦାୟିତ୍ୱ ନେଇ ସିଭିକ୍ ସେଣ୍ଟର ମଞ୍ଚରେ ବଡ ସଫଳତାର ସହ ପରିବେଷଣ କରାଇଲେ । ରାଉରକେଲା ସହର ଏକ ସଂସ୍କୃତିସଂପନ୍ନ ସହର । ଏହା ନାଟ୍ୟଜଗତ ପାଇଁ ଅନ୍ୟତମ 'ତୀର୍ଥଭୂମି' ବୋଲି ନାମିତ କରାଯାଇପାରେ । କାରଣ ଏ ମାଟିରେ ବର୍ଷକ ମଧ୍ୟରେ ଶତାଧିକ ନାଟକ ମଞ୍ଚସ୍ଥ କରାଯିବାର ସମୃଦ୍ଧ ପରମ୍ପରା ଚାଲୁରହିଛି । ମୋର ଯାହା ମନେହୁଏ ଏ ସହରର ନାଟ୍ୟରସିକ ଦର୍ଶକଗଣ ଭରତମୁନୀଙ୍କ ନାଟ୍ୟ ଶାସ୍ତ୍ରରେ ବର୍ଣ୍ଣିତ 'ପ୍ରେକ୍ଷକ' ଓ 'ପ୍ରାଶ୍ନିକ' ଭୂମିକା ବେଶ ସଚେତନ ଢଙ୍ଗରେ ତୁଲାଇ ଥାଆନ୍ତି । କୌଣସି ନାଟକ ଉପଭୋଗ କଲାବେଳେ ସେମାନେ ଯେମିତି କରତାଳି ଦେଇ ନାଟ୍ୟ ଶିଳ୍ପୀମାନଙ୍କୁ ଉତ୍ସାହିତ କରିଥାନ୍ତି - ଶେଷ ହେଉ ହେଉ ସେମିତି ନାଟକର ଭଲମନ୍ଦ ଉଭୟ ଦିଗନେଇ ମତାମତ ଦେବାକୁ ଭୁଲନ୍ତି ନାହିଁ । ଯାହାହେଉ 'ଶେଷଠିକଣା'ର ପ୍ରଥମ ମଞ୍ଚ ପ୍ରଦର୍ଶନ ସମୟରେ ଜଣେ ଦର୍ଶକ ଭାବରେ ମୁଁ ଉପସ୍ଥିତ ଥିଲି ଏବଂ ମଝିରେ ମଝିରେ ଦର୍ଶକମାନଙ୍କ ପ୍ରତିକ୍ରିୟାକୁ ଲକ୍ଷ୍ୟ କରୁଥିଲି । ସେଇ ସଂଧ୍ୟାରେ ନାଟକର ଅନ୍ତିମ ଦୃଶ୍ୟ ଅଭିନୟ ଶେଷହେଲା ପରେ ମଧ୍ୟ ଅଧିକାଂଶ ଦର୍ଶକ ନିଜ ନିଜ ଆସନରେ ନୀରବରେ ବସିରହିବାର ଦୃଶ୍ୟ ମୋତେ ଅଭିଭୂତ କଲା । ମୋର ପ୍ରୟାସ ସଫଳ ହୋଇଛି ବୋଲି ମନେ କଲି । ପରେ ଢେଙ୍କାନାଳ କଳାପରିଷଦ ଏ ନାଟକକୁ 'ପଣବନ୍ଧୀ' ନାମରେ ମଞ୍ଚସ୍ଥ କରିବାକୁ ଇଚ୍ଛା କରିବାରୁ ମୂଳ ପାଣ୍ଡୁଲିପିରେ କିଛି ସଂଶୋଧନ ତଥା କିଛି ଦୃଶ୍ୟ ଯୋଗକରି ପ୍ରଥମେ ଓଡିଶା ସଂଗୀତ ନାଟକ ଏକାଡେମୀ ଆୟୋଜିତ ଜୋନ୍‌ସ୍ତରୀୟ ନାଟ୍ୟ ପ୍ରତିଯୋଗିତା, ପୁରୀର ପୌରସଦନ ପ୍ରେକ୍ଷାଳୟରେ ଓ



Digitized by PPRACHIN, SOA

ପରେ ଗଞ୍ଜାମ ଜିଲ୍ଲା ନାଟ୍ୟ ସମାରୋହ ସମିତି ଆନୁକୂଲ୍ୟରେ ବ୍ରହ୍ମପୁରର ଗଞ୍ଜାମ କଳାପରିଷଦ ପରିସରରେ ପରିବେଷିତ ହେଲା । ରାଉରକେଲା ଭଳି ପୁରୀ ଓ ବ୍ରହ୍ମପୁରରେ ଦର୍ଶକମାନଙ୍କ ପ୍ରତିକ୍ରିୟା ପ୍ରାୟତଃ ସମାନ ଥିଲା । କାରଣ ଏହା ହୋଇପାରେ ଯେ ଚଳନ୍ତି ସମୟରେ ପ୍ରାୟ ଅଧିକାଂଶ ପିତାମାତା ସେମାନଙ୍କ ପରିଣତ ବୟସରେ ଏ ଧରଣର କିଛି ସମସ୍ୟାର ସମ୍ମୁଖିନ ହେବାକୁ ବାଧ ହେଉଛନ୍ତି ।

ନାଟକଟି ଏବେ 'ଶେଷ ଠିକଣା' ନାମରେ ପୁସ୍ତକ ଆକାରରେ ପ୍ରକାଶିତ ହେବାକୁ ଯାଉଛି । ଏଇ ଅବସରରେ ପ୍ରତିଧ୍ୱନି ପରିବାର ରାଉରକେଲା ବିଶେଷତଃ ଶରତ ଦାସଙ୍କୁ ଏବଂ କଳାପରିଷଦ ଢେଙ୍କାନାଳର ଶିଳ୍ପୀମାନଙ୍କୁ ଅଶେଷ ଧନ୍ୟବାଦ ଦେଉଛି । ଆଉମଧ ବନ୍ଧୁ ଆନନ୍ଦଚନ୍ଦ୍ର ପହିଙ୍କ ପାଖରେ କୃତଜ୍ଞତା ଜଣାଇ ରହୁଛି । ତାଙ୍କ ଅନୁମତି କ୍ରମେ ଏ ନାଟକ ଶେଷରେ 'ପଣବନ୍ଦୀ' ମୂଳ ଗଳ୍ପଟି ମଧ ଦିଆଯାଇଛି ।

ଏଇ ସଂକଳନଟିରେ ମୋ ଲିଖିତ ଅନ୍ୟ ଚାରିଗୋଟି ନାଟକ 'ଆସନ୍ନ ପ୍ରଳୟ', 'ଦ୍ୱିତୀୟ ଈଶ୍ୱର', 'ସୂର୍ଯ୍ୟପରାଗ' ଓ 'ସୂର୍ଯ୍ୟ ଉଇଁବାର ବେଳ' ମଧ ସ୍ଥାନିତ କରାଯାଇଛି । ଏ ନାଟକଗୁଡିକ ପୂର୍ବରୁ ପ୍ରକାଶିତ ହୋଇଥିଲେ ମଧ ଏବେ ଉପଲବ୍ଧ ହେଉନଥିବାରୁ ନାଟ୍ୟକର୍ମୀମାନଙ୍କ ଚାହିଦା ଦୃଷ୍ଟିରୁ ଏଥିରେ ସାମିଲ କରାଯାଇଅଛି ।

ଆଶା ଏ ସଂକଳନଟି ନାଟ୍ୟାନୁରାଗୀ ପାଠକ ତଥା ଦର୍ଶକମାନଙ୍କ ଦ୍ୱାରା ଆଦୃତ ହେବ ।

**ଦିଲ୍ଲୀଶ୍ୱର ମହାରଣା**





Digitized by PPRACHIN, SOA

## ଦିଲ୍ଲୀଶ୍ୱର ମହାରଣାଙ୍କ ନାଟକ ସମୂହ

### ପ୍ରକାଶିତ

| | |
|---|---|
| ଉତ୍ତର ପୁରୁଷ | ଆସନ୍ନ ପ୍ରଳୟ |
| ଭୋଳାନାଥ ଦାସ ହାଜର ହେ | ଏ ମଙ୍ଗଳ ମହୂରୀର ତାନ |
| ବାର୍ତ୍ତା | ସ୍ୱପ୍ନ |
| ନ୍ୟାୟ | ଅସମାପ୍ତ |
| ବାଉଁଶ ଠେଙ୍ଗାରେ ସାଧୀନତା | ଆପଣ ସାକ୍ଷୀ ରହିଲେ ହଜୁର |
| ଭଲ ପାଇବାର ରଙ୍ଗ | ସୂର୍ଯ୍ୟ ଉଇଁବାର ବେଳ |
| ଦ୍ୱିତୀୟ ଈଶ୍ୱର | ଚକେଗଲେ ବାରହାତ |
| ତତ୍‌କାଳ ସମାଧାନ | କୁମାର କୁଳଚନ୍ଦ୍ରମା |
| ସୂର୍ଯ୍ୟପରାଗ | ଭାଇ ଭାଇ |

ଶେଷ ଠିକଣା

### ପ୍ରକାଶ ଅପେକ୍ଷାରେ

| | |
|---|---|
| ବାରମଜା | ବୁମେରାଂ |
| ଅର୍ପିତା | ସୋହିନୀ |
| ମନ୍ତ୍ର | ଗୁରୁ ମହିମା |
| ବେଲୁନ | ଆମ୍ରପଲ୍ଲୀ |

ସତ ହେଲେବି ଗପ

ଓ

କିଛି ଅନୁବାଦ ନାଟକ





Digitized by PPRACHIN, SOA

# ଶେଷ ଠିକଣା

(ମୂଳ କାହାଣୀ)

ଶ୍ରୀ ଆନନ୍ଦଚନ୍ଦ୍ର ପହି



- ନାଟ୍ୟ ସୃଜନ -

ଶ୍ରୀ ଦିଲ୍ଲୀଶ୍ୱର ମହାରଣା





Digitized by PPRACHIN, SOA

# ଶେଷ ଠିକଣା

## ଚରିତ୍ର ଲିପି

ସନାତନ

ଅକାରଣ

ଶିବାନନ୍ଦ

ସୀମାଦ୍ରୀ

ଶେଷାଦ୍ରୀ

ଯୋଗେଶ

ଗଜାନନ

ରଥଶର୍ମା

ଅସୀମ (ଶିଶୁ)

ଅଳକା

ଅଭିନୟ ସମୟ ଅବଧି - ଏକ ଘଣ୍ଟା ଚାଳିଶ ମିନିଟ୍



Digitized by PPRACHIN, SOA

# ଶେଷ ଠିକଣା

ସମଗ୍ର ମଞ୍ଚଟି ପ୍ରତୀକ ଧର୍ମୀ ତିନୋଟି ଅଭିନୟାଞ୍ଚଳରେ ଭାଗ ଭାଗ କରାଯାଇଛି । ସାମନା ଭାଗ କୌଣସି ଏକ ସହରରେ ଥିବା ଗୋଟିଏ ପାର୍କ । ପଛ ଭାଗର ଅର୍ଦ୍ଧେକ ଅଂଶ କୋଟିପତି ସନାତନ ଚୌଧୁରୀଙ୍କ ବୈଠକ ଗୃହ ଓ ଅନ୍ୟ ଅର୍ଦ୍ଧେକ ଅଂଶ କୌଣସି ଏକ ପରିତ୍ୟକ୍ତ କୋଠା ଘରର ଉପର ମହଲାର ଛାତ । ଏଇ ଚାରି ମହଲା ବିଶିଷ୍ଟ ଫ୍ଲାଟ୍ ଶ୍ରେଣୀର କୋଠାଟି କିଛି ବର୍ଷ ପୂର୍ବେ ନିର୍ମିତ ହୋଇଥିଲେ ମଧ ଆଇନଗତ କୌଣସି ଏକ ସମସ୍ୟା ଯୋଗୁଁ ବ୍ୟବହୃତ ହୋଇନପାରି ପରିତ୍ୟକ୍ତ ଅବସ୍ଥାରେ ପଡିରହିଛି ।

## ପ୍ରଥମ ଦୃଶ୍ୟ

(ଗୋଟିଏ ପାର୍କ । ସମୟ ସକାଳ । ଦୁଇ ବନ୍ଧୁ ଅକାରଣ ଓ ଶିବାନନ୍ଦ ବ୍ୟାୟାମ କରୁଚନ୍ତି । ପକ୍ଷୀଙ୍କ କଳରବ ସହିତ ଦୂର ମନ୍ଦିରରୁ ଶଙ୍ଖ ଓ ଘଣ୍ଟଧ୍ୱନି)

ଶିବାନନ୍ଦ : ଓଃ ହୋଃ ... ଥକି ଗଲି ।

ଅକାରଣ : ଥକି ଯିବୁନି - ଏ ବୟସରେ ଏତେ ଜୋର ଦେଇ ବ୍ୟାୟାମ କରିବା ଠିକ୍ ନୁହେଁ । ଗତକାଲି ପେପର ଦେଖିନୁ ? ବାହାରିଥିଲା, ସତୁରି ପାର ହେଇଗଲା ପରେ ସବୁ ଏକ୍ସରସାଇଜ୍ ଧିରେ ଧିରେ କମ୍ କରିବା ଉଚିତ୍ । ମତେ ତ ଏକସ୍ତରି ପୁରିବ । ତୁ ତ ମୋ ଅପେକ୍ଷା ଗୋଟିଏ ବର୍ଷ ବଡ ।

ଶିବାନନ୍ଦ : ସେ ପେପର କଥା ଛାଡ ଅକାରଣ । ସେଗୁଡାକରେ ସବୁବେଳେ ଅଜବ ଅଜବ କଥା ବାହାରେ । ଦିନେ ବାହାରିବ ଟି’ ପିଇଲେ ଭୋକ କମିଯିବ - ବ୍ଲଡପ୍ରେସର ବଢିଯିବ । ପୁଣି ଦିନେ ବାହାରିବ ଟି’ ପିଇଲେ ହାର୍ଟଆଟାକ୍‌ର ଆଶଙ୍କା କମିଯାଏ ।

ଅକାରଣ : ଯାହା କହୁଛୁ ଠିକ୍ । କୋଉ କଥାଟା ହଣ୍ଡ୍ରେଡ୍ ପର୍ସେଣ୍ଟ ସତ ନୁହେଁ କି ହଣ୍ଡ୍ରେଡ୍ ପର୍ସେଣ୍ଟ ମିଛ ନୁହେଁ । ଆମ ନିଜ ଦେହକୁ କୋଉଟା



Digitized by PPRACHIN, SOA

ଭଲ କୋଉଟା ଭେଲ, ଆମ ଅପେକ୍ଷା ସେ ପେପର ବାଲା କ'ଣ ଅଧିକ ଜାଣିବେ ।

ଶିବାନନ୍ଦ : ବୁଝିଲୁ ଅକାରଣ । ଏବେ ମୋର ରାତିରେ ଭଲ ନିଦ ହଉନି ।

ଅକାରଣ : କାହିଁକି ? ଦିନରେ ଟିକେ ବେଶୀ ଶୋଇଯାଉଚୁ କି ?

ଶିବାନନ୍ଦ : ନା', ଅସଲ କଥା ହେଲା ଟେନ୍‌ସନ୍ । ବୁଢୀଟାର ଦେହ ଆଦୌ ଭଲ ରହୁନି । ସେଇ ଦୁଶ୍ଚିନ୍ତାରେ ମଝି ରାତିରେ ନିଦ ଭାଙ୍ଗିଯାଉଚି । ଆରେ, ସନାତନଟାର କାହିଁ ଦେଖା ମିଳୁନି । କୁଆଡେ ବାହାରକୁ ଯାଇଛି କି ?

ଅକାରଣ : ସନାତନ ? ମାନେ, ତୁ ଆମ ସନିଆ କଥା କହୁନୁ ତ -

ଶିବାନନ୍ଦ : ହଁ ମ, ସେଇ ସନିଆ କଥା କହୁଚି । ସହରସାରା ଲୋକେ ତାକୁ ଶିଳ୍ପପତି ସନାତନ ଚୌଧୁରୀ ବୋଲି ଡାକୁଚନ୍ତି । ତେଣୁ 'ସନିଆ' ନାଆଁଟା ଧରିବାକୁ ଜିଭ ଲେଉଟୁନି ।

ଅକାରଣ : ଆରେ ପିଲାଟି ଦିନରୁ ଆମେ ତାକୁ ସନିଆ ସନିଆ ବୋଲି ଡାକିଆସିଚେ । ଏବେ ତୁ ସନାତନ କହିବାରୁ ମତେ ଅଡୁଆ ଲାଗିଲା । ତା' ପାଖରେ କ'ଣ କାମ ଅଛି ?

ଶିବାନନ୍ଦ : କାମ ମାନେ...ମୋ ବୁଢୀଟା ଯେମିତି ହଉଚି କୋଉଦିନ ଆଖି ବୁଜିଦବ । ସେ ଚାଲିଗଲା ପରେ ମୋ ଅବସ୍ଥା କ'ଣ ହବ ବୁଝୁଚୁଟି ।

ଅକାରଣ : ତୋ'ର ତ ଦି'ଦି'ଟା ରୋଜଗାରିଆ ପୁଅ-ବାହାରେ ଚାକିରୀ କରୁଚନ୍ତି । ତାଙ୍କ ପାଖରେ ଯାଇ ଆରାମରେ ରହିବୁ ।

ଶିବାନନ୍ଦ : ଆମେ ବୁଢାବୁଢୀ ଯାଇ ରହିନଥିଲୁ କି । ସେମାନଙ୍କ ପାଖରେ ରହିବା ଅପେକ୍ଷା ନର୍କରେ ରହିବା ଭଲ ।

ଅକାରଣ : ତୋ ବଡ ପୁଅଟା ପୁଅ ନୁହେଁ ତ...ଖଣ୍ଡେ ହୀରା ।

ଶିବାନନ୍ଦ : ଦେଖିବାକୁ ହୀରା ସତ, ହେଲେ ତା ହୃଦୟଟା ହୀରା ଭଳି ଖଣ୍ଡେ ପଥର । ତା' ମାଇକିନା କହିଲେ ଉଠିବ, ତା' ମାଇକିନା କହିଲେ ବସିବ ।



Digitized by PPRACHIN, SOA

ଅକାରଣ : ତୋ ସାନ ବୋହୂଟା ଭଲ ବୋଲି କହୁଥିଲୁ। ତା ପାଖକୁ ଚାଲିଯିବୁ -

ଶିବାନନ୍ଦ : ସେଇଟା ଭଲ ହେଲେ କ'ଣ ହବ ରୋଗିଣାଟା । ତା ସାଙ୍ଗକୁ ସାନ ପୁଅଟା ଏକ ନମ୍ବର ସୁଣ୍ଢା । ମଣିଷ ସେଠି ନ ଖାଇ ନ ପିଇ ମରିଯିବ ।

ଅକାରଣ : ଓଃ...ସେଇଥିପାଇଁ ସନିଆକୁ ଖୋଜୁଚୁ । ସେ ତୋ ସମସ୍ୟାର ସମାଧାନ କରିଦବ । ଗତ ବୁଧବାର ଦିନ ରାଧାଗୋବିନ୍ଦ ମନ୍ଦିର ପାଖରେ ଦେଖା ହେଇଥିଲା, କହୁଥିଲା ଓକିଲ ପାଖରେ ଦିନରାତି ବସିବାକୁ ପଡୁଚି । ଦୁଇ ପୁଅଙ୍କ ଭିତରେ ସଂପତ୍ତି ବଣ୍ଟା ଚାଲିଛି ।

ଶିବାନନ୍ଦ : ତା' ଘରବାଡି - ଫ୍ୟାକ୍ଟ୍ରି ସବୁ ତ ତିନି ବର୍ଷ ତଳେ ବଣ୍ଟା ସରିଥିଲା । ଏବେ ପୁଣି କ'ଣ ?

ଅକାରଣ : ସେ ସବୁ ମୁହଁରେ ମୁହଁରେ ହେଇଥିଲା । ଏବେ ସେ ସବୁ କାଗଜପତ୍ରରେ ଫାଇନାଲ୍ କରାଯାଉଚି ।

ଶିବାନନ୍ଦ : ଯାହା କହ ଅକାରଣ - ସନିଆଟା ବଡ ଭାଗ୍ୟବାନ । ସେ ନିଜେ ଯେମିତି କର୍ମଠ - ତା' ପୁଅ ଦିଇଟା ବି ସେମିତି ପାରଙ୍ଗମ ।

ଅକାରଣ : ହିଁ, ସନିଆଟା ଏକବାରରେ ଶୁନରୁ ଉଠି ତା' ପାରିବା ପଣିଆ ଯୋଗୁଁ ଦି' - ଦି' ଟା ଇଣ୍ଡଷ୍ଟ୍ରି ଠିଆ କରାଇପାରିଲା । ଏବେ ପୁଅମାନଙ୍କ ଭିତରେ କମ୍ପିଟେସନ୍ ଆରମ୍ଭ ହେଇଯାଇଚି । ସାନ ଚାହୁଁଚି ବଡକୁ ଟପିଯିବ - ବଡ ଚାହୁଁଚି ସାନର ଡବଲ କରିଦବ ।

ଶିବାନନ୍ଦ : ଦି ପୁଅ ତ ନିଜର ଅଲଗା ଅଲଗା ଘର କରିଦେଇଥିଲେ । ସନିଆ କାହା ପାଖରେ ରହୁଚି ? ବଡ ନା ସାନ ପାଖରେ ?

ଅକାରଣ : ନା' ସମସ୍ତେ ଏକାଠି ସନିଆର ସେଇ ପୁରୁଣା ଘରେ ରହୁଚନ୍ତି । ଦି' ପୁଅଙ୍କ ଘର ଦିଇଟା ଭଡାରେ ଲାଗିଚି । ଇଯେ ପରା କହିଲା ସେ ବଞ୍ଚିଥିବା ଯାଏଁ ସମସ୍ତେ ଏକାଠି ରହିବେ । ମଲା ପରେ ଯାହା ହେବ ।

ଶିବାନନ୍ଦ : ହଁ, ତା ସ୍ତ୍ରୀଟା ଅକାଳରେ ଚାଲିଗଲା ପରେ ସେ ବା କେମିତି ଏକୁଟିଆ ରହିଥାନ୍ତା ।



Digitized by PPRACHIN, SOA

ଅକାରଣ : ହେଇ ତ ସନିଆ ଆସିଲାଣି - ସାଙ୍ଗରେ ନାତି ଟୋକାକୁ ନେଇକି ଆସିଚି । (ସନିଆ ନାତି ଅସୀମକୁ ନେଇ ଆସେ)

ଶିବାନନ୍ଦ : କିଓ ଇଣ୍ଡଷ୍ଟ୍ରିଆଲିଷ୍ଟ ବାବୁ ! କୁଆଡେ ଗାୟବ ହେଇଯାଇଥିଲ ?

ଅକାରଣ : କ'ଣ ଶୋଇପଡିଥିଲ କି ?

ସନାତନ : ଆରେ ନାଇଁରେ, ଏ ଟୋକାଟା ପରା ଉଠିବା ଡେରି କଲା । ଦୁଇଦିନ ହେଲା କହିକି ରଖିଚି ରବିବାର ମୋର ସ୍କୁଲ ଛୁଟି । ମୁଁ ତମ ସହିତ ମର୍ଣ୍ଣିଂ ଓ୍ବାକ୍‌ରେ ଯିବି - ଗପ ଶୁଣିବି । ହଇରେ ସାନୁ ଜେଜେମାନଙ୍କୁ ପ୍ରଣାମ କର । (ଅସୀମ ଅକାରଣ ଓ ଶିବାନନ୍ଦଙ୍କ ପାଦ ଛୁଇଁ ପ୍ରଣାମ କରେ)

ଅକାରଣ : ଆରେ ବାବୁ - ତୋର ନା' କ'ଣ ?

ଅସୀମ : ଅସୀମ ଅନିକେତ ଚୌଧୁରୀ ।

ଅକାରଣ : ଗୁଡ୍ ! ସ୍ମାର୍ଟ ବଏ । (ଯୋଗେଶ ମଙ୍କିକ୍ୟାପ୍ ମୁହଁରେ ଘୋଡାଇ ଦୌଡି ଦୌଡି ସେଇପାଖ ଦେଇ ପାର୍କକୁ ଯାଏ)

ଶିବାନନ୍ଦ : ନାତି ଟୋକାକୁ ବେଶ୍ ସଂସ୍କାର ଶିଖାଇଛୁ ସନିଆ । ଆଜିକାଲି କୋଉ ପିଲା ପାଦ ଛୁଇଁ ନମସ୍କାର କରୁଚି ।

ସନାତନ : ମାଗଣାରେ ପାଦ ଛୁଇଁନିରେ...କଣ୍ଡିସନ୍ କରିଚି ଫେରିଲା ବାଟରେ ପିଜା ଖାଇବ । ହଉ ସାନୁ - ତୁ ଯା ସେପଟେ ପାର୍କ ଭିତରେ ଖେଳୁଥା । ମୁଁ ଏଠି ଜେଜେମାନଙ୍କ ସହିତ କଥା ହଉଚି । ବେଶୀ ଦୂରକୁ ଯିବୁନି । (ଅସୀମ ଚାଲିଯାଇଚି) ଇଏ ହେଲା ମୋର ସବୁଠାରୁ ଜିଗିରି ଦୋସ୍ତ । ହେଲେ ତା' ସଙ୍ଗ ଆଉ ମିଳିବନି । ଆ ଭିତରେ ଇୟେ ପଢିବା ପାଇଁ ଭାଇଜାଗ୍ ଚାଲିଯିବ ।

ଅକାରଣ : ମାନେ - ଏ ଛୁଆଟା ଯାଇ ବିଶାଖାପାଟଣାରେ ପଢିବ ?

ସନାତନ : ହଁ, ସେଠି ଗୋଟେ ରେସିଡେନ୍ସିଆଲ୍ ସ୍କୁଲରେ ତା ନାଁ ଲେଖା ସରିଲାଣି ।

ଶିବାନନ୍ଦ : ଏ ବୟସରେ ସେ ତା' ମାଆ ବାପାଙ୍କୁ ଛାଡି ରହିପାରିବ ତ ?

ସନାତନ : ଆମର ଏଠିକା ସ୍କୁଲ ଗୁଡା ତାଙ୍କୁ ଭଲ ଲାଗୁନି । ସେଇମାନଙ୍କ



Digitized by PPRACHIN, SOA

ଇଚ୍ଛା .... ତାଙ୍କ ପିଲାଙ୍କ ଭବିଷ୍ୟତ ସେମାନେ ଚିନ୍ତା କରିବେ । ମୁଁ ସେଥିରେ ମୁଣ୍ଡ ଖେଳାଉନି ।

ଅକାରଣ : ସେଠି କ'ଣ ଏମିତି ପଢାଯାଉଚି କି ? ଛୋଟ ପିଲାଟା ପାଁଶହ ମାଇଲ ଦୂରରେ ଯାଇ ପଢିବ ।

ସନାତନ : କ'ଣ ପଢା ହେଉଚି ସେମାନେ ଜାଣିଥିବେ । ଆଡ୍‌ମିସନ୍ ଲକ୍ଷେ, ତା'ପରେ ମାସକୁ ଖର୍ଚ୍ଚ ପାଞ୍ଚ ହଜାର । ଆଡ୍‌ମିସନ୍ ବେଳକୁ ମତେ ସାଙ୍ଗରେ ନେଇଥିଲେ । ତା'ର ଗାର୍ଡିଅନ୍ ଭାବରେ ମୋ ଫଟୋ ଆଉ ସିଗ୍ନେଚର୍ ରଖାଗଲା । ନ ହେଲେ ମଝିରେ ମଝିରେ ମୋ ଜିଗିରି ଦୋସ୍ତକୁ ଦେଖାକରିବି କେମିତି ।

ଅକାରଣ : ତୋ ସାନପୁଅ ଶେଷର ଗୋଟାଏ ପୁଅ ନା । ସେଇଟା କେତେ ବଡ ହେଲାଣି ।

ସନାତନ : କେତେ ବଡ ମାନେ - ମୋଟେ ଅଢେଇ ବର୍ଷର ଛୁଆ । କେମିତି ବେଳାରେ ଜନ୍ମ ହୋଇଛି କେଜାଣି - ତା'ର ଦେହଟା ମୋଟେ ଭଲ ରହୁନି । ମା' ସାଙ୍ଗରେ ଏବେ ତା ଅଜା ଘରକୁ ଯାଇଚି । (ମେଘ ଘଡଘଡି ଶବ୍ଦ)

ଶିବାନନ୍ଦ : ହେଇ ଦେଖିଲୁଣି ସନିଆ । ସେପଟୁ କେମିତି ମେଘ ଘୋଟିଆସିଲାଣି । ତୋ ସାଙ୍ଗରେ ଗୋଟେ କଥା ଥିଲା ଯେ...କ'ଣ କରାଯିବ ।

ସନାତନ : କିଛି ବ୍ୟସ୍ତ ହଅନି । ଡ୍ରାଇଭରକୁ କହିଛି ସେ ଗାଡି ନେଇ ଆସିଥିବ । ନହେଲେ ଏ ଟୋକା ଯିବ କେମିତି ? ଫେରିଲା ବେଳକୁ ତୁମମାନଙ୍କୁ ନେଇ ଛାଡିଦବ । ହଁ, ତୁ ମୋ ସାଙ୍ଗରେ କ'ଣ କଥା ହବୁ କହୁଥିଲୁ । ତୋ ପୁଅବୋହୂଙ୍କ ସମସ୍ୟା ନା ଅନ୍ୟକିଛି ?

ଅକାରଣ : ହଁ ସେଇଆ - ସେ ତା' ପୁଅ ବୋହୂଙ୍କ ପାଖରେ ରହିବାକୁ ଚାହୁଁନି ।

ସନାତନ : ଦେଖ ଶିବା - ଯେତେ ଯାହା କଲେ ବି ତୁ ସେମାନଙ୍କୁ ବଦଳେଇ ପାରିବୁନି । ବରଂ ତୁ ନିଜକୁ ବଦଳେଇ ଦେ -।

ଶିବାନନ୍ଦ : ମୁଁ ନିଜକୁ ବଦଳେଇ ଦେବି ମାନେ ? ମୋର ଭୁଲ୍ କେଉଁଠି ଯେ ବଦଳେଇ ଦେବି ?



Digitized by PPRACHIN, SOA

ସନାତନ : ମୁଁ ଯାହା କହୁଛି ଟିକେ cool mind ରେ ଚିନ୍ତା କର । ଦେଖ୍ - ମଣିଷର ସର୍ବନିମ୍ନ ଦିଇଟା ଜିନିଷ ଦରକାର । ସାସ୍ଥ୍ୟ ଓ ଶାନ୍ତି । ସାସ୍ଥ୍ୟ ପାଇଁ ଆମେ ଯେତେ ଜଗୁଛେ ତା ଠିକ୍ ଅଛି । ହେଲେ ଶାନ୍ତି ପାଇଁ ଦରକାର ପରିବେଶ ।

ଶିବାନନ୍ଦ : ହଁ ମୁଁ ବି ସେଇଆ କହୁଛି । ମୋ' ପାଇଁ ସେ ପରିବେଶ ମୋଟେ ଅନୁକୂଳ ନୁହେଁ ।

ସନାତନ : ଖାଲି ତୋ ପାଇଁ କାହିଁକି - କାହାରି ପାଇଁ ବି ପରିବେଶ ଅନୁକୂଳ ହୋଇ ନପାରେ । କାରଣ ପରିବେଶ ଆମ କଣ୍ଟ୍ରୋଲରେ ନାହିଁ । ଆମ ଇଚ୍ଛା ଅନୁସାରେ କେହି ବଦଳିଯିବେ ନି - ବରଂ ଆମେ ନିଜକୁ ସେମାନଙ୍କ ସହିତ ଖାପ୍ ଖୁଆଇ ଦେଲେ ସବୁ ସମସ୍ୟା ଗଲା ।

ଶିବାନନ୍ଦ : ତୋ ଭାଗ୍ୟ ଭଲ ବୋଲି ଭଲଭଲ ପୁଅବୋହୂ ମିଳିଯାଇଚନ୍ତି । ମୋ ପରି ଅବସ୍ଥା ସାମନା ନ କଲାଯାଏ କେହି ମୋ କଥା ବୁଝିପାରିବେ ନି ।

ସନାତନ : ତୁ ଯାହା କହୁଚୁ ସେସବୁ ଠିକ୍ ନୁହେଁ । ମୋ ଘରେ ସେମିତି ଅନେକ ସମସ୍ୟା ରହିଛି । ପୁଅମାନଙ୍କ ହାତକୁ ଇଣ୍ଡଷ୍ଟ୍ରି ଦିଇଟା ଟେକିଦେଲା ପେର ସେମାନେ ଯେମିତି ଆଗ୍ରେସିଭ୍ ଢଙ୍ଗରେ ତାକୁ ଚଳାଇଚନ୍ତି ସେଥିରେ ମୁଁ ଆଦୌ ସନ୍ତୁଷ୍ଟ ନୁହେଁ । ଅନେକ ବିରୋଧ କରିଚି, କିଛି ଫଳ ନହେବାରୁ ଚୁପ୍ ରହିବାକୁ ବାଧ୍ୟ ହେଲି ।

ଅକାରଣ : ସେଇଟା ତୋ ବିଜ୍‌ନେସ୍ ମ୍ୟାଟର୍ । ଶିବାର ପ୍ରୋବ୍ଲେମ୍ ପୁରାପୁରି ଘରୋଇ ।

ଶିବାନନ୍ଦ : ହଁ - ଦିଇଟାଯାକ କଥା ଅଲଗା ।

ସନାତନ : ଆଦୌ ନୁହେଁ । ସବୁ ବୋହୂମାନଙ୍କ ପରି ମୋ ବୋହୂମାନେ ବି ଘରେ ମୋ ଉପସ୍ଥିତିକୁ ମୋଟେ ଲାଇକ୍ କରନ୍ତିନି । ସେମାନଙ୍କ ଧାରଣା ଯେ ମୋ ଯୋଗୁ ସେମାନଙ୍କର ହସ ଖୁସି, ସାଙ୍ଗସାଥି ଚର୍ଚ୍ଚା, ସପିଙ୍ଗ୍ ଇତ୍ୟାଦି ଠିକ୍ ଢଙ୍ଗରେ ହେଇପାରୁନି । ଅନେକ



Digitized by PPRACHIN, SOA

ବିରୋଧ କରିଛି । ହେଲେ କିଛି ଫଳ ନହେବାରୁ ମୁଁ ନିରବ ରହିବାକୁ ବାଧ୍ୟ ହେଇଛି ।

ଶିବାନନ୍ଦ : ତତେ ଧନ୍ୟ, ତୁ କରୁଚୁ - ହେଲେ ମୁଁ ପାରିବିନି । ଆମର ପୁଅବୋହୂଙ୍କ ପାଖରେ ରହିବାର ନାହିଁ । ଯେକୌଣସି ଜାଗାରେ କିମ୍ବା କୌଣସି old age home ରେ ରହିଲେ ଭଲ ।

ସନାତନ : କାହିଁକି ଏମିତି ଅବୁଝା ହଉଚୁ ।

ଶିବାନନ୍ଦ : ମୁଁ ଅବୁଝା କାହିଁକି ହେବି । ତୁ ମୋ କଥା ବୁଝୁନୁ - ତୁ ଯଦି ମୋ ଭଳିଆ ଅବସ୍ଥା ଭୋଗନ୍ତୁ ନା ତୁ ନିଜେ ବି ଯାଇକି old age home ନ ହେଲେ ଅନ୍ୟ କେଉଁଠି ରହନ୍ତୁ ।

ସନାତନ : ଆରେ ମୁଁ କାହିଁକି old age home ରେ ରହିବି କି ଅନ୍ୟ କୁଆଡେ ଯିବି । ମୁଁ ସବୁ ପରିସ୍ଥିତିକୁ ଖାପ ଖୁଆଇ ଶିଖିଛି । ମୋର କିଛି ଅସୁବିଧା ହବନି । ଆଚ୍ଛା ଛାଡ୍, ତୁ ମୋ ପାଖରୁ କି ପ୍ରକାର ସାହାଯ୍ୟ ଚାହୁଁଚୁ ।

ଶିବାନନ୍ଦ : ସାହାଯ୍ୟ ଆଉ କ'ଣ - ତତେ ତ ସବୁକଥା କହିଲି । ତୁ ମୋ ପାଇଁ ଏତିକି କର, ଯେମିତି ଆମେ ବୁଢାବୁଢୀ ଦିଇଟା ଯେଉଁଠି ହେଲେ ଯାଇ ଶାନ୍ତିରେ ରହିବୁ । ଯାହା ଟଙ୍କା ଲାଗିବ ମୁଁ ଦେବାକୁ ପ୍ରସ୍ତୁତ ଅଛି । (ମେଘର ଘଡଘଡି ଶବ୍ଦ)

ଅକାରଣ : ଟଙ୍କା କଥା ପଛେ ବିଚାର ହେବ । ମୁଁ ପ୍ରଥମେ ଚିନ୍ତାକରେ କ'ଣ ତୋ ପାଇଁ କରିହେବ । (ଅସୀମ ଆସିଛି)

ଅସୀମ : (ପ୍ରବେଶ) ଜେଜେ - ସେପଟକୁ ଦେଖ, ମେଘ ମାଡିଆସିଲାଣି ।

ଅକାରଣ : ଆରେ ହଁ ହଁ, ଏଠି ଆଉ ବସି ହବନି । **(ସମସ୍ତେ ଚାଲିଯାଉଛନ୍ତି । ଯୋଗେଶ ପାର୍କ ଭିତରୁ ଆସି ଠିଆ ହୋଇ ମଙ୍କିକ୍ୟାପ୍ ଖୋଲୁଛି ଏବଂ ସନାତନ ଓ ତା' ସାଙ୍ଗମାନଙ୍କୁ ନିରୀକ୍ଷଣ କରୁଛି । ଧିରେ ଧିରେ ଆଲୋକ ଲିଭି ଆସୁଚି)**

(ଅନ୍ଧାର)





Digitized by PPRACHIN, SOA

# ଦ୍ୱିତୀୟ ଦୃଶ୍ୟ

(ସନାତନ ଚୌଧୁରୀଙ୍କ ବୈଠକ ଖାନା । ଦାମିକା ଆସବାବ ସହିତ ବିଭିନ୍ନ ପ୍ରକାର ଫୁଲଦାନୀରେ ସଜ୍ଜିତ । ଉପର ମହଲାକୁ ସିଢ଼ି)

ଅଳକା : (ପୂଜା ଥାଳି ନେଇ, ଶ୍ଳୋକ ଉଚ୍ଚାରଣ କରି ପ୍ରବେଶ ।)

ଅସୀମ : ମମି...ମମି । ମତେ ଆଜି ଡେଡ଼ି ସାଙ୍ଗରେ ମର୍ଣ୍ଣିଂ ୱାକ୍ ନବା କଥା - କୁଆଡେ ଗଲେ ? କ'ଣ ନ ନେଇ ପଳେଇଚନ୍ତି ।

ଅଳକା : ତୁ ତ ଉଠୁ ଉଠୁ ଡେରି କଲୁ । ତେଣୁ ସେ ଚାଲିଗଲେ ।

ଅସୀମ : ଆଜି ମୋର ତାଙ୍କ ସହିତ କଟି । ସେ କାହିଁକି ମୋତେ ନ ନେଇ ଚାଲିଗଲେ ।

ଅଳକା ତୁ ପରା ଆର ରବିବାର ଯାଇଥିଲୁ ?

ଅସୀମ : ଗଲେ କ'ଣ ହେଲା - ଆଜି ବି ତ ନେଇକି ଯିବାକୁ କହିଥିଲେ । ତାଙ୍କ ସହିତ ଯାଇଥିଲେ ମୁଁ ଗୋଟିଏ ଗପ ଶୁଣିଥାନ୍ତି । ଆସନ୍ତା ରବିବାର ବେଳକୁ ତ ହଷ୍ଟେଲ ଚାଲିଯିବି - ଗପ କେମିତି ଶୁଣିବି ?

ଅଳକା : ହଁ - ଆସନ୍ତା ରବିବାର ବେଳକୁ ତୁ ତ ନଥିବୁ, ଭାଇଜାକ୍ ଚାଲିଯାଇଥିବୁ ।

ଅସୀମ : ମମି - ମତେ ସେଠି କାହିଁକି ପଢେଇବ ? ମୋର ତ ସବୁ ସାଙ୍ଗମାନେ ଏଇଠି ପଢିବେ - ତମେ ସମସ୍ତେ ବି ତ ଏଇଠି ରହିବ ।

ଅଳକା : ଏଁ - ତୁ ସେଠି ପରା ବଡ ସ୍କୁଲରେ ପଢିବୁ । ବଡ ସ୍କୁଲରେ ପଢିଲେ ସିନା ବଡ ମଣିଷ ହେବୁ । ସେଥିପାଇଁ କାହିଁକି ମନ ଦୁଃଖ କରୁଛୁ । ଆମେ ତତେ ସବୁବେଳେ ଦେଖାକରିବାକୁ ଯିବୁ । ତୋ ସ୍କୁଲ ଛୁଟି ହେଲେ ଏଠିକି ଆସୁଥିବୁ ।

(ସନାତନଙ୍କ ପ୍ରବେଶ)



Digitized by PPRACHIN, SOA

ସନାତନ : ସାନୁ - ସାନୁ - ସାନୁ ।

ଅସୀମ : ମତେ କିଛି କୁହନି - ତୁମେ ପନିସ୍‌ମେଣ୍ଟ ନେବାକୁ ରେଡି ହୋଇଯାଅ ।

ସନାତନ : ମୁଁ ରେଡି ହେଇଯିବି ? ହେଲେ ସକାଳୁ ସକାଳୁ ମୁଁ କ'ଣ ଭୁଲ୍ କରିଦେଲି ମତେ ଜଣାଇ ଦିଆଯାଉ ମିଃ ଲର୍ଡ ।

ଅଳକା : ଆପଣ ତାକୁ ସାଙ୍ଗରେ ନେଇ କ'ଣ ସବୁ ଷ୍ଟୋରି କହିଥାନ୍ତେ ତ ବାପା । ସେଇଥିପାଇଁ -

ସନାତନ : ଓହୋ - ହୋ - ହୋ ମୁଁ ପୁରା ଭୁଲିଯାଇଛି । ମତେ ସେଥିପାଇଁ କାନ ଧରି ବସ୍‌ଉଠ୍ ହେବାକୁ ପଡିବ । ହେଇ ଦେଖ୍ - ଆରମ୍ଭ କରିଦେଲି । One-Two-Three (ଅଳକା ହସିହସି ଚାଲିଯାଇଚି) ଆଉ କେତେ ପନିସ୍‌ମେଣ୍ଟ ନେବାକୁ ପଡିବ ମାଇ ଲର୍ଡ । four - five - six ।

ଅସୀମ : stop ।

ସନାତନ : yes fullstop.

ଅସୀମ : ମୁଁ ତ ଆଜି ଚାଲିଯିବି । ଗପ କେତେବେଳେ କହିବ ?

ସନାତନ : କାଲି ପରା କହିଥିଲି ଆଉ କ'ଣ କହିବି ?

ଅସୀମ : କାଲି କହିଥିଲ ଆଜି ଶ୍ରବଣ କୁମାର story କହିବ ବୋଲି । ଭୁଲି ଗଲ ?

ସନାତନ : ହଁ ହଁ ସତରେ ଭୁଲିଯାଇଚି ଆଚ୍ଛା କାଲି ତତେ ପୁଣ୍ଡରିକଙ୍କ କଥା କହିଥିଲି ନା ?

ଅସୀମ : ହଁ ପୁଣ୍ଡରିକ, ତାଙ୍କ ବାପା ମାଆଙ୍କୁ ସବୁଦିନ ଭଗବାନଙ୍କ ଭଳି ସେବା କରୁଥିଲେ । ଦିନେ ସେତିକିବେଳେ ଶ୍ରୀକୃଷ୍ଣ ତାଙ୍କ ଘରକୁ ଆସି ଡାକିଲେ । ବାପା ମାଆଙ୍କ ସେବା କରୁଥିବାରୁ ସେ କୃଷ୍ଣଙ୍କ ପାଖକୁ ଆସିଲେ ନାହିଁ ।

ସନାତନ : ଠିକ୍ କଥା । ଆଚ୍ଛା ସେ ନ ଆସିବାରୁ ଶ୍ରୀକୃଷ୍ଣ କ'ଣ ପୁଣ୍ଡରିକଙ୍କ ଉପରେ ରାଗିଲେ ?



Digitized by PPRACHIN, SOA

ଅସୀମ : ନା, ବରଂ ସେ ଖୁସି ହେଲେ । ସେ କହିଲେ ପିତାମାତାଙ୍କୁ ସେବା କରିବା ଯାହା, ଭଗବାନଙ୍କୁ ସେବା କରିବା ସେଇଆ ।

ସନାତନ : ବାଃ, ତୁ ତାହା ହେଲେ ଭଲ ମନେ ରଖିଚୁ । ଆଚ୍ଛା ଏ ଗପରୁ ଆମେ କ'ଣ ଶିଖିଲେ ?

ଅସୀମ : ବାପା ମାଆ ଭଗବାନଙ୍କ ଠାରୁ କମ୍ ନୁହଁନ୍ତି । ଆଚ୍ଛା ଏଥର ତୁମେ ଅନ୍ଧମୁନି କଥା କୁହ ।

ସନାତନ : ଏ ଗପ ବି ସେଇ ପିତାମାତାଙ୍କ ସେବା ଉପରେ । ଶୁଣ - ସେଇ ପୁରାଣ କାଳରେ ଶ୍ରବଣ କୁମାର ବୋଲି ଜଣେ ଋଷି କୁମାର ଥିଲେ । ତାଙ୍କର ବାପା ଆଉ ମାଆ ଦୁଇଜଣ ଯାକ ଅନ୍ଧ ଥିଲେ । ଶ୍ରବଣ କୁମାର ସେମାନଙ୍କର ସବୁ ପ୍ରକାର ଯତ୍ନ ନଉଥିଲେ । ବୟସ ବଢିବା ସହିତ ସେମାନେ ବୁଢାବୁଢୀ ହେଇଗଲେ । ଦିନେ ଶ୍ରବଣ କୁମାରକୁ ଡାକି କହିଲେ ଯେ ତାଙ୍କର ତୀର୍ଥ କରିବାକୁ ଇଚ୍ଛା ଅଛି ।

ଅସୀମ : ତୀର୍ଥ କରିବା ମାନେ ?

ସନାତନ : ଆମ ଦେଶରେ ବିଭିନ୍ନ ପବିତ୍ର ସ୍ଥାନ ଅଛି । ପବିତ୍ର ନଦୀ, ପବିତ୍ର ସମୁଦ୍ର ଓ ଦେବାଦେବୀମାନଙ୍କ ମନ୍ଦିର ଅଛି । ଯେମିତି ଆମ ପୁରୀ । ସେଠିକି ଆମେ ଗତଥର ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଯାଇନଥିଲେ ? ସେ ଗୋଟେ ତୀର୍ଥ ସ୍ଥାନ । ଲୋକଙ୍କର ବିଶ୍ୱାସ ସେଇ ସ୍ଥାନମାନଙ୍କୁ ଗଲେ ମଣିଷର ମଙ୍ଗଳ ହୁଏ ।

ଅସୀମ : ବୁଝିଲି ଅନ୍ଧମୁନି ସେସବୁ ସ୍ଥାନକୁ ଯିବାକୁ କହିଲେ ।

ସନାତନ : ହଁ, ସେତେବେଳେତ ଆଜିକାଲି ଭଳି ଗାଡିମୋଟର ନଥିଲା । ଯିବେ କେମିତି ?

ଅସୀମ : ଘୋଡା ଗାଡିରେ, ନହେଲେ ରଥରେ ।

ସନାତନ : ସେମାନେ ଗରିବ ଋଷି ଥିଲେ, ତାଙ୍କର ଘୋଡା ଗାଡି ବା ରଥ ଗାଡି ଆସିବୁ କୁଆଡୁ । ଯିବେ କେମିତି ? ଚାଲି ଚାଲି ଯାଇଥାନ୍ତେ ଯେ - କିନ୍ତୁ ଏମାନେ ଅନ୍ଧକୁ ପୁଣି ବୁଢାବୁଢୀ । ଶ୍ରବଣ କୁମାର ଭାବିବାକୁ ଲାଗିଲେ ବାପାମାଆଙ୍କ ଆଶା କେମିତି ପୁରା ହେବ ।



Digitized by PPRACHIN, SOA

ଶେଷରେ ସ୍ଥିର କଲେ ବାପାମାଆଙ୍କୁ କାନ୍ଧରେ ବୋହି ବୋହି ତୀର୍ଥ ସ୍ଥାନ ଦେଖାଇବେ ।

ଅସୀମ : ବୋହି ବୋହି ମାନେ ?

ସନାତନ : ତୁ ଭାର ଦେଖିଚୁ ?

ଅସୀମ : ନା -

ସନାତନ : ଆରେ ଆମ ବଗିଚାକୁ ସେ ମାଳି ଆସେ ନି । କାନ୍ଧରେ କ'ଣ ନେଇ ଆସେ ? ଗୋଟିଏ ଲମ୍ବା ବାଉଁଶରୁ ରସିରେ ଦୁଇଟି ଝୁଡି ଦିଇପଟେ ଝୁଲିନଥାଏ । ସେଇ ହେଲା ଭାର । ଶ୍ରବଣ କୁମାର କ'ଣ କଲେ - ସେମିତିକା ଗୋଟେ ଭାର ଯୋଗାଡ କରି - ଗୋଟେ ପଟେ ବାପା ଆଉ ଗୋଟେ ପଟେ ମାଆଙ୍କୁ ବସାଇଲେ । ବାଉଁଶକୁ କାନ୍ଧକୁ ଉଠାଇ ବୋହି ବୋହି ଚାଲିଲେ । ଆଜି ଏ ଜାଗାରେ ତ କାଲି ସେ ଜାଗାରେ ।

ଅସୀମ : ଶ୍ରବଣ କୁମାରଙ୍କୁ ବହୁତ କଷ୍ଟ ହେଉଥିବନା ଜେଜେ ?

ସନାତନ : ହଁ - ହେଲେ ସେ କଷ୍ଟକୁ ସେ କ'ଣ ଖାତିରି କଲେ, ବାପାମାଆଙ୍କୁ ଖୁସି କରିବାକୁ ସବୁ କଷ୍ଟକୁ ହସି ହସି ସହିନେଲେ ।

ଅସୀମ : ଠିକ୍ କଥା - ସେଇଥି ପାଇଁ ପୁରାଣରେ ତାଙ୍କ କଥା ଲେଖାଯାଇଚି ।

ସନାତନ : ଠିକ୍ ସେମିତି ତୁ ବଡ ହେଲେ ତୋ ଡାଡି ମମିଙ୍କ କଥା ରଖିବୁ ନା ?

ଅସୀମ : ଆମର ତ କାର ଅଛି । ଆମେ ସେଇଥିରେ ତୀର୍ଥ ସ୍ଥାନ ବୁଲିଯିବୁ ।

ସନାତନ : ହଁ କାର ଅଛି ତମେମାନେ ଚାଲିଯିବ, ହେଲେ ସେଇଟା ଅସଲ କଥା ନୁହେଁ । ବାପାମାଆଙ୍କ ମନଜାଣି କାମ କରିବା ହେଉଛି ଅସଲ କଥା । ତୋ ଡାଡି ମମି ବୁଢାବୁଢୀ ହେଇଗଲେ ତାଙ୍କ ସେବା କରିବୁ ତ ।

ଅସୀମ : ହଁ !

ସନାତନ : ବଡ କରି ହଁ ଟେ ମାରିଦଉଚୁ । ସେମାନେ ବୁଢା ହେଲା ବେଳକୁ ତୁ ତ ତୋ girl friend କୁ ଧରି ବୁଲୁଥିବୁ । ତାଙ୍କୁ ପଚାରିବୁ କି ନାହିଁ କିଏ ଜାଣିଚି ।



Digitized by PPRACHIN, SOA

| | | |
|---|---|---|
| ଅସୀମ | : | ସେତେବେଳେ ତୁମେ ଦେଖିବ ତା'ପରେ କହିବ । |
| ସନାତନ | : | ଆରେ ସେତେବେଳକୁ କ'ଣ ମୁଁ ବଞ୍ଚିଥିବି ଯେ କହିବି । |
| ଅସୀମ | : | ବଞ୍ଚି ନଥିବ ତ ? ଆକାଶରେ ତ star ହେଇକି ଥିବ ନା । ସେଇଠୁ ଥାଇ ଦେଖିବ । |
| ସନାତନ | : | ତୁ ତାହା ହେଲେ ତୋ ବୁଢା ବାପା ଆଉ ବୁଢୀ ମାଆର ସେବା ନିଶ୍ଚୟ କରିବୁ ? |
| ଅସୀମ | : | କହିଲି ପରା ହଁ - ଆଉ କେତେ ଥର କହିବି ? |
| ସନାତନ | : | promise |
| ଅସୀମ | : | promise (ଦୁହେଁ ହାତ ମିଳାନ୍ତି, ବାହାରୁ ଆସେ ସୀମାଦ୍ରୀ) |
| ସନାତନ | : | ତୁ ଏତେ ସକାଳୁ ଫ୍ୟାକ୍ଟ୍ରି ଯାଇଥିଲୁ ସୀମାଦ୍ରୀ ? ତୋ ଫ୍ୟାକ୍ଟ୍ରି ଠିକ୍ ଠାକ୍ ଚାଲିଚି ତ ? |
| ସୀମାଦ୍ରୀ | : | ହଁ ବାପା ଠିକ୍ ଚାଲିଚି । ଆଜି ଅସୀମକୁ ନେଇ ଭାଇଜାଗ୍‌ରେ ତା ସ୍କୁଲ ହଷ୍ଟେଲରେ ଛାଡିବାକୁ ପଡିବ । ଭାବିଛି ସିଆଡୁ ସିଆଡୁ ହାଇଦ୍ରାବାଦ୍ ଯାଇ କିଛି କାମ ସାରିଦେବି । ସେଇଥିପାଇଁ ଫ୍ୟାକ୍ଟ୍ରିରେ କିଛି pending କାମ ସାରିଦେବାକୁ ଯାଇଥିଲି । (ସୀମାଦ୍ରୀ ଭିତରକୁ ଯାଆନ୍ତି) |
| ଅସୀମ | : | ମୁଁ ଆସୁଛି ଜେଜେ । (ଅସୀମ ଚାଲିଯାଇଛି) |
| ସନାତନ | : | ଯା' - ହେଲେ ଆଜି ଯେଉଁ promise କରିଚୁ ସେ କଥା ଯେମିତି ଭୁଲି ନଯାଉ । |
| ଅସୀମ | : | (ଭିତରୁ) ନା' - କେବେ ଭୁଲିବିନି । (ସନାତନ ସେଇ ଆଡକୁ ଚାହିଁ ରହନ୍ତି । ଧିରେ ଧିରେ ଆଲୋକ ଲିଭି ଆସେ) (ଅନ୍ଧାର) |





Digitized by PPRACHIN, SOA

## ତୃତୀୟ ଦୃଶ୍ୟ

(ସନାତନଙ୍କର ପୂର୍ବ ବର୍ଣ୍ଣିତ ବୈଠକ ଗୃହ । ଅଳକା ଲ୍ୟାଣ୍ଡ ଫୋନ୍ ଲଗାଇ ଚାଲିଚନ୍ତି । ଘଣ୍ଟାରେ ୯ଟା ବାଜିବାର ସୂଚନା)

ଅଳକା : (ଟେଲିଫୋନ୍‌ରେ) ହଁ ଶୁଣ - ତମେ ଯଦି ଆସିବା ଡେରି ହବ ତା'ହେଲେ ଗାଡି ପଠେଇ ଦିଅ । ମୁଁ ନିଜେ ଯାଇ ସବୁ ମାର୍କେଟିଂ କରି ନେଇଆସିବି । ଆଚ୍ଛା - ଆଚ୍ଛା - ହଉ ଠିକ୍ ଅଛି । ଆଉ ଶୁଣ - ୯ଟା ବାଜିଲାଣି ବାପା ଏ ପର୍ଯ୍ୟନ୍ତ ମର୍ଣ୍ଣିଂ ୱାକ୍‌ରୁ ଫେରିନାହାଁନ୍ତି । ତମେ ଟିକେ ଅକାରଣ ମଉସା ଓ ଶିବ ମଉସାଙ୍କ ଘର ଆଡେ ଫୋନ୍ କରି ବୁଝତ । (ଶେଷାଦ୍ରୀ ଆସେ)

ଶେଷାଦ୍ରୀ : ରଘୁ...ରଘୁ...ରଘୁକୁ କୁଆଡେ ପଠେଇଛ ଭାଉଜ ।

ଅଳକା : ରଘୁ ପରା ଗତକାଲି ସଂଧ୍ୟାରୁ ତା ଗାଁକୁ ଚାଲିଯାଇଛି । ତା' ମାଆ ଦେହ ଖରାପ ବୋଲି ଫୋନ୍ ଆସିଥିଲା ।

ଶେଷାଦ୍ରୀ : ପ୍ରତ୍ୟେକ ମାସରେ କ'ଣ ନା କ'ଣ ବାହାନା ଦେଖାଇ ଟୋକାଟା ଗାଁକୁ ଚାଲିଯାଉଛି । ଏଠି ପାଞ୍ଚ ବର୍ଷ ଖଣ୍ଡେ ରହିଗଲାଣି ତ ମୁହଁ ବଢିଗଲାଣି ।

ଅଳକା : ହଠାତ୍ ରଘୁ ପାଖରେ କି କାମ ପଡିଲା ?

ଶେଷାଦ୍ରୀ : କାମ ମାନେ - ନୂଆ କାରଟା କମ୍ପ୍ୟୁଟରାଇଜଡ୍ ତ, ମୁଁ ନିଜେ ଚଳାଇବାକୁ ଟିକିଏ ଅଡୁଆ ଲାଗୁଛି । ଆଚ୍ଛା ଭାଇଙ୍କ ଡ୍ରାଇଭର ଆସିଲାଣି ନା...।

ଅଳକା : ସେ ତ ଆସି ଭାଇଙ୍କୁ ନେଇ ଚାଲିଗଲାଣି । ତାଙ୍କ ଫ୍ୟାକ୍ଟ୍ରିରେ କ'ଣ ଗୋଟେ ବ୍ରେକ୍ ଡାଉନ୍ ହୋଇଛି । ସେଇଥିପାଇଁ ରାତି ୪ଟାରୁ ଚାଲିଗଲେଣି ।



Digitized by PPRACHIN, SOA

ଶେଷାଦ୍ରୀ : ଠିକ୍ ଅଛି ମୁଁ ଯାଉଛି । ଧିରେ ଧିରେ ହେଉ ପଛେ ନିଜେ ଡ୍ରାଇଭିଂ କରି ଯିବି ।

ଅଳକା : ହଁ ଶୁଣ, ବାପା ମର୍ଣ୍ଣିଂ ଓ୍ୱାକ୍‌ରେ ଯାଇ ଏ ପର୍ଯ୍ୟନ୍ତ ଫେରିନାହାନ୍ତି । ଗଲାବେଳେ ଟିକିଏ ଶିବ ମଉସା କି ଅକାରଣ ମଉସାଙ୍କ ଘରେ ଦେଖି ଦେଇଥାନ୍ତ ।

ଶେଷାଦ୍ରୀ : ଆସି ୯ଟା ବିଜିଲାଣି ଫେରି ନାହାନ୍ତି । ସେମିତି ହବା କଥା ନୁହେଁ । ଦେଖ - ବଗିଚା କାମରେ ଲାଗିଯାଇଥିବେ ।

ଅଳକା : ନାଁ ସେସବୁ ମୁଁ ଦେଖିସାରିଲିଣି । କୋଉଠି ନାହାଁନ୍ତି । ରୁଟିନ୍ ଅନୁସାରେ ସକାଳ ୫ଟାରେ ଯାଇ ୭ଟା ସୁଦ୍ଧା ଫେରି ଚା ଖାଆନ୍ତି । ମୁଁ ଚା କରି ବସିଚି ଅଥଚ ତାଙ୍କର ଦେଖା ନାହିଁ ।

ଶେଷାଦ୍ରୀ : ଠିକ୍ ଅଛି - ତୁମେ ବ୍ୟସ୍ତ ହୁଅନି, ମୁଁ ଦେଖିନେବି । ଭାଉଜ ସାନୁ ଖବର କ'ଣ ? ପିଲାଟା ଏଠୁ ଭାଇଜାଗ୍ ଗଲା ପରେ ଜମା ଭଲ ଲାଗୁନି । ଆମେ ଦୁଇଭାଇ ତ ବହୁତ ବ୍ୟସ୍ତ - ତୁମେ ଟିକେ ତା ସହିତ ଡେଲି contact ରଖୁଥାଅ । ମୁଁ ଚାଲିଲି ମୋର ଆଜି ସେପଟେ ଗୋଟେ conference ଅଛି, Lunch ଖାଇବାକୁ ଆସିବିନି । (ଶେଷାଦ୍ରୀ ଚାଲିଯାଏ)

ଅଳକା : ଶୁଣ - ମଉସାଙ୍କ ଘରକୁ ଯାଇ ଖବର ଦବ ।

ଅଳକା : ସକାଳୁ ଫୋନ ଗୁଡା କ'ଣ ହେଇଚି କେଜାଣି ସାନୁ ସହିତ ଟିକେ କଥା ବି ହେଇପାରୁନି । ଦେଖେ ଆଉ ଥରେ ଟ୍ରାଏ କରେ । (ଫୋନ୍ କନେକ୍ଟ କରିଚି) ହାଲୋ....ହାଲୋ.... ମୁଁ ଅସୀମ ଅନିକେତର ମମି କହୁଚି । ହଁ ହଁ ଏଇ ବର୍ଷ ଷ୍ଟାଣ୍ଡାର୍ଡ ଥ୍ରି ରେ ଆଡ୍‌ମିସନ୍ ନେଇଚି ।... ତେବେ... ଆଚ୍ଛା - ଆଚ୍ଛା । କାଲି କଥା ହେଇପାରିବି ?...Ok.

(ଧିରେ ଧିରେ ଆଲୋକ ଲିଭି ଆସେ)

(ଅନ୍ଧାର)





Digitized by PPRACHIN, SOA

# ଚତୁର୍ଥ ଦୃଶ୍ୟ

(ସେଇ ଘର । ସମୟ ସଂଧ୍ୟା ସୀମାଦ୍ରୀ ଓ ଶେଷାଦ୍ରୀ କଥାବାର୍ତ୍ତା ହେଉଛନ୍ତି ।)

ସୀମାଦ୍ରୀ : ସକାଳ ୭ଟାରୁ ଆସି ରାତି ୯ଟା ହେଲା । ଗଳି, କନ୍ଧି ସବୁଜାଗା ଖୋଜାହେଲା । ତଥାପି ବାପାଙ୍କର କୌଣସି ଖବର ନାହିଁ ।

ଶେଷାଦ୍ରୀ : ସବୁଆଡେତ ମୁଁ ଖୋଜ୍ ଖବର ନେଇସାରିଲିଣି । କୁଆଡେ ବି ବାପା ଯାଇ ନାହାଁନ୍ତି । ଆଚ୍ଛା ଭାଇ, ବାପାଙ୍କର କୋଉଠି କିଛି ଆକ୍ସିଡେଣ୍ଟ ହୋଇଯାଇନି ତ ?

ସୀମାଦ୍ରୀ : ଆରେ ଏ ଛୋଟ ସହରରେ କେତେଟା ବା ହସ୍‌ପିଟାଲ୍ ? ତା'ଛଡା ବାପାଙ୍କୁ କିଏ ବା ନ ଜାଣିଛି । ସେମିତି କିଛି ହୋଇଥିଲେ ଖବର ମିଳିସାରନ୍ତାଣି ।

ଶେଷାଦ୍ରୀ : ଆଉ କୁଆଡେ ଯାଇଥିବେ ? ମୁଣ୍ଡ କିଛି କାମ କରୁନି । ଆଚ୍ଛା ଭାଇ, ଅସୀମକୁ ନେଇ ବାହାରେ ଭାଇଜାଗ୍‌ରେ ପଢେଇବା କଥାଟା ସେ ମୋଟେ ପସନ୍ଦ କରୁନଥିଲେ...ସେଇଥିପାଇଁ କାଳେ...।

ସୀମାଦ୍ରୀ : ନା ସେ ବିଷୟରେ ତାଙ୍କ ସହିତ ମୋର ଆଲୋଚନା ହେବାପରେ ସେସବୁ ବୁଝିଯାଇଥିଲେ । ତା'ପରେ admission ବେଳକୁ ସେ ତ ନିଜେ ସାଙ୍ଗରେ ଯାଇଥିଲେ । ତାଙ୍କ ନାଁଟା ବି ଗାଡିଆନ୍ ହିସାବରେ ସେଠି ସାମିଲ କରିଦିଆଯାଇଛି । ଯେତେବେଳେ ଚାହିଁବେ ଅସୀମକୁ ଯାଇ ଦେଖିଆସି ପାରିବେ ।

ଶେଷାଦ୍ରୀ : ତା'ହେଲେ କ'ଣ କରିବା - ପୋଲିସର ସାହାଯ୍ୟ ନେବା, F.I.R. ଦେବା ?



Digitized by PPRACHIN, SOA

ସୀମାଦ୍ରୀ : ନା - ନା । ଏତେ ତର ତର ହୋଇ ପୋଲିସକୁ ଖବର ଦବାଟା ଠିକ୍ ହବନି । ଆଜି ରାତିଟା wait କରିବା - କାଲିକି ଦେଖିବା...।

ଅଳକା (ଚା ନେଇ ଆସନ୍ତି ଓ ସମସ୍ତଙ୍କୁ ଚା ଦିଅନ୍ତି) ତୁମେ ତୁମ ଭାଇଙ୍କ କଥା ଶୁଣନି ଶେଷ । ସବୁକଥା ଧିରେସୁସ୍ଥେ କରିବା ତାଙ୍କର ଅଭ୍ୟାସ । ତମେ ଯାଇ ପୋଲିସ୍‌କୁ ଖବର ଦିଅ ତ ।

ଶେଷାଦ୍ରୀ : ନାଇଁ ଭାଉଜ, ଭାଇ ଯେତେବେଳେ ମନା କରୁଚନ୍ତି କିଛି ଭାବିକି ମନା କରୁଚନ୍ତି । ଟିକେ ଅପେକ୍ଷା କରିବା । **(ଏଇ ସମୟରେ ଫୋନ୍ ରିଙ୍ଗ୍ ହୁଏ ଓ ଶେଷାଦ୍ରୀ ଫୋନ୍ ଉଠାଏ । ଶେଷ ଫୋନ୍ ଧରି ହାଲୋ କରିବା ମାତ୍ରେ ମଞ୍ଚର ଅନ୍ୟ ଏକ ଅଞ୍ଚଳ ଆଲୋକିତ ହୁଏ । ଜାଗାଟି ଗୋଟିଏ ପରିତ୍ୟକ୍ତ କୋଠାର ଛାତ । ସେଠି ଅପହରଣକାରୀ ଗଜାନନ ମୋବାଇଲ ଧରି କଥା ହେଉଚି । ତା' ନିକଟରେ ଯୋଗେଶ ଠିଆ ହୋଇ ଗୋଟେ ବାଇନାକୁଲର୍ ଧରି ବାହାରକୁ ଦେଖୁଛି ।)**

ଶେଷାଦ୍ରୀ : ହାଲୋ....

ଗଜାନନ : ଏଇଟା ସନାତନ ଚୌଧୁରୀଙ୍କ Residence ?

ଶେଷାଦ୍ରୀ : ହଁ, ଆପଣ କାହାକୁ ଖୋଜୁଚନ୍ତି ?

ଗଜାନନ : ଆପଣ ସନାତନ ଚୌଧୁରୀଙ୍କର କ'ଣ ହେବେ ?

ଶେଷାଦ୍ରୀ : ମୁଁ ତାଙ୍କର ସାନ ପୁଅ କହୁଚି, ହେଲେ ଆପଣ କିଏ କହୁଚନ୍ତି ?..

ଗଜାନନ : ଆଚ୍ଛା ଆପଣଙ୍କର ବଡ ଭାଇ ସୀମାଦ୍ରୀ ବାବୁ ଘରେ ଅଛନ୍ତି ?

ଶେଷାଦ୍ରୀ : ଅଛନ୍ତି । ହେଲେ ଆପଣ କିଏ, ପରିଚୟଟା ଦିଅନ୍ତୁ ।

ଗଜାନନ : ବାଃ, ଭଲ ହେଲା, ଦୁଇଭାଇ ଯାକ ଉପସ୍ଥିତ ଅଛନ୍ତି ।

ଶେଷାଦ୍ରୀ : କିଏ ଆପଣ ? ପରିଚୟଟା ଦେଉନାହାଁନ୍ତି କାହିଁକି ?

ଗଜାନନ : ଦେବି, ଦେବି, ପରିଚୟଟା ତ ନିଶ୍ଚୟ ଦେବି । ହେଲେ ସୀମାଦ୍ରୀ ବାବୁଙ୍କ ଛଡା ପାଖରେ କେହି ବାହାର ଲୋକ ନାହାଁନ୍ତି ତ ?

ଶେଷାଦ୍ରୀ : ଆପଣ କ'ଣ କହିବାକୁ ଚାହାଁନ୍ତି ? ଭାଉଜଙ୍କ ଛଡା କେହି ନାହାଁନ୍ତି । ଏଥର ପରିଚୟଟା କୁହନ୍ତୁ ।



Digitized by PPRACHIN, SOA

ଗଜାନନ : ହାଃ...ହାଃ...ହାଃ...।

ଶେଷାଦ୍ରୀ : ହସୁଚନ୍ତି ? ଆପଣଙ୍କ ଉଦ୍ଦେଶ୍ୟ କ'ଣ ବୁଝିପାରୁନି।

ଗଜାନନ : ଉଦ୍ଦେଶ୍ୟ - ଆପଣଙ୍କ ବାପାଙ୍କ ବିଷୟରେ ଖବର ଦେବା।

ଶେଷାଦ୍ରୀ : (ରିସିଭରରେ ହାତ ଦେଇ ସୀମାଦ୍ରୀକୁ) ବାପାଙ୍କ ବିଷୟରେ ଖବର ଦେବାକୁ କହୁଚି। (ଫୋନ୍‌ରେ) ଆପଣ ଆମ ବାପାଙ୍କ ବିଷୟରେ ଜାଣିଚନ୍ତି ? ସେ ବର୍ତ୍ତମାନ କୋଉଠି ? **(ସୀମାଦ୍ରୀ ଲ୍ୟାଣ୍ଡ ଫୋନ୍‌ର ଲାଉଡ୍ ସ୍ପିକର୍ ସୁଇଚ୍ ଦବାଇ ଦିଏ, ଫୋନ୍ ଆବାଜକୁ ସମସ୍ତେ ଶୁଣନ୍ତି।)**

ଗଜାନନ : ସେ କଥାଗୁଡା କ'ଣ ଏମିତି ମାଗଣାରେ ମାଗଣାରେ କହିଦିଆଯାଏ ଶେଷାଦ୍ରୀ ବାବୁ।

ଶେଷାଦ୍ରୀ : ତା'ମାନେ ଆପଣ ଆମ ବାପାଙ୍କୁ କିଡ୍‌ନାପ୍ କରି ରଖିଚନ୍ତି ?

ଗଜାନନ : ନା - ନା। ମୁଁ କିଡ୍‌ନାପ୍ କରିନି, କିନ୍ତୁ କିଏ କୋଉଠି ନେଇ ରଖିଛି ସେସବୁ ଖବର ମୋ ପାଖରେ ଅଛି। ଆପଣ ଚାହିଁଲେ ମୁଁ ସାହାଯ୍ୟ କରିପାରିବି।

ଶେଷାଦ୍ରୀ : ଆପଣ ନିଜ ପରିଚୟ ଦଉନାହାଁନ୍ତି, ପୁଣି ସାହାଯ୍ୟ କରିବାକୁ କହୁଚନ୍ତି। ଆମେ ଆପଣଙ୍କୁ କେମିତି ବିଶ୍ୱାସ କରିବୁ।

ଗଜାନନ : ନ କଲେ ଆପଣଙ୍କ ପାଇଁ ଅସୁବିଧା। (ଯୋଗେଶ ଗଜାନନ ନିକଟକୁ ଆସି ଶୁଣିବାକୁ ଲାଗେ)

ଶେଷାଦ୍ରୀ : ତା'ମାନେ - ଆପଣ ନିଜେ ସେଇ ଅପହରଣକାରୀ। ହେଲେ ଆମ ବାପା ଆପଣଙ୍କର କି ଅପରାଧ କରିଥିଲେ ?

ଗଜାନନ : ହେଃ...। ଅପରାଧିମାନଙ୍କୁ କିଏ କାହିଁକି ଅପହରଣ କରିବ ଶେଷାଦ୍ରୀ ବାବୁ। ସବୁବେଳେ ନିରପରାଧ ଲୋକଟିକୁ ଅପହରଣ କରାଯାଇଥାଏ।

ସୀମାଦ୍ରୀ : (ଫୋନ୍ ଛଡେଇ ନେଇ) ହେ - ଆପଣ ଯିଏ ହୁଅନ୍ତୁ ନା କାହିଁକି ପ୍ରଥମେ କୁହନ୍ତୁ ଆମ ବାପା କେମିତି ଅଛନ୍ତି।



Digitized by PPRACHIN, SOA

ଗଜାନନ : କିଏ ସୀମାଦ୍ରୀ ବାବୁ ନା.... ? ନମସ୍କାର, ନମସ୍କାର ! ଭଲ ହେଲା ଆପଣ ଫୋନ୍ ଧରିଲେ ।

ସୀମାଦ୍ରୀ : ଦେଖନ୍ତୁ ବାପାଙ୍କର ଟିକିଏ କିଛି କ୍ଷତି ହେଲେ ମୁଁ ଆଦୌ ଛାଡିବିନି କହିଦଉଚି ।

ଗଜାନନ : ବ୍ୟସ୍ତ ହୁଅନ୍ତୁନି ସୀମାଦ୍ରୀ ବାବୁ । ଆପଣଙ୍କ ବାପା ଜଣେ ସମ୍ମାନସ୍ପଦ ବ୍ୟକ୍ତି । ତାଙ୍କୁ କିପରି ସସମ୍ମାନ ରଖାଯିବ କିଡ୍‌ନାପର ତା'ର ସମସ୍ତ ବନ୍ଦୋବସ୍ତ କରି ରଖିଚି । ବି ଆସିଓର ।

ସୀମାଦ୍ରୀ : ତାଙ୍କୁ ଯଦି କୌଣସି ପ୍ରକାର ବାଜେ ବ୍ୟବହାର କରାଯାଏ ମୁଁ କେଉଁଠି ନା କେଉଁଠି ପହଞ୍ଚିବି । ଆପଣମାନେ ଜାଣନ୍ତି ଆମ reach କେତେଦୂର ।

ଗଜାନନ : ଦେଖନ୍ତୁ ସୀମାଦ୍ରୀ ବାବୁ - ମୁଁ ଭଲରେ ଭଲରେ କଥା ହେଲାବେଳକୁ ଆପଣ ମୋତେ ଧମକ ଦେବା ଆରମ୍ଭ କଲେଣି । ସେମିତି ହେଲେ ଶୁଣି ରଖନ୍ତୁ - directly ବା indirectly ପୋଲିସ ପର୍ଯ୍ୟନ୍ତ କଥା ନେଲେ - ବା ଅନ୍ୟ କୌଣସି ଚାଲାକି କଲେ ଆପଣଙ୍କ ବାପାଙ୍କ ଶବଟା ରେଳଲାଇନ୍ ଉପରେ ପକାଇଦେବାକୁ ଆମେ ପଛେଇ ଯିବୁନି ।

ସୀମାଦ୍ରୀ : ତା'ମାନେ ତାଙ୍କୁ ଆପଣ ହତ୍ୟା କରିବେ ?

ଗଜାନନ : ସେଇଟା ଆମର ଅସଲ ଉଦ୍ଦେଶ୍ୟ ନୁହେଁ । ତାଙ୍କୁ ଶେଷ ପର୍ଯ୍ୟନ୍ତ ବଞ୍ଚେଇ ରଖି ଆମେ ଆମର କାମ ହାସଲ କରିବାକୁ ଚାହୁଁ ।

ସୀମାଦ୍ରୀ : ଠିକ୍ ଅଛି, ଆପଣ ତା ହେଲେ କ'ଣ ଚାହୁଁଛନ୍ତି ।

ଗଜାନନ : ହାଃ...ହାଃ...ହାଃ...ହାଃ.. ।

ସୀମାଦ୍ରୀ : ଆରେ, ଏମିତି ହସୁଚନ୍ତି ଯେ... ?

ଗଜାନନ : ଆପଣ ସବୁ ବୁଝି ନବୁଝିଲା ପିର ଅଭିନୟ କରୁଚନ୍ତି - ହସିବିନି ? ଜଣେ କୋଟିପତିର ରକ୍ତ ସଂପର୍କୀୟକୁ କାହିଁକି ଅପହରଣ କରାଯାଏ ସବୁଦିନେ ତ ଖବର କାଗଜରେ ବାହାରୁଚି । ଆପଣ କେମିତି ଜାଣିପାରୁ ନାହାଁନ୍ତି ?



Digitized by PPRACHIN, SOA

ସୀମାଦ୍ରୀ : ସେସବୁ ଛାଡନ୍ତୁ । ଆପଣଙ୍କର motive ଟା କ'ଣ, ମୁଁ ଆପଣଙ୍କ ମୁହଁରୁ ଶୁଣିବାକୁ ଚାହୁଁଚି ।

ଗଜାନନ : ok, ତେବେ ଶୁଣନ୍ତୁ । motive ଟା ହେଲା ମାଲ୍ ।

ସୀମାଦ୍ରୀ : ମାନେ... ?

ଗଜାନନ : ମାଲ୍ - ମାଲ୍ - ମାନେ money. ମନି ମନି ମନି, ବ୍ରାଇଟର ଦ୍ୟାନ୍ ସନ୍‌ସାଇନ୍ ସୁଇଟର ଦ୍ୟାନ୍ ହନି । ଏଥର କ୍ଲିଅର ହେଲା ତ ?

ସୀମାଦ୍ରୀ : ଠିକ୍ ଅଛି । ଏମାଉଣ୍ଟ ଟା କୁହନ୍ତୁ ।

ଗଜାନନ : ଆପଣ ଆତଙ୍କିତ ହୁଅନ୍ତୁନି ସୀମାଦ୍ରୀ ବାବୁ । ଆମେ ଯାହା ମାଗିବୁ ସେ ଏମାଉଣ୍ଟଟା ଆପଣ ପାନପିକ ଭଳି ଫୋପାଡି ଦେଇପାରିବେ । ପଚିଶ୍ ।

ସୀମାଦ୍ରୀ : ପଚିଶ୍ ହଜାର... ?

ଗଜାନନ : ହାଃ...ହାଃ...ହାଃ... ପଚିଶ୍ ହଜାର ପାଇଁ ତ ଆମେ ଆପଣଙ୍କ ଘରର ମୂଷା ଛୁଆଟା ବି କିଡ୍‌ନାପ୍ କରିବୁନି । ଡାହଣ ପଟେ ପାଞ୍ଚଟା ଶୂନ ଲଗାନ୍ତୁ ।

ସୀମାଦ୍ରୀ : ପଚିଶ୍ ଲକ୍ଷ ? ଏତେ ଟଙ୍କା ଆମେ କୋଉଠୁ ପାଇବୁ ?

ଗଜାନନ : କୋଉଠୁ ପାଇବୁ ମାନେ ? ଆପଣଙ୍କ ବାପା, ଦୁଇ ଭାଇଙ୍କ ନାଁରେ ଦୁଇ ଦୁଇଟା ଫ୍ୟାକ୍‌ଟ୍ରି କରି ଦେଇଚନ୍ତି । ଆପଣଙ୍କର ବାର୍ଷିକ turnover ପଚାଶ ରୁ ଷାଠିଏ କୋଟି । ସାନ ଭାଇଙ୍କ turnover ବି ସେଇ ପାଖାପାଖି । ଦୁଇ ଭାଇଙ୍କର ଦୁଇଟା palecial building ଭଡାରେ ଲାଗିଛି । ବାପାଙ୍କ ଜୀବନ ପାଇଁ ପଚିଶି ଲକ୍ଷ କେତେ ?

ସୀମାଦ୍ରୀ : ଏସବୁ ଆପଣ ବାହାରୁ ଦେଖି କହୁଛନ୍ତି । ଆମେ ଦୁଇଭାଇ କେତେ ଯେ ଋଣଗ୍ରସ୍ତ ଆପଣ ଜାଣିନାହାଁନ୍ତି । ଏତେଗୁଡାଏ ଟଙ୍କା ଯୋଗାଡ କରିବା ଏକବାର ଅସମ୍ଭବ । ଆମେ ପାରିବୁନୁ ।



Digitized by PPRACHIN, SOA

ଗଜାନନ : ପାରିବୁନି ପାରିବୁନି କହି କଥାଟା ହାଲ୍‌କା କରିଦିଅନ୍ତୁନି । ଦୁଇଭାଇ ବସି ବିଚାର କରନ୍ତୁ । ପରେ ଦେଖା ହବା ।

ସୀମାଦ୍ରୀ : ଦେଖା ହବା ମାନେ ? ଆପଣଙ୍କ ସହିତ ଆମର ଦେଖା ହେବ ?

ଗଜାନନ : ନିଶ୍ଚୟ । ଆମମାନଙ୍କ ଭିତରେ ଯେତେବେଳେ ଗୋଟେ deal start ହେଇଯାଇଚି । ଦେଖା ହେବ ହିଁ ହେବ । ତେବେ ସାମନା ସାମନି ନୁହେଁ - ଏଇ ଫୋନ୍‌ରେ ହିଁ ଭେଟାଭେଟି । ରହୁଛି, ନମସ୍କାର ।

ସୀମାଦ୍ରୀ : ହାଲୋ... ହାଲୋ... ହାଲୋ... । ସବୁକଥା ଶୁଣିଲୁତ । ଭିତରକୁ ଆସ କଥା ହେବା ।

**(ସୀମାଦ୍ରୀ କୋନ୍‌ରୁ ଆଲୋକ କଟିଯାଏ, ଗଜାନନ କୋନ୍‌ରେ ଆଲୋକ ଥାଏ ।)**

ଯୋଗେଶ : ବାଃ.. ବଢିଆ କହିଲା । ନାଟକଟା ଏଥର ଜମିଲା । ମୁଁ ଯେମିତି ଯେମିତି କହିଥିଲା ଆପଣ ସେମିତି କହିଲା । ଟଙ୍କା ନ ଦେଇ ଯିବେ କୁଆଡେ -

ଗଜାନନ : ନାଇଁ - ଯୋଗେଶ । ମୋତେ ନର୍ଭସ ଲାଗୁଚି ।

ଯୋଗେଶ : ଆରେ ନର୍ଭସ୍ କାହିଁକି ହଉଚନ୍ତି - ମୁଁ ଅଛିନା । ମୁଁ ଯେମିତି କେହୁଚି ଆପଣ ସେମିତି କରିଚାଲନ୍ତୁ ଟଙ୍କା ଆପେ ଆପେ ଆସିବ ।

ଗଜାନନ : କ'ଣ କେତେବେଳେ ଘଟିଯିବ ମୁଁ ଜାଣିପାରୁନି । ଏତେ ଟଙ୍କା ସେମାନଙ୍କ ପାଖରେ ନାହିଁ ବୋଲି କହୁଛନ୍ତି ଯଦି ପୋଲିସକୁ Involve କରନ୍ତି ବଡ ବିପଦ ।

ଯୋଗେଶ : କିଛି ହବନି । ଏ ଯୋଗେଶ ଉପରେ ଭରସା ରଖ ଭାଇ । ଆମେ ଯୋଉ ଜଗାରେ ଅଛେ ଏଇଟା ଗୋଟେ ପରିତ୍ୟକ୍ତ କୋଠାର ଛାତ୍ । ପୁଣି ଚାରି ମହ୍‌ଲା ଉପର ଛାତ୍ । ବହୁତ ସାଲ ହେଲା ଏଇଟା ପଡିରହିଛି । ଚାରିପାଖ ଦେଖ ଖାଲି ଜଙ୍ଗଲ୍ ହି ଜଙ୍ଗଲ୍ ।

ଗଜାନନ : ତଥାପି - ତଥାପି ଅଜଣା ଭୟରେ ମୋ ଭିତରଟା ଥରୁଛି । ଯଦି ଧରାପଡିଯିବା...।



Digitized by PPRACHIN, SOA

ଯୋଗେଶ : ଧରାପଡିବାର କୋଇ ଚାନ୍ସ ନେହିଁ । ଆମ ପାଖରେ ଗ୍ୟାରଟା ଅଲଗ ଅଲଗ ସିମ୍ ଅଛି, ଆଉ ଲାପଟପ୍ ବି ଅଛି । ହରବାର ସିମ୍ ଚେଞ୍ଜ କରି ଫୋନ୍ ହ୍ୟାକିଂ କରି କଥା ହେବ । ପୋଲିସ ବାପା ବି ପତା ପାଇବନି । ତା'ପରେ ଆମର ଗୋଟେ ଲୋକ ବୁଢା ଘର ସାମନାରେ ଚକ୍କର୍ ମାରୁଛି । କିଛି ସନ୍ଦେହ ହେଲେ ଖବର ଦେବ । ଆମ ପାଖରେ ଆମ କାର୍ ରେଡି ଅଛି । ଯୁଆଡେ ଚାହିଁବ ଆମେ ଚମ୍ପଟ ମାରିବ ।

ଗଜାନନ : ଆଚ୍ଛା ଟଙ୍କାଟା ମିଳିଯିବ ତ ?

ଯୋଗେଶ : ଅଲବତ୍ ମିଳିବ । ଏ ଯୋଗେଶ ଦିମାକ ଲଗାଇବ ଆଉ ଆପନ କାମ କରିଚାଲିବ । ବାସ୍ ରୂପେୟା ଆସିଯିବ - ଠନ୍ - ଠନ୍ - ଠନ୍ । ପଚିଶ୍ ଲାଖ୍ । ହାଃ ହାଃ ହାଃ.....।

(ଆଲୋକ କମି କମି ଅନ୍ଧାର ହୁଏ)





Digitized by PPRACHIN, SOA

# ପଞ୍ଚମ ଦୃଶ୍ୟ

(ସନାତନ ଚୌଧୁରୀଙ୍କର ଘର)

ସୀମାଦ୍ରୀ : ପଚିଶ ଲକ୍ଷ... ପଚିଶ ଲକ୍ଷ... । ଭାବୁଚି ଟଙ୍କାଗୁଡାକ ଗଛରେ ଫଳୁଚି । କହୁ କହୁ ବଢେଇଦେବୁ ।

ଅଳକା : ମୁଁ ଭାବୁଚି ପୋଲିସ୍ ପାଖରେ ରିପୋର୍ଟ କରିଦେବାଟା ଉଚିତ୍ ହବ ।

ସୀମାଦ୍ରୀ : ସେ ସଫା ସଫା ଶୁଣେଇ ଦେଇଚି - କଥାଟା ପୋଲିସ୍ କାନକୁ ନେଲେ ବାପାଙ୍କୁ ସଫା କରିଦେବ ।

ଶେଷାଦ୍ରୀ : ସବୁ କ'ଣ ସେ hard cash ନେବ ।

ସୀମାଦ୍ରୀ : ଆଉ କ'ଣ ଚେକ୍‌ରେ ନିଅନ୍ତା । ଆଚ୍ଛା ତୋ ପାଖରେ ମାନେ ତୋ ଏକାଉଣ୍ଟରେ କେତେ ଖଣ୍ଡେ ଅଛି କହିଲୁ ।

ଶେଷାଦ୍ରୀ : ଦୁଇଦିନ ତଳେ ଗୋଟିଏ ସପ୍ଲାୟରକୁ ତିରିଶ ଲକ୍ଷ ଟଙ୍କାର ଚେକ୍ ଦେଇଚି । ଆଉ କେତେ ହେବ, ହେଇ ହେଇ ଦୁଇରୁ ତିନି ଖଣ୍ଡେ ପଡିଥିବ ।

ସୀମାଦ୍ରୀ : ମୁଁ ବି କାଲି ମୋ ଫ୍ୟାକ୍ଟ୍ରି ଫାଇନାନ୍ସିଆଲ୍ ମ୍ୟାନେଜର ସହିତ ବସି review କରିଥିଲି । ଖୁବ୍ ବେଶୀ ତିନି କି ଚାରି ଲକ୍ଷ ହେବ ।

ଅଳକା : ତା'ହେଲେ କ'ଣ କରିବ ବୋଲି ଭାବୁଚ ?

ସୀମାଦ୍ରୀ : ଲୋକଟାର କଥାବାର୍ତ୍ତାରୁ ଯାହା ଜଣାପଡୁଚି ସେତେଟା ରଫିୟାନ୍ ନୁହେଁ । ଭାବୁଚି ତାକୁ କିଛି ଟାଇମ୍ ମାଗିଲେ consider କରିପାରେ ।

ଶେଷାଦ୍ରୀ : ସେଇଟା best ହବ ଭାଇ, ମୋର ବିଶ୍ୱାସ ତମେ ପାରିବ ।

ସୀମାଦ୍ରୀ : ପାରିବି କି ନପାରିବି ସବୁ ତା ଉପରେ depend କରେ । ଆମକୁ କିନ୍ତୁ ସବୁ ଟଙ୍କା କୋଉଠୁ ନା କୋଉଠୁ ଆଣି ପାଖରେ ରଖିବାକୁ



Digitized by PPRACHIN, SOA

ପଡିବ। **(ଏହି ସମୟରେ ସୀମାଦ୍ରୀ ମୋବାଇଲ୍‌କୁ ରିଙ୍ଗ୍ ଆସେ)** ଏଇଟା - ତାରି ଫୋନ୍ ବୋଧେ । କେତେ ସିମ୍ ଚେଞ୍ଜ୍ କରି ଫୋନ୍ କରୁଚି କେଜାଣି । ହାଲୋ...

**(ଗଜାନନ ଜୋନ୍‌ରେ ଆଲୋକ)**

ଗଜାନନ : ହୁଁ -ସୀମାଦ୍ରୀ ବାବୁ ଦୁଇଭାଇ କଥା ହେଇ କ'ଣ ଠିକ୍ କଲେ ?

ସୀମାଦ୍ରୀ : ଠିକ୍ ଆଉ କ'ଣ କରିବୁ, ଆମ ବାପାଙ୍କ ଜୀବନ ମରଣ ସମସ୍ୟା । ତାଙ୍କ ଦୁର୍ଦ୍ଦଶା ଆମେ ସହିପାରିବୁନି । ଆମେ ଆପଣଙ୍କ ସର୍ତ୍ତରେ ରାଜି ।

ଗଜାନନ : ସାବାସ୍, ମୁଁ ଜାଣିଚି ଆପଣମାନେ ରାଜି ହୋଇଯିବେ । କାଲି ତା'ହେଲେ ଟଙ୍କାଟା ମିଳିଯିବ ।

ସୀମାଦ୍ରୀ : କାଲି, କାଲି ଭିତରେ ଏତେଗୁଡାଏ ଟଙ୍କା - impossible, ଆପଣ ତ ଚେକ୍‌ରେ ଟଙ୍କା ନେବେ ନି । ଆମକୁ ଆଉ ଟାଇମ୍ ଦିଅନ୍ତୁ ।

ଗଜାନନ : ଟାଇମ୍ ଦେଇ ମୋ ବେକକୁ ଫାଶୀ ଦଉଡି ଆଣିବି । ମୋତେ ଆପଣ କ'ଣ ଭାବୁଛନ୍ତି ... ଗୋଟେ ବୋକା ?

ସୀମାଦ୍ରୀ : ନା' ନା' ସେମିତି କାହିଁକି କହୁଛନ୍ତି, ମୁଁ ଚାହୁଁଛି ଆମକୁ ଚାରି ପାଞ୍ଚ ଦିନ ସମୟ ଦିଅନ୍ତୁ, ଟଙ୍କାଟା ଏକାବେଳେକେ ଦେଇ ବାପାଙ୍କୁ ମୁକୁଳେଇବୁ ।

ଗଜାନନ : ନା' ନା' ଚାରି ପାଞ୍ଚ ଦିନ ନୁହେଁ, ଅତିବେଶୀରେ ଚବିଶ ଘଣ୍ଟା - ତା ଠାରୁ ଗୋଟେ ମିନିଟ୍ ବି ଅଧିକା ନୁହେଁ ।

ସୀମାଦ୍ରୀ : ଦେଖନ୍ତୁ ଆମକୁ ବିଶ୍ୱାସ କରନ୍ତୁ, ଆମେ କେବେବି ପୋଲିସ୍ କିମ୍ବା ଅନ୍ୟକାହାକୁ ଏକଥା ଜଣାଇବୁ ନାହିଁ ।

ଗଜାନନ : ଠିକ୍ ଅଛି, ମୁଁ 48 hours time ଦେଲି - ମାନେ କାଲି ଛାଡି ପରଦିନ ରାତିରେ ମୁଁ ଫୋନ୍ କରିବି । ତା'ପରେ ଯାହା ହେବା କଥା ହବ, ମୋତେ ଆଉ ଦୋଷ ଦେବେନି । ଓ.କେ ?



Digitized by PPRACHIN, SOA

(ଗଜାନନ ଫୋନ୍ କାଟିଦିଏ ଓ ଗଜାନନ ଜୋନ୍‌ରୁ ଧିରେ ଧିରେ ଆଲୋକ ଲିଭିଯାଏ । ଅନ୍ୟପଟ ସନାତନ ଚୌଧୁରୀଙ୍କ ଜୋନ୍‌ରେ ଆଲୋକ ଥାଏ)

ସୀମାଦ୍ରୀ : ହାଲୋ.... ହାଲୋ....

ଶେଷାଦ୍ରୀ : ପୁଣି କାଲିଦେଲା ନା ?

ସୀମାଦ୍ରୀ : ହଁ, ତା next phone ଆସିବା ଆଗରୁ ଆମ ହାତରେ ୪୮ ଘଣ୍ଟା ଅଛି । ମାନେ ଆମ ହାତରେ ମାତ୍ର ଦୁଇଦିନ ।

ଅଳକା : ଯା'ହେଉ କିଛି ତ ସମୟ ମିଳିଗଲା । ଦୁଇ ଭାଇ ମିଶି ଠିକ୍ କର ଟଙ୍କାଟା କୋଉଠୁ ଆସିବ ।

ସୀମାଦ୍ରୀ : ଆସିବ ମାନେ - ଉଭୟଙ୍କୁ fifty fifty ଯୋଗାଡ କରିବାକୁ ହେବ ।

ଶେଷାଦ୍ରୀ : ଏତେଗୁଡାଏ ଟଙ୍କା - ମୋତେ ତ କିଛି ବାଟ ଦେଖାଯାଉନି ।

ସୀମାଦ୍ରୀ : ଯା' ରାତିଯାକ ଚିନ୍ତା କର । କୋଉ source ରୁ ଯୋଗାଡ କରିହେବ । ମୁଁ ଭାବୁଚି ଏଇ ଦୁଇଦିନ ପରେ ଯାହା ଫୋନ୍ ଆସିବ ଅଳକା ଉଠାଇବ - ଆମେ ଦୁଇଭାଇ ଉଠାଇବାନି ।

ଅଳକା : ମୁଁ ଉଠାଇଲେ କ'ଣ କହିବି ? ମୁଁ ଉଠାଇ ପାରିବିନି ।

ସୀମାଦ୍ରୀ : ଆରେ କାହିଁକି ବ୍ୟସ୍ତ ହେଉଚ ? ତମେ ଫୋନ୍‌ରେ କଥା ହେଲାବେଳେ ଆମେ ବି ଏଇଠି ଥିବୁ । ଆମେ ଯାହା ବି instruction ଦେବୁ ସେୟାହିଁ କହିବ ।

ଅଳକା : ଶୁଣ - ତମେ ଯାହା ବି କର - ମୋ କଥା ମାନି ପୋଲିସକୁ ଆଗ ଖବର ଦିଅ । Law & order situation କୁ ହାତରେ ନିଅନି ।

ସୀମାଦ୍ରୀ : ସେସବୁ ବିଷୟରେ ତମେ ମୁଣ୍ଡ ପୁରାଅନି । ପୋଲିସକୁ ଖବର ଦେବାର ସମୟ ଆସିନି ।

ଶେଷାଦ୍ରୀ : ଠିକ୍ କଥା । ଏଥିରେ ଫ୍ୟାମିଲି ଇମେଜ୍‌ରେ ଆଞ୍ଚ ଆସିବ ।

ସୀମାଦ୍ରୀ : ଚାଲ୍ ରାତି ଅନେକ ହେଲାଣି, ରେଷ୍ଟ ନେବା । ହଁ ଶୁଣ, ସେ ମୋ ମୋବାଇଲକୁ ଫୋନ୍ କଲାଣି ମାନେ ଆମ ସମସ୍ତଙ୍କର ନମ୍ବର



Digitized by PPRACHIN, SOA

ତା'ପାଖରେ ଥିବ । ତେଣୁ ସମସ୍ତେ ରାତାରାତି ସିମ୍‌କୁ change କରିଦେବା । Ok.

(ସୀମାଦ୍ରୀ ଚାଲିଯାଆନ୍ତି)

(ଅଳକା ଶେଷାଦ୍ରୀକୁ କୁହେ)

ଅଳକା : ଶେଷ ମୁଁ ଭାବୁଛି ଆମ ଘରକୁ ଏ ଯୋଉ ଦଶା ପଡିଛି ତା'ପାଇଁ କିଛି ପୂଜାପାଠ କରିବାକୁ ହେବ । ମୋର ବିଶ୍ୱାସ ରୁଦ୍ରାଭିଷେକ କଲେ ବାପାଙ୍କ ଜୀବନ ଉପରେ କୌଣସି ଆଞ୍ଚ୍ ଆସିବନି ।

ଶେଷ : ଠିକ୍ କଥା । ତା'ହେଲେ ଆମ କୁଳ ପୁରୋହିତ ରଥଶର୍ମାଙ୍କୁ କାଲି ଆସିବାକୁ ଖବର ଦେଇଦଉଛି ।

ଅଳକା ହଁ ଯେତେ ଜଲଦି କରିପାରିବା ସେତିକି ଭଲ । ଚାଲ...

(ଅଳକା ଶେଷ ଚାଲିଯାଆନ୍ତି)

(ଅନ୍ଧାର)





Digitized by PPRACHIN, SOA

## ଷଷ୍ଠ ଦୃଶ୍ୟ

(ସନାତନଙ୍କ ବୈଠକ ଗୃହ । ଅଳକା - ଘର ଭିତରୁ ହାତରେ ପୂଜାଥାଳୀ ଧରି ବାହାରକୁ ଯାଆନ୍ତି । ପରେ ପରେ ଫେରି ଆସି ଘରର ଭିନ୍ନଭିନ୍ନ କୋଣରେ ଧୂପ ବୁଲାଇବା ଅବସ୍ଥାରେ ବାହାରୁ ଆସନ୍ତି ଶେଷାଦ୍ରୀ)

ଶେଷ : ଭାଉଜ, ରଥଶର୍ମାଙ୍କୁ ସାଙ୍ଗରେ ନେଇଆସିଛି ।

(ରଥଶର୍ମାଙ୍କ ପ୍ରବେଶ, ତାଙ୍କୁ ଅଳକା ଯାଇ ଭୂମିଷ୍ଠ ପ୍ରଣାମ କରେ । ରଥଶର୍ମା ଶ୍ଳୋକ ବୋଲି ଆଶୀର୍ବାଦ କରନ୍ତି)

ରଥ : ଗତକାଲି ତୁମ ଘରେ ପଦାର୍ପଣ କରିବାକୁ ଶତପ୍ରୟାସ କରି ସୁଦ୍ଧା ପରାସ୍ତ ହେବାକୁ ପଡିଲା ମା । ଜଣେ ଜଜମାନର କାଳସର୍ପ ଦୋଷ ବିନାଶାର୍ଥେ ଦିନ ତମାମ ସମୟ ବିନିଯୋଗ କରିବାକୁ ପଡିଲା । ଏ ରଥଶର୍ମାକୁ କି କାରଣାର୍ଥେ ଉପସ୍ଥିତ ହେବାକୁ ନିର୍ଦ୍ଦେଶ ଦିଆଗଲା ଲକ୍ଷ୍ମୀ ମାଆ କଣ୍ଠରୁ ନିସୃତ ହେଲେ ଏ ବ୍ରାହ୍ମଣ ଉପକୃତ ହୁଅନ୍ତା ।

ଅଳକା : ଆମେ ଗୋଟେ ରୁଦ୍ରାଭିଷେକ କରିବାକୁ ମାନସିକ କରିଛୁ । ଆପଣ ଫ୍ରି ଅଛନ୍ତି କି ନାହିଁ - ଡକାଇଥିଲି ।

ରଥ : ରୁଦ୍ରାଭିଷେକ ! ଉତ୍ତମ, ଅତି ଉତ୍ତମ ମା । ଯେଉଁ ଆଶା ପୁରଣାର୍ଥେ ମାନସିକ କରିଥାନ୍ତୁ ନା କାହିଁକି ନିଶ୍ଚିତ ଫଳପ୍ରଦ ହେବ । ଏହା ଚନ୍ଦ୍ର ସୂର୍ଯ୍ୟ ଉଦୟ ଅସ୍ତ ହେଉଥିବା ଭଳି ସତ୍ୟ ଅଟେ । କସ୍ମିନ କାଳେ କେହି ଅସୀକାର କରିପାରିବେ ନାହିଁ । ତେବେ କେଉଁ ନିର୍ଘଣ୍ଟ ମନ୍ଦିରରେ ନା' ସ୍ୱ ଗୃହରେ ଲିଙ୍ଗ ସ୍ଥାପନ ପୂର୍ବକ କରିବାକୁ ସଂକଳ୍ପ କରିଛନ୍ତି ପ୍ରକାଶ କରନ୍ତୁ । ବିଧି ବ୍ୟବସ୍ଥାର ପରାମର୍ଶ ଦେଇଦେବା ।



Digitized by PPRACHIN, SOA

ଶେଷାଦ୍ରୀ : ବଟକେଶ୍ୱର ମନ୍ଦିରରେ କରିବାକୁ ଭାବିଛୁ । ଆସନ୍ତା ସୋମବାର ଦିନ କରାଯିବ ।

ରଥ : କାର୍ଯ୍ୟ ନିର୍ଘଣ୍ଟ ତଥା ଉପାସନା ସ୍ଥଳି ପୂର୍ବ ନିର୍ଘଣ୍ଟ ହୋଇସାରିଛି । ଉତ୍ତମ ଅତି ଉତ୍ତମ ମା । ତେବେ ଅତି ପ୍ରାତଃକାଳରୁ ସେଠାରେ ଉପସ୍ଥିତ ହୋଇ ଶୁଭକାର୍ଯ୍ୟଟି ପ୍ରାରମ୍ଭ କରିଦେବା ସଂକଳ୍ପକାରୀଙ୍କ ପାଇଁ ମଙ୍ଗଳ ଓ ଶୁଭପ୍ରଦ ।

ଶେଷ : କେତେ ସକାଳୁ ଆପଣ ବାହାରିପାରିବେ କହିଥାନ୍ତୁ । ଆମ ଗାଡି ଯାଇ ଆପଣଙ୍କ ଘରୁ ନେଇଆସିବ ।

ରଥ : ଉତ୍ତମ, ଅତି ଉତ୍ତମ ବ୍ୟବସ୍ଥା... ହେ ହେ ମୋର ବାପା ପ୍ରାତଃ ନିତ୍ୟକର୍ମ ପ୍ରାତଃ ସଂଧ୍ୟା ଇତ୍ୟାଦି ଯାବତୀୟ କର୍ମ ପ୍ରତ୍ୟହ ରାତ୍ରର ଅନ୍ତିମ ପ୍ରହର ପୂର୍ବରୁ ଶେଷ ହୋଇଥାଏ । ମୋ କୁଟୀରରୁ ପ୍ରଭାତ ପାଞ୍ଚ ଘଟିକା ଅମୃତ ବେଳାରେ ଯାତ୍ରା ଅନୁକୂଳ କଲେ ଆମ୍ଭେ ବଟକେଶ୍ୱର ପୀଠରେ ଉଚିତ୍ ସମୟେ ଉପସ୍ଥିତ ହୋଇପାରନ୍ତେ । କାରଣ ସେ ମନ୍ଦିର ଶୈଳ ଶିଖରରେ ଦଣ୍ଡାୟମାନ । ଅନ୍ୟୂନ ପଦବ୍ରଜରେ ପଞ୍ଚଶତ ପାବଚ ଶ୍ରେଣୀ ଆରୋହଣ କରିବାକୁ ପଡିବ ।

ଅଳକା : ଠିକ୍ ଅଛି ପାଞ୍ଚଟା ପୂର୍ବରୁ କାର ଯାଇ ଆପଣଙ୍କୁ ନେଇଆସିବ ।

ରଥ : ଉତ୍ତମ । ତେବେ ଯାନ ପ୍ରେରଣ ପୂର୍ବରୁ ମୋ ଘରକୁ ଟିକିଏ ଶୂନ୍ୟ ମାର୍ଗରେ ସନ୍ଦେଶ ପ୍ରେରଣ କରିଦେବେ ମାଆ ।

ଶେଷ : ଶୂନ୍ୟ ମାର୍ଗରେ ସନ୍ଦେଶ ପ୍ରେରଣ କରିଦେବୁ ମାନେ ?

ଅଳକା : ଟେଲିଫୋନ୍ କଥା କହୁଛନ୍ତି । ଆପଣ ଟେଲିଫୋନ୍ ନେଇଛନ୍ତି ?

ରଥ : (ଟେଲିଫୋନ୍‌କୁ ଦେଖାଇ) ଏ ସଦୃଶ ଭୂମୀ ସ୍ଥାପିତ ଯନ୍ତ୍ର ନୁହେଁ ମାଆ । ଜଣେ ଜଜମାନ ସନ୍ତୁଷ୍ଟ ହୋଇ ଏକ ଶୂନ୍ୟବାର୍ତ୍ତା ପ୍ରେରକ ଯନ୍ତ୍ର ପ୍ରଦାନ କରିଛନ୍ତି । ଯାହା ଦ୍ୱାରା ଆପଣ ଅକ୍ଳେଶରେ ଆପଣଙ୍କ କଣ୍ଠ ନିସୃତ ବାର୍ତ୍ତାକୁ ନିକ୍ଷେପ କରିପାରିବେ । ସଂକ୍ଷେପରେ ଯାହାକୁ



Digitized by PPRACHIN, SOA

ଭ୍ରାଶୁବା ଯନ୍ତ୍ର କୁହାଯାଇପାରେ ।

ଶେଷ   ଭ୍ରାଶୁବା ଯନ୍ତ୍ର ମାନେ ?

ରଥ   :   ଓଃ ହୋ ବୁଝିପାରୁନାହାଁନ୍ତି । ଭ୍ରା- ଅର୍ଥାତ ଭ୍ରାମ୍ୟମାଣ, ଶୁ- ଅର୍ଥାତ ଶୁନ୍ୟମାର୍ଗ, ବା- ଅର୍ଥାତ ବାର୍ତ୍ତାଳାପ ଯନ୍ତ୍ର । ଭ୍ରାମ୍ୟମାଣ ଶୁନ୍ୟମାର୍ଗ ବାର୍ତ୍ତାଳାପ ଯନ୍ତ୍ର ଭ୍ରାଶୁବା ଯନ୍ତ୍ର ।

ଶେଷ   :   ଆପଣ ତା'ହେଲେ ମୋବାଇଲ୍ ଧରିଲେଣି ।

ରଥା   :   ହଁ ବାବା, ସେ ଯନ୍ତ୍ର କଥା କହୁଛି । ଯାହାକୁ ଏବେ ପଥପ୍ରାନ୍ତେ ଆବାଳ ବୃଦ୍ଧ ବନିତା ଚିବୁକ ସନ୍ନିକଟେ ହସ୍ତ ଅର୍ପଣ ପୂର୍ବକ ବାର୍ତ୍ତାଳାପ ଚଳାଇଛନ୍ତି ।

ଶେଷ   :   ଆପଣ ତା'ହେଲେ ଆପଣଙ୍କ ମୋବାଇଲ୍ ନମ୍ବରରୁ ଆମକୁ ରିଙ୍ଗ୍ କରିଦିଅନ୍ତୁ, ଆମେ ଆପଣଙ୍କ ନମ୍ବର ରଖିନେବୁ ।

ରଥ   :   ନା ବାପା - ସେ କଥା ଏବେ ସମ୍ଭବ ନୁହେଁ । ସେ ଯନ୍ତ୍ରଟିକୁ ଆମ୍ଭ ପତିପ୍ରାଣା ସହଧର୍ମିଣୀ ଶ୍ରୀମତୀ ସୁଲକ୍ଷଣା ଦେବୀ ଅହୋରାତ୍ର ନିଜ ପାଶେ ପାଶେ ରଖିବାକୁ ଅଧିକ ପ୍ରିୟ ମଣିଛନ୍ତି । କାରଣ ସେ - ଶଶୁରାଳୟଗତା ଆମ୍ଭର ୪ କନ୍ୟାରନ୍ ତଥା ନାତି ନାତୁଣୀଙ୍କ ଦୈନନ୍ଦିନ କୁଶଳ ସମାଚାର ଅବଗତ ହେବାପାଇଁ ସଦା ବ୍ୟାକୁଳ । ଏବେ ସେଇ ଯନ୍ତ୍ରଟି ସୁବର୍ଣ୍ଣଜରି ଖଚିତ ଏକ ସୁକ୍ଷ୍ମ ରେଶମୀ ବସ୍ତ୍ର ମୁଣାରେ ସ୍ଥାପିତ ହୋଇ ଦୋଳାୟମାନ ଅବସ୍ଥାରେ ଆମ ଅର୍ଦ୍ଧାଙ୍ଗିନୀଙ୍କ ଗଳାର ହାର ସଦୃଶ ଶୋଭାବର୍ଦ୍ଧନ କରୁଥିବ ।

ଅଳକା   :   ଠିକ୍ ଅଛି ଆଁପଣ ପୂଜାରେ କ'ଣ ଲାଗିବ ତାଲିକା କରିଦିଅନ୍ତୁ ଆଉ ମୋବାଇଲ୍ ନମ୍ବର ଦେଇଦିଅନ୍ତୁ ।

ରଥ   :   ତାଲିକା ଜିହ୍ବାଗ୍ରେ ସଦା ପ୍ରସ୍ତୁତ ମା । ଆପଣ ଏକ ଶ୍ୱେତ କାଗଜ ଫର୍ଦ୍ଦ ସହିତ୍ ରକ୍ତବର୍ଣ୍ଣର ସ୍ୟାହି ଥିବା ଝରଲେଖନି ନେଇ ଆସନ୍ତୁ । ହଁ ଆମ୍ଭ ଭାଶୁବାପ୍ରେ ଯନ୍ତ୍ର ସଂଖ୍ୟା ହେଉଛି ନ ଖର୍ବ ଆଠ ଶଙ୍ଖ ଛ



Digitized by PPRACHIN, SOA

କୋଟି ଦୁଇ ନିୟୁତ ତିନି ଲକ୍ଷ ଚାରି ଆୟୁତ ପଞ୍ଚ ସହସ୍ର ଏକ ଶତ ଅଣାନବେ ।

ଅଳକା : (କିଛି ବୁଝି ନପାରି) ଆପଣ ବର୍ଗ ଭିତର ଅଗଣାକୁ ଆସନ୍ତୁ ସେଇଠି ପୂଜା ତାଲିକା ଆଉ ମୋବାଇଲ ନମ୍ବର ଲେଖିଦେବେ ।

ରଥ : ହଁ ମାଆ, ଉତ୍ତମ ପ୍ରସ୍ତାବ । ଏ ସ୍ଥାନର ବାତାନୁକୂଳ ଯନ୍ତ୍ର ପେଟିକା ସହ ବିଦ୍ୟୁତ୍ ଚାଳିତ ସୁଦର୍ଶନ ଚକ୍ରବତ୍ ପଙ୍ଖାର ପବନ ଆମ୍ଭ ଗାତ୍ରରେ ହିମ କଂପନ ସୃଷ୍ଟି କରିଦେଲାଣି । ଅଗଣାର ପ୍ରକୃତିଦତ୍ତ ମୁକ୍ତ ବାୟୁ ସାସ୍ଥ୍ୟ ପ୍ରତି ଅତ୍ୟନ୍ତ ପ୍ରୀତିପଦ ଓ ଆରାମଦାୟକ । ସେଠାରେ ଉପବେସନ ପୂର୍ବକ ତାଲିକା ତୟାର ସୁଖଦାୟକ ହେବ । (ଅଳକା ଭିତରକୁ ଯାଆନ୍ତି) ଆଚ୍ଛା - ଗୃହକର୍ତ୍ତା ସନାତନ ମହାଭାଗ କାହିଁ ଦୃଶ୍ୟମାନ ହେଉନାହାଁନ୍ତି ।

ଶେଷ : ବାପା କିଛିଦିନ ପାଇଁ ବାହାରକୁ ଯାଇଛନ୍ତି ।

ରଥ ହଁ । କିଛିଦିନ ପୂର୍ବେ ତାଙ୍କର ତୀର୍ଥ ଭ୍ରମଣ ଅଭିଳାଷ କଥା ପ୍ରକାଶ କରୁଥିଲେ । ସେ ଉଦ୍ଦେଶ୍ୟେ ଯାତ୍ରା କରିଥିବେ ଅବା ।

(ଭିତରକୁ ଚାଲିଯାଆନ୍ତି, ତା ପଛେ ପଛେ ଶେଷ ଚାଲିଯାଆନ୍ତି)

(ଅନ୍ଧାର)





Digitized by PPRACHIN, SOA

## ସପ୍ତମ ଦୃଶ୍ୟ

(ପୂର୍ବ ବର୍ଣ୍ଣିତ ସେ କୋଠା ଘରର ଛାତ, ଯେଉଁଠି ରହି ଗଜ ଫୋନ୍ କରୁଚି । ତା ଫୋନ୍ ରିଙ୍ଗ୍ ପ୍ରତିଧ୍ୱନିତ ହେଉଛି ସନାତନଙ୍କ ବୈଠକ ଗୃହରେ । ସୀମାଦ୍ରୀ, ଅଳକା ଓ ଶେଷାଦ୍ରୀ ଉପସ୍ଥିତ ଅଛନ୍ତି । ଦୁଇଟିଯାକ ଅଭିନୟାଞ୍ଚଳ ଆଲୋକିତ ହେଉଚି, ଫୋନ୍ ରିଂ କଟିବା ସହିତ ଆଲୋକ ବି କମିଯାଉଛି । ଦୁଇ ଥର ଫୋନ୍ ରିଂ କଟିଯିବା ପରେ ତୃତୀୟ ରିଂ ବେଳକୁ ସୀମାଦ୍ରୀଙ୍କ ଇଙ୍ଗିତ ସତ୍ତ୍ୱେ ବଡ ଦ୍ୱିଧାର ସହ ଅଳକା ଫୋନ୍ ଉଠାଏ ।)

ଅଳକା ହାଲୋ...।

ଗଜାନନ : ସୀମାଦ୍ରୀ ବାବୁଙ୍କୁ ଫୋନ୍ ଦିଅନ୍ତୁ ।

ଅଳକା : ସେ ତ ଘରେ ନାହାଁନ୍ତି ।

ଗଜାନନ : ଘରେ ନାହାଁନ୍ତି - ଏଇ ରାତିଟାରେ ଘରେ କେମିତି ନାହାଁନ୍ତି ।

ଅଳକା ଆପଣ କିଏ କହୁଛନ୍ତି ?

ଗଜାନନ : ମୁଁ କିଏ କହୁଛି ଆପଣ ଜାଣିବା ଦରକାର ନାହିଁ । ତାଙ୍କ ସାନ ଭାଇଙ୍କୁ ଫୋନ୍ ଦିଅନ୍ତୁ ।

ଅଳକା : ସେ ବି ନାହାଁନ୍ତି । ତାଙ୍କ ଫ୍ୟାକ୍ଟ୍ରିରେ କ'ଣ ଗୋଟେ ବ୍ରେକ୍‌ଡାଉନ୍ ହୋଇଛି ଯେ ଦୁଇଭାଇ ଯାକ ଦୁଇଦିନ ହେଲା ସେଇଠି ଅଛନ୍ତି । କ'ଣ ଗୋଟେ ମେଜର୍ ପ୍ରୋବ୍ଲେମ୍ ହୋଇଛି ।

ଗଜାନନ · ସେ ସବୁ ବାହାନା । ତାଙ୍କୁ ମୁଁ ଦୁଇଦିନ ଟାଇମ୍ ଦେଇଥିଲି । କେହି ଫୋନ୍ ଉଠାଉ ନାହାଁନ୍ତି । ଆଜି fifth day ସେମାନଙ୍କୁ କହିଦେବେ ଏହାର ପରିଣାମ କିଛି ଭଲ ହେବନି ।



Digitized by PPRACHIN, SOA

ଅଳକା : ଶୁଣନ୍ତୁ - ଆପଣ କିଏ କହୁଛନ୍ତି ନାଁଟା ତ କୁହନ୍ତୁ । ସେମାନେ ଆସିଲେ କହିବି, ଆପଣଙ୍କ ସହିତ କଥା ହେବେ ।

ଗଜାନନ : ହେଇ ଅଳକା ଦେବୀ ! ଆପଣ ବି ମୋ ପାଖରେ ଚାଲାକି ଦେଖେଇବା ଆରମ୍ଭ କଲେଣି । ସେଦିନ ଆପଣଙ୍କ ଶଶୁରଙ୍କ matter ନେଇ କଥା ହେଲାବେଳକୁ ଆପଣ present ଥିଲେ ନା... ?

ଅଳକା : ହଁ present ଥିଲି, ହେଲେ ଆପଣଙ୍କ ସହିତ କଥା ହେଇନଥିଲି - ଆପଣଙ୍କ ଫୋନ୍ ସହିତ ପରିଚିତ ହୋଇନଥିଲି ।

ଗଜାନନ : ଥାଉ । ସଫେଇ ଦେବା ଦରକାର ନାହିଁ । ଦୁଇଭାଇଙ୍କୁ କହିଦେବେ ମୋ ଲୋକ ପାଖରେ ରହି ସବୁ ୱାଚ୍ କରୁଛି । ବେଶୀ ଚାଲାକି ଦେଖାଇଲେ Last step ନେବାକୁ ମୋତେ ମୁହୂର୍ତ୍ତେ ବି ସମୟ ଲାଗିବନି ।

ଅଳକା : ଶୁଣନ୍ତୁ - ସେମାନେ କହିଯାଇଛନ୍ତି ଯେ ଆପଣ ତାଙ୍କୁ ଆସନ୍ତାକାଲି contact କରନ୍ତୁ - ଆପଣଙ୍କ ଡିମାଣ୍ଡ ନେଇ କଥାବାର୍ତ୍ତା କରିବେ ।

ଗଜାନନ : ତା' ମାନେ ମାଲ୍‌ଟା ଯୋଗାଡ ହେଇଯାଇଛି ?

ଅଳକା : ସେଇ କାମରେ ତ ଦୁଇଭାଇ ଲାଗିଥିଲେ - ହଠାତ୍ ଫ୍ୟାକ୍ଟ୍ରି ପ୍ରୋବ୍ଲେମ୍ ଆରମ୍ଭ ହେଇଗଲା ।

ଗଜାନନ : ଠିକ୍ ଅଛି । କାଲି ଠିକ୍ ଏଇ ସମୟରେ ଅପେକ୍ଷା କରିବାକୁ କହିବେ ।

**(ଗଜ ଜୋନ୍‌ରୁ ଆଲୋକ କଟେ କିନ୍ତୁ ସୀମାଦ୍ରୀ ଜୋନ୍‌ରେ ଆଲୋକ ଥାଏ)**

(ଅନ୍ଧାର)

ଅଳକା : ଓଃ ହୋ ଭଗବାନ ! ମୋ ଦେହରୁ ଝାଳ ବାହାରି ପଡିଲା ।



Digitized by PPRACHIN, SOA

ଶେଷାଦ୍ରୀ : ଭାଇ ଯେମିତି କହିଥିଲେ ତୁମେ exactly ସେଇ ଢଙ୍ଗରେ କଥାବାର୍ତ୍ତା କଲ - Good ଯା ହେଉ ଆଉ ଗୋଟେ ଦିନ ସମୟ ମିଳିଗଲା ।

ସୀମାଦ୍ରୀ : ମିଳିଗଲା ଯେ, କିନ୍ତୁ ତୁ ମୋତେ ସାତ ଲକ୍ଷ ଟଙ୍କା ଧରେଇଚୁ । ବାକିଟା କ'ଣ ମୁଁ ଏକା ଦେବି ?

ଶେଷାଦ୍ରୀ : ତମେ ମୋତେ ଅଧା ଟଙ୍କା ଦବାକୁ କହୁଛ ଯେ - ମୋ ଫ୍ୟାକ୍ଟ୍ରିର ଅବସ୍ଥା ଯାହା ମୁଁ କ'ଣ ଦେଇପାରିବି ।

ସୀମାଦ୍ରୀ : ସେ କଥା ହେଇପାରିବ ନି । ଦି ଜଣ ଯାକର share ଯେମିତି responsibility ସେମିତି ।

ଶେଷାଦ୍ରୀ : ଫ୍ୟାକ୍ଟ୍ରି ଦେଲା ବେଳକୁ ବାପା ତୁମକୁ ଯାହା ଦେଇଛନ୍ତି ମୋତେ କ'ଣ ସେୟା ଦେଇଛନ୍ତି । ତୁମ ଫ୍ୟାକ୍ଟ୍ରିର asset value ମୋ ଅପେକ୍ଷା ଯଥେଷ୍ଟ ଅଧିକ - ସେ କଥା କାହିଁକି ଭୁଲିଯାଉଚ ଭାଇ ।

ସୀମାଦ୍ରୀ : Asset value ତୋ ଆଖିରେ ପଡିଯାଉଚି । liability value କାହିଁକି ଭୁଲିଯାଉଚୁ । last year ବାଲାନ୍ସ ସିଟ୍ ଦେଖିବୁ ତ outstanding dues ର ପରିମାଣଟା କେତେ ଥିଲା ।

ଅଳକା : ଆଚ୍ଛା, ଏସବୁ କ'ଣ ଚାଲିଚି କହିଲ । ପରସ୍ପର ଭିତରେ ଏଇଟା ଝଗଡା କରିବାର ସମୟ ? ବାପାଙ୍କର କିଛି ଗୋଟେ ଅଘଟଣ ଘଟିଗଲେ ତୁମେମାନେ society ଆଗରେ ମୁହଁ ଦେଖେଇ ପାରିବ ତ ।

(ସୀମାଦ୍ରୀ ଓ ଶେଷାଦ୍ରୀ ପରସ୍ପରକୁ ଚାହିଁ କିଛି ସମୟ ପାଇଁ ନୀରବ ହୋଇଯାଆନ୍ତି)

ଅଳକା : ମୁଁ ଗୋଟେ proposal ଦଉଚି - ତୁମେମାନେ ରାଜି ହେଇଗଲେ ଟଙ୍କାଟା ଯୋଗାଡ ହେଇଯିବ ।

ସୀମାଦ୍ରୀ : ମାନେ ?



Digitized by PPRACHIN, SOA

ଅଳକା : ଏଇ ଘରଟା ବାପାଙ୍କ ନାଁରେ ଅଛି । ଏଇଟା ବନ୍ଧା ପକେଇଦେଲେ ୨୫ ଲକ୍ଷରୁ ଅଧିକ ଟଙ୍କା ମିଳିଯାଇପାରିବ ।

ଶେଷାଦ୍ରୀ : ତିନି ହଜାର ବର୍ଗଫୁଟର ଏଇ building, ତା' ସହିତ Garden, lawn ମିଶେଇଲେ ଦଶଗୁଣ୍ଠରୁ ଅଧିକ ଜାଗା । ବାପାଙ୍କ ଘର - ତାଙ୍କ କାମରେ ଲାଗିବ । ସୁନ୍ଦର ଆଇଡିଆ ।

ସୀମାଦ୍ରୀ : ଝିଅର ଭାଉଜ ମିଶି ସମସ୍ୟାର ବଢ଼ିଆ ସମାଧାନ କରିଦେଲ । ଆରେ ବାପା ଥାଉ ଥାଉ ଘରଟା ବନ୍ଧା ପକାଇବା ବା ବିକ୍ରି କରିବାକୁ ଆମେ କିଏ ? ତା'ପରେ କଥାଟା ପ୍ରଘଟ ହେଇଯିବ କି ନାହିଁ ।

ଅଳକା : ତା'ହେଲେ କ'ଣ କରାଯିବ କହୁନ ?

ସୀମାଦ୍ରୀ : ଗୁହ । ମୋତେ ଟିକେ ଭାବିବାକୁ ସମୟ ଦିଅ । (ସମସ୍ତେ କିଛି ସମୟ ନୀରବ ହୋଇଗଲେ) କାଲି ସେ ଫୋନ୍ କରିବ, ତା ମୁଡ ଦେଖି ଭାବୁଚି ଆଉ କିଛି ସମୟ ମାଗିବା । ଯଦି ଜିଦ୍ ଧରେ ତା ହେଲେ ଦେଖିବା -

**(ଧିରେ ଧିରେ ଆଲୋକ କଟିବାକୁ ଗଲାବେଳେ ପୁଣି ଫୋନ୍ ରିଙ୍ଗ୍ ହୁଏ । ପୁଣି ଆଲୋକ ଆସେ । ଶେଷ ଫୋନ୍ ଉଠାଏ)**

ଶେଷାଦ୍ରୀ : (Colour ID ଦେଖି) ଗୋଟେ ନୂଆ ନମ୍ବରରୁ ଭାଇ । ଉଠାଇବି ?

ସୀମାଦ୍ରୀ : ନା, ତୋ ଭାଉଜ ଉଠାଉ । (ଅଳକାକୁ) ସେ ଲୋକ ଯଦି ହେଇଥିବ, କହିବ ଆମେ କେହି ଘରେ ନାହୁଁ ।

**(ଅଳକା ଫୋନ୍ ଉଠାଏ । ଦୁଇଜଣଯାକଙ୍କ ଜୋନ୍ ଆଲୋକିତ ହୁଏ । ଅଲ୍ଲୀ ଫୋନ୍ ଧରିଛି । ପାଖରେ ଅଛି ଗଜ)**

ଅଳକା : ହାଲୋ ।

ଯୋଗେଶ : ହାଲୋ, ମ୍ୟାଡମ, ଏଇଟା ସୀମାଦ୍ରୀ ବାବୁଙ୍କ ଘର ନମ୍ବର ତ ?

ଅଳକା : ହଁ, ଆପଣ କିଏ କହୁଛନ୍ତି ?

ଯୋଗେଶ : ମୋତେ ଆପନ୍ ଚିହ୍ନି ନଥିବେ । ଆପନ୍ ଅଳକା ଦେବୀ କହୁଛନ୍ତି ନା ।



Digitized by PPRACHIN, SOA

ଅଳକା : ହଁ ।

ଯୋଗେଶ : ଆପନ୍‌ଙ୍କ Mr. ସୀମାଦ୍ରୀ ବାବୁ ଯଦି ଅଛନ୍ତି ତାଙ୍କୁ ଦିଅନ୍ତୁ । କହିବେ ତାଙ୍କର ଜନେ ବାଲ୍ୟ ବନ୍ଧୁ କହୁଛନ୍ତି ।

ଅଳକା : (ସୀମାଦ୍ରୀ ବାବୁଙ୍କୁ) ତୁମର କେହି ଜଣେ ପୁରୁଣା ବନ୍ଧୁ କହୁଛନ୍ତି ।

ସୀମାଦ୍ରୀ : ନାଁ ଟା ପଚାର ।

ଅଳକା (ଫୋନ୍‌ରେ) ଆପଣଙ୍କ ନାଁ ଟା କୁହନ୍ତୁ । ଆପଣ ବନ୍ଧୁ ଜାଣିବାକୁ ଚାହୁଁଛନ୍ତି ।

ଯୋଗେଶ : ତାଙ୍କୁ ଦିଅନ୍ତୁ ନା, ସେ ମୋତେ ଚିହ୍ନି ପାରୁଛି କି ନାହିଁ ମୁଁ ଜାନିବାକୁ ଚାହୁଁଛି । ଅନେକ ବର୍ଷ ପରେ କଥା ହେବି ତ । ଦିଅନ୍ତୁ ତାଙ୍କୁ...।

ଅଳକା : ନିଅ ତୁମେ କଥା ହୁଅ ।

ସୀମାଦ୍ରୀ : (ଫୋନ୍ ନେଇ) ହାଲୋ, କିଏ କହୁଛନ୍ତି ?

ଯୋଗେଶ : (ଫୋନ୍‌ରେ ହାତ ଦେଇ ଗଜ ସହିତ କଥା ହୁଏ) ସୀମାଦ୍ରୀ ବାବୁ ଧରିଲେ ।

(ଫୋନ୍) ହାଲୋ...

ସୀମାଦ୍ରୀ : କିଏ କହୁଛନ୍ତି ଆପଣ ?

ଗଜ : (ଫୋନ୍ ନେଇ) ବାଃ, ବେଶ୍ ଚତୁରତାର ସହିତ ମୋତେ ଆପଣ ଆଭଏଡ୍ କରିଚାଲିଛନ୍ତି ସୀମାଦ୍ରୀ ବାବୁ । ମୁଁ ତିନିଦିନ ହେଲା ଲଗଉଛି ଫ୍ୟାକ୍ଟ୍ରି ବ୍ରେକ୍‌ଡାଉନ୍ କହି ମୋତେ ଭଲ ଭୁଡେଇ ଚାଲିଛନ୍ତି । ଏଥିରେ ଆପଣଙ୍କ ଉପରେ ମୋର ଭରସା ତୁଟି ତୁଟି ଚାଲିଛି ।

ସୀମାଦ୍ରୀ : ନା' ଆମକୁ ବିଶ୍ୱାସ କରନ୍ତୁ । ଏବେ ଏବେ ଆମେ ଦି ଭାଇ ଘରେ ପହଞ୍ଚିଲୁ । ଫ୍ୟାକ୍ଟ୍ରି ବି ଠିକ୍ ହେଇଗଲା ।

ଗଜ : ମାଲଟା ଆଜି ତା'ହେଲେ ମିଳିଯିବ ।

ସୀମାଦ୍ରୀ : ହଁ କିଛିଟା ମିଳିଯିବ କିଛିଟା ବାକି ରହିଯିବ ।



Digitized by PPRACHIN, SOA

ଗଜ : ତା'ମାନେ ମୋ ସର୍ତ୍ତ ପୁରଣ କରିବାକୁ ଆପଣମାନେ ଅସମର୍ଥ ।

ସୀମାଦ୍ରୀ : ନା' ନା' ସେମିତି କାହିଁକି କହୁଛନ୍ତି । ବାପା ଆମ ପାଇଁ ସବୁକିଛି । ତାଙ୍କର ଜୀବନ ମରଣ ସମସ୍ୟା । ଆମେ ଆପଣଙ୍କ ସର୍ତ୍ତ ମାନିନେବାକୁ ସ୍ଥିର କରି ଆଗେଇ ଚାଲିଛୁ । ଆମକୁ ଆଉ କିଛିଦିନ ସମୟ ଦିଅନ୍ତୁ । please.

ଗଜ : ନା' ନା' ଆପଣଙ୍କୁ ବିଶ୍ୱାସ କରି ଯଥେଷ୍ଟ ସମୟ ଦେଲିଣି । ଆଉ ନୁହେଁ ଏଥର ମୋ କାମ ମୁଁ କରିନେବି ।

ସୀମାଦ୍ରୀ : ଦେଖ କିଛି ଯୋଗାଡ କରିବାକୁ ବାକି ରହିଯାଇଛି । ତୁମ କଥା ମାନି ଆମେ ପୋଲିସ କିମ୍ବା ଅନ୍ୟ କାହାର ସାହାଯ୍ୟ ନେଉନୁ । ଆମ ଅବସ୍ଥା ଟିକିଏ ବୁଝିବାକୁ ଚେଷ୍ଟା କର ।

ଗଜ : ଥାଉ । ତୁମ ଅବସ୍ଥା ବୁଝୁବୁଝୁ ମୋ ଅବସ୍ଥା ବାର ବାଜିଯିବ । ଆଜି ରାତି ସୁଦ୍ଧା ସମସ୍ତ ଟଙ୍କା ଦେବ - ନହେଲେ କାଲି ସକାଳେ ଦୁଆର ଖୋଲିଲା ବେଳକୁ ଦେଖିବ ତୁମ କୋଟିପତି ବାପାର ମୁଣ୍ଡ ଗଡୁଛି ।

ସୀମାଦ୍ରୀ : ଏଇଟା କ'ଣ ତୁମର ଶେଷ କଥା ।

ଗଜ : Yes. ଶେଷ କଥା ଭାବିପାର ।

ସୀମାଦ୍ରୀ : ସେମିତି କରି ତୁମେ ଆଦୌ ବୁଦ୍ଧିମାନର କାମ କରିବନି ଭାଇ । ତୁମ ପଚିଶ୍ ଲକ୍ଷ ଟଙ୍କା ସିଧା ପାଣିରେ ପଡିବ ।

ଗଜ : ହୁଁ । ସାଧାରଣ ଲୋକଙ୍କ ଅପେକ୍ଷା ଆମର ବୁଦ୍ଧି ଅଧିକ ବୋଲି ଆମେ ଏ ପ୍ରକାର ରିସ୍କ ନେଇ କାମ କରୁ । ଏକଥା ତୁମେ କାହିଁକି ଭୁଲିଯାଉଛ ସୀମାଦ୍ରୀ ବାବୁ ।

ସୀମାଦ୍ରୀ : ହଁ ଜଣେ ୭୬ ବର୍ଷର ବୁଢା ଲୋକକୁ କିଡ୍‌ନାପ୍ କରି ତୁମେ କି ପ୍ରକାର ବୁଦ୍ଧିମାନର କାମ କରିଛ ତା'ର ପରିଚୟ ଆମେ ପାଇସାରିଛୁ । ପୁଣି ତାଙ୍କୁ ହତ୍ୟା କରିବାକୁ ଧମକ ଦେଇଚାଲିଛ ।



Digitized by PPRACHIN, SOA

ଜଣେ କର୍ତ୍ତୃତ୍ୟହୀନ ବୃଦ୍ଧ ଖାଲି ପରିବାର ପାଇଁ କାହିଁକି ସମାଜ ପାଇଁ ଅଦରକାରୀ । ସେଥିରେ ଆମ ବାପା ବି ଜଣେ High B.P. ଆଉ ଡାଇବେଟିକ୍ ପେସେଣ୍ଟ । କୋଉ ମୁହୂର୍ତ୍ତରେ ହୃଦଘାତରେ ପ୍ରାଣ ଚାଲିଯିବାର ସମ୍ଭାବନା ଅଛି । ତାଙ୍କୁ ହତ୍ୟା କରି ତୁମ ଧନ୍ଦା ଦୃଷ୍ଟିରୁ ଲାଭବାନ ତ ହେଇପାରିବନି ବରଂ ପୋଲିସ, ସମାଜ, ସମସ୍ତଙ୍କ ଆଖିରେ ଲାଞ୍ଛିତ ହେବା ସାର ହେବ । ଫସି ବି ଯାଇପାର । ଏକଥାକୁ ବିଚାର କରି ଯଦି ଆମକୁ ଗୋଟେ ସପ୍ତାହ ସମୟ ଦେବାକୁ consider କରିବ ତେବେ କହିବ । ଜଲଦି ଫୋନ୍‌ରେ ଜଣାଇବ । ନଚେତ ଆମେ ଅନ୍ୟବାଟର ଆଶ୍ରୟ ନେବାକୁ ବାଧ ହେବୁ । ରଖୁଛି । **(ଗଜାନନ ସୀମାଦ୍ରୀ କଥା ଶୁଣି ଥକ୍କାମାରି ବସିଯାଏ । ସେଇ ଯୋନ୍ ଆଲୋକ ଅଳ୍ପ କମିଯାଏ )**

ଶେଷାଦ୍ରୀ : (ସୀମାଦ୍ରୀକୁ) ଭାଇ, ତୁମ ବୁଦ୍ଧିକୁ ତାରିଫ କରିବାକୁ ପଡିବ । ବଲ୍ ବର୍ତ୍ତମାନ ତା' କୋର୍ଟରେ...। କ'ଣ କରୁଛି ଦେଖିବା ।

ଅଳକା ବାପାଙ୍କର ଯଦି କିଛି ହେଇଯାଏ ମୁଁ କେବେ ନିଜକୁ କ୍ଷମା କରିପାରିବିନି କହିଦେଉଛି ।

(ଅଳକା ଚାଲିଯାଏ ।)

ସୀମାଦ୍ରୀ : ଆରେ ଶୁଣ... ଟିକିଏ ବୁଝିବାକୁ ଚେଷ୍ଟା କର ।

**(ସୀମାଦ୍ରୀ ପରେ ପରେ ଶେଷାଦ୍ରୀ ଅଳକା ପଛେ ପଛେ ଚାଲିଯାଆନ୍ତି । ସନାତନଙ୍କ ଘର ଧିରେ ଧିରେ ଅନ୍ଧାର ହୁଏ । ଗଜାନନ ଯୋନ ଆଲୋକ ଧିରେ ଧିରେ ବଢିବାକୁ ଲାଗେ)**

ଗଜ : ଶଳାଟି ମୋତେ ଭଲ ଭୁଷାବଲ କଦଳୀ ଧରାଇ ଦେଲାରେ ଯୋଗେଶ । ଶଳାକୁ ମୋତେ ଉଚିତ୍ ଶିକ୍ଷା ଦେବାକୁ ପଡିବ । ଚାଲ ସେ ଧୋତରା ବୁଢାଟାକୁ ଶେଷ କରିଦେବା ।



Digitized by PPRACHIN, SOA

(ଗଜ ପିସ୍ତଲ ବାହାର କରି ଠିଆ ହୋଇଯାଏ । ତା'ର ନିଶ୍ୱାସ ପ୍ରଖର ହୁଏ ।)

ଯୋଗେଶ : ଏତେ ଉତ୍ତେଜିତ ହେବା ଉଚିତ୍ ନୁହେଁ ଭାଇ । ଆମେ ଭାବିଚିନ୍ତି କ'ଣ କରିବା ଠିକ୍ କରିବା ।

ଗଜ : ଚୁପ୍ । ମୁଁ ତୋ କୌଣସି ଉପଦେଶ ଶୁଣିବିନି । ଏବେ ଯାଇ କାମ ବଢେଇ ଦେବି । ଏଇ ଫଗେ ଫଗେ ।

ଯୋଗେଶ : ଶୁଣନ୍ତୁ ଭାଇ । ମୁଣ୍ଡ ଥଣ୍ଡା କରି ମୋ କଥା ଟିକିଏ ପ୍ରଥମେ ଶୁନନ୍ତୁ । ବୁଢାକୁ ତା' ପୁଅ ସହିତ କଥାବାର୍ତ୍ତା କରାଇଦେବା । ଦେଖିବା କ'ନ ହେଉଛି । ଗୋଟେ ଚାନ୍ସ ନେବା...। କ'ନ କହୁଛନ୍ତି । ବିଶ୍ୱାସ କରନ୍ତୁ କିଛି ଭଲ ହେଇପାରେ । ମୁଁ ବୁଢାକୁ ନେଇ ଆସୁଛି । (ପରେ ପରେ ଯୋଗେଶ ଯାଇ ସନାତନଙ୍କୁ ନେଇଆସେ ଏବଂ ସନାତନ ହାତ ମୁହଁରୁ ପଟି ଖୋଲେ)

ସନାତନ : ଦୁଇଦିନ ଭିତରେ ଛାଡିଦେବାକୁ କହୁଥିଲ - ଛାଡିଦଉନ କାହିଁକି । ମୋତେ କାହିଁକି କିଡ୍‌ନାପ୍ କରି ରଖିଛ ?

ଗଜାନନ : ସେଇଠି ଚୁପ୍ ହେଇ ବସନ୍ତୁ ।

ସନାତନ : (କିଛି ସମୟ ନୀରବରେ ବସିଲା ପରେ) ମୋ ପୁଅମାନଙ୍କ ସହିତ କଥା ହେଲ ବାପା ?

ଯୋଗେଶ : ତମେ ଯାହାକୁ ପୁଅ ବୋଲି କେହୁଚ ସେ ଦିଇଟା ଯାକ ଡକାୟତ । ମୋର ସନ୍ଦେହ ହେଉଚି ସେଗୁଡା ତମର ଜନ୍ମକଲା ପୁଅ କି ନା - ଟଙ୍କାଟା ଦେବାକୁ ବିଲକୁଲ ରାଜି ହଉନାହାଁନ୍ତି ।

ସନାତନ : ନା' ନା' ସେମାନେ ସେମିତି କରିବେନି, କ'ଣ ଅସୁବିଧା ହେଇଥିବ ।

ଗଜାନନ : କିଛି ଅସୁବିଧା ହେଇନି - ସେମାନେ ମୋତେ ଠକୁଚନ୍ତି - ଫୋନ୍ ଲଗେଇ ଦଉଚି,ଶେଷଥର ପାଇଁ ପୁଅମାନଙ୍କ ସହ କଥା



Digitized by PPRACHIN, SOA

ହେଇଯାଆନ୍ତୁ । ସଫା ସଫା ପଚାରିବେ ଟଙ୍କା ଦେବେ କି ନାହିଁ । ଯୋଗେଶ - ଫୋନ୍ ଲଗା ।

ଯୋଗେଶ : ହଁ ଲଗାଉଚି - **(ଯୋଗେଶ ଫୋନ୍ ଲଗାଏ, ସେପଟେ ସନାତନ ଚୌଧୁରୀଙ୍କ ଘରେ ଫୋନ୍ ରିଙ୍ଗ୍ ହୁଏ ଓ ଆଲୋକ ଜଳି ଉଠେ । ସୀମାଦ୍ରୀ ଆସି ଫୋନ୍ ଧରେ । ପାଖରେ ଥାଏ ଶେଷାଦ୍ରୀ । ଅଳକା ଫୋନ୍ ରିଙ୍ଗ୍ ଶୁଣି ଆସିଛି)**

ସୀମାଦ୍ରୀ : ହାଲୋ...।

ଯୋଗେଶ : (ଗଜାନନକୁ ଫୋନ୍ ଦିଏ) ଲାଉଡ୍ ସ୍ପିକର ମୁଡରେ ଅଛି । କଥା ହୁଅନ୍ତୁ ।

ଗଜାନନ : ହାଲୋ...।

ସୀମାଦ୍ରୀ : କ'ଣ ଠିକ୍ କଲେ ଆମକୁ ଆଉ ଗୋଟେ ସପ୍ତାହ ସମୟ ଦେବେ ତ ?

ଗଜାନନ : ଯଥେଷ୍ଟ ସମୟ ଦେଲିଣି ଆଉ ନୁହେଁ ।

ସୀମାଦ୍ରୀ : ଆପଣ ଏମିତି ଜିଦ୍ ଧରିଲେ ଭଗବାନଙ୍କୁ ଡାକିବା ଛଡା ଆମେ କ'ଣ କରିପାରିବୁ ।

ଗଜାନନ : ନା - କିଛି କରିପାରିବେନି । ଟଙ୍କା ଟା ଆପଣଙ୍କ ପାଇଁ ବଡ । ଛି -ଛି - ଛି, ଯୋଉ ବାପା ଆପଣମାନଙ୍କୁ କୋଟିପତି କରି ଠିଆ କରେଇଛନ୍ତି - ସେ ବାପାର ଜୀବନ ଆଜି ଆପଣମାନଙ୍କ ପାଖରେ କିଛି ନୁହେଁ ।

ସୀମାଦ୍ରୀ : ଆମକୁ ବୁଝିବାକୁ ଚେଷ୍ଟା କର ଭାଇ...ବାପା ଆମ ପାଇଁ ସବୁକିଛି । ସେ ଆମ ପାଇଁ ଭଗବାନ ସଦୃଶ ।

ଗଜାନନ : ହଉ ନିଅ - ସେଇ ଭଗବାନଙ୍କ ସହ କଥା ହୁଅ । (ଫୋନ୍ ସନାତନକୁ ଧରେଇ ଦେଇ) ପୁଅମାନଙ୍କ ସହିତ କଥା ହୁଅନ୍ତୁ ।

ସନାତନ : (ଫୋନ୍ ଧରୁ ଧରୁ କାନ୍ଦି ଉଠନ୍ତି)

ସୀମାଦ୍ରୀ : ବାପା, ଆପଣ କାନ୍ଦନ୍ତୁନି ବାପା । ଆମେ ଖୁବ୍ ଜଲଦି ଆପଣଙ୍କୁ



Digitized by PPRACHIN, SOA

ମୁକୁଳେଇ ଆଣିବୁ । ସେ ଲୋକ ଆପଣଙ୍କୁ ଖରାପ ବ୍ୟବହାର କରୁଛି କି ?

ସନାତନ : ନା, ହେଲେ ସତରେ କ'ଣ ତୁମ ପାଖରେ ଟଙ୍କା ନାହିଁ ? ଡେରି କରୁଚ କାହିଁକି ?

ସୀମାଦ୍ରୀ : ଏକାବେଳେକେ ନଗଦ ୨୫ ଲକ୍ଷ ଟଙ୍କା । ଫ୍ୟାକ୍ଟ୍ରି ବ୍ରେକ୍ ଡାଉନ୍ ଥିଲା ସେଇଥିପାଇଁ ବାପା ।

ସନାତନ : ଥାଉ - ମୁଁ ତୁମମାନଙ୍କ ପାଖରେ ଅଲୋଡା, ଅଦରକାରୀ । ମୋ' ଭଳି ବୁଢାମାନଙ୍କର ଜୀବନର କିଛି ମୂଲ୍ୟ ନାହିଁ । ତୁମ ପାଖରୁ ଏକଥା ଶୁଣି ସେ ରାଗିଯାଇଛି । କେତେବେଳେ କ'ଣ କରିବସିବ ।

ସୀମାଦ୍ରୀ : ବାପା - ଆପଣ ଆମକୁ ବୁଝିବାକୁ ଚେଷ୍ଟା କରନ୍ତୁ । ଏତେ ଟଙ୍କା ଯୋଗାଡ କରିବାକୁ ଟିକେ ଲେଟ୍ ହେଉଚି । ଆମେ ତାକୁ କିଛି ଦିନ ସମୟ ମାଗିଛୁ ।

ଗଜାନନ : (ସନାତନଙ୍କଠୁ ଫୋନ୍ ନେଇ - ଫୋନ୍‌ରେ ହାତ ଦେଇ ସନାତନକୁ କୁହେ) ପଚାରନ୍ତୁ କେତେ ଟଙ୍କା ଯୋଗାଡ ହେଲାଣି । (ପୁଣି ସନାତନକୁ ଫୋନ୍ ଦିଏ)

ସନାତନ : କେତେ ଟଙ୍କା ଯୋଗାଡ କଲଣି ?

ସୀମାଦ୍ରୀ : ୧୫ ଲକ୍ଷ ହେଇଛି, ଏବେ ମାର୍ଚ୍ଚ ମାସ । ସେଇଥିପାଇଁ କାହା ପାଖରୁ ବି ଆଣି ହେଉନି, ଡେରି ହେଉଛି । ଆମେ କିନ୍ତୁ ଯୋଗାଡରେ ଲାଗିଛୁ ।

ଗଜାନନ : (ସନାତନ ହାତରୁ ଫୋନ୍ ନେଇ) ଆଚ୍ଛା - ମୁଁ ମୋର ନିଷ୍ପତ୍ତିରେ ଗୋଟେ ପରିବର୍ତ୍ତନ କରିବି - ଯଦି ରାଜି କୁହନ୍ତୁ ।

ସୀମାଦ୍ରୀ : କଥାଟା କିଛି ନଶୁଣି କେମିତି ହଁ ମାରିଦେବି । ପୁଣି ସମୟ ମାଗିଲେ ଖରାପ ଭାବିବ ।

ଗଜାନନ : ଦେଖନ୍ତୁ, ମୁଁ ପାଞ୍ଚ ଲକ୍ଷ ଟଙ୍କା କମେଇ ଦେବାକୁ ରେଡି ଅଛି ।



Digitized by PPRACHIN, SOA

କିନ୍ତୁ ସେଥିପାଇଁ ୨୪ ଘଣ୍ଟାରୁ ଗୋଟିଏ ଘଣ୍ଟା ବି ଅଧିକ ଦେବିନି । ଚିନ୍ତା କରନ୍ତୁ - ଟଙ୍କା କେମିତି ନେବି ଘଣ୍ଟେ ପରେ ଜଣେଇବି ।

**(ଗଜ ଫୋନ୍ କାଟିଦିଏ, ସେ କୋନରୁ ଆଲୋକ ଧିରେ ଧିରେ ଲିଭିଯାଏ । ଅନ୍ୟ କୋନରେ କିନ୍ତୁ ଆଲୋକ ଥାଏ)**

ସୀମାଦ୍ରୀ : ଅପହରଣକାରୀ ନିଜ ତରଫରୁ ପାଞ୍ଚ ଲକ୍ଷ ଟଙ୍କା କମେଇ ଦେଇଚି । କହିଚି, ସମୁଦାୟ ଟଙ୍କା କିନ୍ତୁ ୨୪ ଘଣ୍ଟା ଭିତରେ ନେବ ।

ଅଲକା : ରାଜି ହେଇଯାଅ । ଆଉ ବାରଗେନ୍ ଚକରରେ ପଡନି । ତା ଟଙ୍କା ଦେଇ ଶୀଘ୍ର ବାପାଙ୍କୁ ମୁକୁଳେଇ ଆଣ ।

ସୀମାଦ୍ରୀ : ଟଙ୍କା ଗୁଡାକ ସହଜରେ ମିଳିଯାଏନି ଅଲକା, ତା ପାଇଁ କେତେ କଷ୍ଟ କରିବାକୁ ପଡେ ତୁମେ କେବେ ବୁଝିଚ ? ଏବେ ତା ପାଖରୁ ଫୋନ୍ ଆସିଲେ ତୁମେ ଧରିବ । କହିବ ଆମେ କୋଡିଏ ଲକ୍ଷ ଦେବାକୁ ରାଜି, ତୁମକୁ ଅପେକ୍ଷା କରିବାକୁ କହିଯାଇଛନ୍ତି ।

ଶେଷାଦ୍ରୀ : ଏଥିରେ ଆମର ଲାଭ ?

ସୀମାଦ୍ରୀ : ଲାଭ ମାନେ ସମୟ । ଆଉ କିଛି ସମୟ ଗଡିଗଲେ ହୁଏତ ନୂଆ କିଛି ପ୍ରସ୍ତାବ ଦେଇପାରେ । ତୁମେମାନେ ଭିତରକୁ ଆସ ସେଇଠି କଥା ହେବା ।

(ସମସ୍ତେ ଚାଲିଯାଆନ୍ତି - ଅନ୍ଧାର ହୁଏ)





Digitized by PPRACHIN, SOA

## ଅଷ୍ଟମ ଦୃଶ୍ୟ

(ପୂର୍ବବର୍ଣ୍ଣିତ ଗଜାନନ ଆଡ୍ଡାର ଦୃଶ୍ୟ)

ଗଜାନନ : ରାସ୍କେଲଗୁଡା ପୁଣି ସେଇ ଡ୍ରାମା ଆରମ୍ଭ କରିଦେଲେଣି । ଫୋନ୍ ରିଙ୍ଗ୍ ହେଉଚି କେହି ଉଠାଉ ନାହାଁନ୍ତି । ଯୋଗେଶ... ଯୋଗେଶ...।

ଯୋଗେଶ : କ'ଣ ହେଲା ଭାଇ ?

ଗଜାନନ : ତୋ ଗାଡି ବାହାର କର । ଆଉ ଅପେକ୍ଷା କରିହେବନି - ଏବେ ବାହାରିଯିବା ।

ଯୋଗେଶ : ଏବେ କୁଆଡେ଼ଯିବା ?

ଗଜାନନ : ମାଲକାନଗିରି ଜଙ୍ଗଲକୁ । ସେଇଠି ଯାଇ ବୁଢାର କାମ ଶେଷ କରିଦେବା ।

ଯୋଗେଶ : ହଠାତ୍ ଏ ପ୍ରକାର ନିଷ୍ପତ୍ତି ? ଅସୁବିଧା କ'ଣ ?

ଗଜାନନ : ସେମାନେ ମୋ ସାଙ୍ଗରେ ଖେଳିବା ଆରମ୍ଭ କରିଦେଲେଣି । ନିଶ୍ଚୟ ପୋଲିସର ସାହାଯ୍ୟ ନେଉଛନ୍ତି । ପୋଲିସ ଆମକୁ ଖୋଜି ପାଇବା ଆଗରୁ ଲାସ୍‌ଟାକୁ ଜଙ୍ଗଲ ଭିତରେ ଫୋପାଡି ଦେଇ ଆସିବା, ଜଲଦି କର । **(ଏହି ସମୟରେ ଯୋଗେଶର ମୋବାଇଲ ରିଙ୍ଗ୍ ହୁଏ ବାଉଳାରେ ଗଜ ତା ପକେଟରୁ ଗୋଟିଏ ପରେ ଗୋଟିଏ ମୋବାଇଲ୍ ବାହାର କରେ ।)**

ଯୋଗେଶ : ମୋ'ର ଟା ରିଙ୍ଗ୍ ହେଉଚି ।

ଗଜାନନ : ମୋର ରିଙ୍ଗ୍ ଟୋନ୍ ସହିତ ସମାନ ରଖିଚୁ, ମୁଁ ଏପଟେ ବାଉଳା ହେଉଚି ।

ଯୋଗେଶ : (ନିଜ ମୋବାଇଲରୁ) ହଁ ଯୋଗେଶ କହୁଛୁ । ଭାଇ... ? ମୋ ପାଖରେ ଅଛନ୍ତି । କ'ଣ କିଛି ଅସୁବିଧା ହେଇଚି ? ଭାଇଙ୍କି ଦେବି ?



Digitized by PPRACHIN, SOA

(ଗଜକୁ ମୋବାଇଲ୍ ଦେଇ)ଆପଣଙ୍କ ଶଳା ତପନ ବାବୁଙ୍କ ଫୋନ୍ - ଭେଲୋରରୁ କହୁଛନ୍ତି ।

ଗଜାନନ : (ଫୋନ୍ ନେଇ) ତପନ... ଆରେ ତପନ କ'ଣ ହେଲା ? ବାପାଙ୍କ ଦେହ ଭଲ ଅଛି ତ ? ଡାଏଲିସସ୍ ରେଗୁଲାର ଚାଲୁଚି ତ ? ଏଁ... ଡଃ. ସୁବ୍ରମନିୟମ କ'ଣ କହୁଛନ୍ତି ? ଆଚ୍ଛା ବାପା କଥାବାର୍ତ୍ତା କରୁଛନ୍ତି ତ ? ମୁଁ ଚେଷ୍ଟା ଚଳେଇଚି । ନା ନା... ସମୟ ଲାଗିବ । କିଛି କହି ହବନି । ଏଁ...ଏଁ...ଆଜି ଆସି ଦେଖି କହିଗଲେ । (ଗଜ ମୁଣ୍ଡରେ ହାତ ଦେଇ ବସିପଡେ)

ଯୋଗେଶ : କ'ଣ ହେଇଚି । ମଉସାଙ୍କ ଦେହ କେମିତି ଅଛି ? (ଗଜ ମୋବାଇଲ୍‌କୁ ଯୋଗେଶକୁ ଦିଏ)

ଯୋଗେଶ : (ମୋବାଇଲରେ) କ'ଣ ହେଲା ତପନ ବାବୁ... ମଉସା ଭଲ ଅଛନ୍ତି ତ ? ଆଚ୍ଛା...ଆଚ୍ଛା...କେବେ ଆସନ୍ତା ସପ୍ତାହ ଭିତରେ ? ଠିକ୍ ଅଛି...ଦେଖୁଚୁ କ'ଣ କରିହେବ । (ଫୋନ୍ ବନ୍ଦ କରି ଗଜକୁ) ବିପଦ ବେଳେ ଧୈର୍ଯ୍ୟ ଧରିବାକୁ ହେବ । ବିପଦ ଆସିଲେ ତା ଉପରକୁ କୁଦି ପଡିଲେ ସେ ଥମି ଯିବ । ଶଳାବାବୁ କେହୁଚନ୍ତି ଏବେ ଏତେ ଭୟ କରିବାର ନାହିଁ ।

ଗଜାନନ : ଯାହାଙ୍କ ପାଇଁ ଜୀବନକୁ ବାଜି ଲଗେଇ ଆମେ ଏତେ ଦୂର ଆଗେଇ ଆସିଲେ - ଡାକ୍ତର କହୁଚି ତାଙ୍କୁ ଆଉ ବେଶି ଦିନ ଡାଏଲିସସ୍‌ରେ ରଖି ହବନି । ଆସନ୍ତା ସପ୍ତାହ ଭିତରେ Kidney Transplantation କରିବାକୁ ପଡିବ । (ଗଜ କାନ୍ଦିଉଠେ)

ଯୋଗେଶ : ଆମେ ତ ସେଇ ଚେଷ୍ଟାରେ ଅଛେ ଭାଇ । Kidney ଦେବା ଲୋକ ରେଡି ହେଇ ବସିଚି । ବାକି ରହିଲା ଟଙ୍କା । ଭଗବାନ ହିଁ ଭରସା । ତାଙ୍କୁ ଡାକିଲେ ସେ ବାକି କାମଟା କେରିଦେବ ।

ଗଜାନନ : ତାଙ୍କରି ଭରସାରେ ଆମେ କାମ କଚ୍ଚାଲିଚେ, ହେଲେ ବୁଢାର କୃତଘ୍ନ ପୁଅଗୁଡାଏ ମୂଳରୁ ଚଙ୍କୁ ନାହାଁନ୍ତି । ବୁଢାଟା ମରିବ ପଛେ ସେଇ ବେଇମାନ ଗୁଡାଙ୍କର ଚିନ୍ତା ନାଇଁ କି ଦକ ନାହିଁ ।



Digitized by PPRACHIN, SOA

ଯୋଗେଶ : ଭାଇ, ଆମକୁ ଅନ୍ୟ କିଛି ଗୋଟେ ଚିନ୍ତା କରିବାକୁ ପଡିବ ।

ଗଜାନନ : ମୁଁ ଭାବୁଚି ବୁଢାର ଗୋଟେ ହାତ କାଟି ତାଙ୍କ ଘର ସାମନାରେ ଫିଙ୍ଗିଦେଇ ଆସିବା ।

ଯୋଗେଶ : ନା' ନା' ସେସବୁ ସମସ୍ୟାକୁ ଆହୁରି ଜଟିଳ କେରି ପକାଇବ । ମୋତେ ଟିକେ ଟାଇମ୍ ଦିଅନ୍ତୁ... ମୁଁ ଦିମାକ ଲଗେଇ ଚିନ୍ତା କରେ...ଭଗବାନ ନିଶ୍ଚୟ କିଛି ବୁଦ୍ଧି ଦେବ । **(ଦରଜା ବାଡେଇବାର ଶବ୍ଦ ଶୁଣାଯାଏ)**

ଗଜାନନ : ସେ' ବୁଢା କାହିଁ ଖଡଖଡ କରୁଚି । ଯା' ଦେଖ୍ (ଯୋଗେଶ ଭିତରକୁ ଯାଇଚି, ସନାତନକୁ ନେଇ ଆସିଛି, ହାତରୁ ଓ ମୁହଁରୁ କପଡା ଖୋଲି ଦେଇଛି)

ଗଜାନନ : କ'ଣ ହେଇଚି ଆପଣଙ୍କର...ଦରଜା କାହିଁକି ବାଡେଉଥିଲେ ?

ସନାତନ : ତୁମେ କିଛି ଗୋଟେ ସମସ୍ୟାରେ ପଡିଯାଇଛ ନା ବାପା ? ତୁମେ କାନ୍ଦୁଥିବାର ଶୁଣିପାରିଲି । ମୋ ପୁଅମାନେ ପୋଲିସରେ ଖବର ଦେଇଛନ୍ତି...ନା ଆଉ କିଛି ?

ଯୋଗେଶ : ଆପଣଙ୍କ ପୁଅମାନେ ବିଶ୍ୱାସଘାତକତା କରୁଛନ୍ତି । ଘରେ ଥାଇ ବି ଫୋନ୍ ଧରୁନାହାଁନ୍ତି । ତା'ର ପରିନାମ ଆପନଙ୍କୁ ଭୋଗିବାକୁ ପଡିବ ।

ସନାତନ : ତା' ତ ମୋତେ ଭୋଗିବାକୁ ପଡିବ, ତେବେ ଏ ବାବୁ କାନ୍ଦୁଥିଲେ କାହିଁକି... ?

ଯୋଗେଶ : ୟା'ଙ୍କ ବାପାଙ୍କର ଦୁଇଟା ଯାକ Kidney ଖରାପ ହେଇଯାଇଛି । ସେ ବର୍ତ୍ତମାନ ଭେଲୋରରେ । Kidney ଦେବା ଲୋକ ଠିକ୍ ହେଇଯାଇଛି ହେଲେ ଟଙ୍କା ଯୋଗାଡ ହେଇପାରୁନି । ଡାକ୍ତର କେହିଛି ସାତ୍‌ଦିନ୍ ଭିତରେ Kidney ବଦଲାଇବା ଦରକାର... ନଚେତ୍ ।

ସନାତନ : ତା'ମାନେ ୟାଙ୍କ ବାପାଙ୍କ ଚିକିତ୍ସା ପାଇଁ ଆପଣମାନେ ମୋତେ



Digitized by PPRACHIN, SOA

ଉଠାଇ ଆଣିଛନ୍ତି ।

ଯୋଗେଶ : ହଁ, ୟା' ଛଡା ଆଉ କିଛି ଉପାୟ୍ ନଥିଲା । ଯେଉଁ କମ୍ପାନୀରେ ଆମେ ଦୁହେଁ ଚାକିରୀ କେରୁଥିଲୁ ସେଇଟା ବନ୍ଦ୍ ହେଇଯାଇଛି । ସେଇଠୁ କିଛି ଟଙ୍କା ମିଳିବା କଥା - ହେଲେ କୋର୍ଟରେ କେସ୍ ଥିବାରୁ ସେ ଟଙ୍କା ମିଳିପାରୁନି ।

ସନାତନ : (ତା'ହେଲେ ଏମିତି ସମସ୍ୟା) ରୋଗୀ ଏବେ ଭେଲୋର ହସପିଟାଲରେ ନା ବାହାରେ ।

ଯୋଗେଶ : ଗତ ୫ ମାସ ହେଲା ହସପିଟାଲରେ । ଆଚ୍ଛା କ'ଣ କଲେ ଆପନଙ୍କର ପୁଅମାନଙ୍କୁ ବାଟକୁ ଆନି ହେବ...। ଯଦି ୟା'ଙ୍କ ବାପାଙ୍କର କିଛି ହେଇଯାଏ....ତେବେ ।

ସନାତନ : (ଗଜ ପାଖକୁ ଯାଇ ତା' କାନ୍ଧରେ ହାତ ରଖି) ମୋତେ ତୁମେ ବିଶ୍ୱାସ କରିବ ବାପା...। ମୁଁ ଯାହା କହିବି ରଖିବ ।

ଗଜାନନ : କ'ଣ କହୁଛନ୍ତି ?

ସନାତନ : ମୁଁ ମୋ ପୁଅମାନଙ୍କ ହାତକୁ କୋଟି କୋଟି ଟଙ୍କାର ସମ୍ପତ୍ତି ଟେକିଦେଇଥିଲେ ବି ସେମାନେ ମୋ ଜୀବନକୁ ବାଜି ଲଗେଇ ଦେଇ ଆରାମରେ ବସିଯାଇଛନ୍ତି । ଅଥଚ ତୁମେ ଜଣେ ପୁଅ ହେଇ ବାପାଙ୍କ ଜୀବନ ରକ୍ଷା ପାଇଁ ନିଜ ଜୀବନକୁ ବାଜି ଲଗେଇ ଦେଇଚ । ମୋତେ ଏ କଥା ବଡ ଅଭିଭୂତ କରିଚି । ତୁମ ବାପାଙ୍କ ଚିକିତ୍ସା ପାଇଁ ମୁଁ କିଛି ସାହାଯ୍ୟ କରିପାରିବି ବୋଲି ଭାବୁଚି । ହେଲେ ତୁମେ ସଂପୂର୍ଣ୍ଣ ଭାବେ ମୋତେ ବିଶ୍ୱାସକୁ ନ ନେଲେ - ସେ କଥା ସମ୍ଭବ ହବନି ।

ଗଜାନନ : (ଆଖି ଛଳଛଳ ହେଇ ସନାତନଙ୍କ ହାତ ଧରିନିଏ) ଆପଣ ମୋ ବାପା ସମାନ ମଉସା । ମୋତେ କ'ଣ କରିବାକୁ ହବ କୁହନ୍ତୁ ।

ସନାତନ : ମୋତେ କଥା ଦିଅ, ୟା ପରଠୁ ତୁମେ ଅପହରଣ ଭଳି ଘୃଣ୍ୟ କାମ କେବେ କରିବନି ।



Digitized by PPRACHIN, SOA

ଗଜାନନ : ମୁଁ ଯେ ଏ କାମ କରିପାରିବି କେବେ ସପ୍ନରେ ସୁଧା ଭାବିପାରିନଥିଲି ମଉସା । ମୁଁ ମୋ ବାପାଙ୍କର ଏକମାତ୍ର ସନ୍ତାନ । ମୋ ବାପା ଏବେ ମୃତ୍ୟୁ ସହିତ ସଂଗ୍ରାମ ଚଳାଇଛନ୍ତି । କେବଳ ତାଙ୍କରି ମୁହଁରେ ଟିକେ ହସ ଫୁଟାଇ ପାରିବି ସେଇ ଆଶାରେ ଏମିତି କାମରେ ହାତ ଦେଇଛି ।

ସନାତନ : ତୁମ ବାପାଙ୍କ ଅପରେସନ ପାଇଁ କେତେ ଟଙ୍କା ଦରକାର ?

ଗଜାନନ : ଯିଏ କିଡ୍‌ନି ଡୋନେଟ୍ କରିବ ତା'ର ଦଶ ଲକ୍ଷ ଟଙ୍କା ଦରକାର । ଅପରେସନ୍ ଇତ୍ୟାଦି ପାଇଁ ବାକି ତିନି ଚାରି ଲକ୍ଷ ଟଙ୍କା ଖର୍ଚ୍ଚ ହେବ ବୋଲି ଡାକ୍ତର କହିଛନ୍ତି ।

ସନାତନ : ଠିକ୍ ଅଛି । ସେତିକି ଟଙ୍କା ମୁଁ ତୁମକୁ ଦେଇଦେବି ।

ଗଜାନନ : ଆପଣ ଦେଇଦେବେ ?

ସନାତନ : ହଁ, ଜଣେ ବୁଢା ବାପାର ଜୀବନ ରକ୍ଷା ପାଇଁ ମୁଁ ଯେମିତି ହେଲେ ସେତିକି ଟଙ୍କା ଯୋଗାଡ କରି ଦେଇଦେବି । ବିଶ୍ୱାସ କର - ମୋ ନିଜ ନାଁରେ କିଛି ଡିପୋଜିଟ୍ ଅଛି ତାକୁ ବ୍ୟାଙ୍କରୁ ଉଠାଇବାକୁ ହେବ । ଆଉ କିଛି ଅନ୍ୟଆଡୁ ଆରେଞ୍ଜ କରିବାକୁ ହେବ ।

ଗଜାନନ : ତା'ମାନେ ଆପଣ ଏଇଠୁ ଚାଲିଯିବାକୁ ଚାହୁଁଛନ୍ତି ?

ସନାତନ : ହଁ, ମୁଁ ଏଇଠୁ ନଗଲେ ସେ କାମ ତ ଆଉ କେହି ପାରିବେନି । ସେଇଥିପାଇଁ ପ୍ରଥମରୁ କହୁଥିଲି - ମୋତେ ତୁମେ ବିଶ୍ୱାସକୁ ନେବାକୁ ପଡିବ । କ'ଣ କହୁଛ ?

ଗଜାନନ : ନା' ନା' ମୋତେ ଏମିତି ପଚାରନ୍ତୁ ନି, ମୋତେ ଟିକେ ଭାବିବାକୁ ସମୟ ଦରକାର ।

ସନାତନ : ଠିକ୍ ଅଛି, ତୁମେ ସବୁ ଦିଗରୁ ଭାବିଚିନ୍ତି ଠିକ୍ କର । ଗୋଟିଏ ପଟେ ତୁମର ବାପାଙ୍କ ଜୀବନ - ଅନ୍ୟ ପଟରେ ତୁମ ନିଜର ଜୀବନ । ମୋ ପୁଅମାନେ ଟଙ୍କା ଦେବାକୁ ଯୋଜନା କରୁଛନ୍ତି କି ପୋଲିସର ସାହାଯ୍ୟ ନେଉଛନ୍ତି କିଛି ଜଣାପଡୁନି । ସବୁ ତୁମ



Digitized by PPRACHIN, SOA

ବୁଦ୍ଧି ଆଉ ବିଶ୍ୱାସ ଉପରେ ନିର୍ଭର କରେ...। **(ହଠାତ୍ ଯୋଗେଶ ଇସାରାରେ ଗଜ ଭିତରକୁ ତା'ସହିତ ଚାଲିଯାଏ ଓ ପରେ ପରେ ଦୁହେଁ ଫେରି ଆସନ୍ତି ।)**

ଗଜାନନ : ନା'...ଆପଣଙ୍କୁ ବିଶ୍ୱାସ କରି ଏତେ ବଡ ରିସ୍କ ନେବା ବୋକାମି ହେବ। ବାପାଙ୍କ ଜୀବନ ତ ରକ୍ଷା କରି ହେବନି ଶେଷରେ ମୋତେ ଜେଲ୍ ଯିବାକୁ ପଡିବ।

ସନାତନ : ଦେଖ, ମୋ ଉପରେ ଭରସା କର। ମୁଁ ଏଠୁ ଯାଇ ପୋଲିସ କି ମୋ ପୁଅଙ୍କ ପାଖକୁ ଯିବିନି । ମୋର ପାସ୍‌ବୁକ୍ ଇତ୍ୟାଦି ମୋ ପୁଅମାନଙ୍କ ଅଜାଣତରେ ଅଲଗା ଜାଗାରେ ରଖିଛି । ବିଶ୍ୱାସ କର, ମୁଁ ତମର କୌଣସି କ୍ଷତି କରିବିନି।

ଗଜାନନ : (ଚିତ୍କାର କରି) ନା', ଏସବୁ କହି ମୋତେ ଦୁର୍ବଳ କରିଦିଅନ୍ତୁ ନି ଆପଣମାନେ ଆମ ଅପେକ୍ଷା ଅଧିକ ବୁଦ୍ଧିମାନ ବୋଲି କୋଟିପତି। ଜୀବନ ରକ୍ଷା ପାଇଁ ତ ସମସ୍ତେ ଏମିତି କହିବେ । ମୁଁ ଯେତେ ବାଟ ଆଗେଇ ଗଲିଣି ସେଇଠୁ ଫେରିବାର ଚାନ୍ସ ନାହିଁ । ଯୋଗେଶ... ଆଉ ବେଶି ଟାଇମ୍ ଏଠି ରହିବା ମାନେ ମୃତ୍ୟୁକୁ ଅପେକ୍ଷା କରିବା । ଯା ୟା'ଙ୍କ ମୁହଁ ହାତ ବାନ୍ଧ - ଆଉ ଗାଡି ବାହାର କର। ଆରେ ଚାହିଁଛୁ କ'ଣ... ଆମେ ଏଇକ୍ଷଣି ଏଇଠୁ ଚାଲିଯିବା। ଜଲଦି କର - **(ଯୋଗେଶ ସନାତନର ମୁହଁ ହାତ ବନ୍ଧାବନ୍ଧି କରେ)**

(ଧିରେ ଧିରେ ଆଲୋକ ଲିଭି ଆସେ)

(ଅନ୍ଧାର)





Digitized by PPRACHIN, SOA

## ନବମ ଦୃଶ୍ୟ

(ସନାତନଙ୍କ ବୈଠକ ଗୃହ । ସୀମାଦ୍ରୀ ଓ ଶେଷାଦ୍ରୀ ଫୋନ୍ ଲଗେଇବାରେ ବ୍ୟସ୍ତ)

ସୀମାଦ୍ରୀ : କ'ଣ କିଛିବି ନମ୍ବର ଲାଗୁନି ?

ଶେଷାଦ୍ରୀ : ଲୋକଟା ଯେତେ ଯେତେ ନମ୍ବରରୁ ଫୋନ୍ କରିଥିଲା ସବୁଗୁଡା ଲଗାଇଲିଣି... କୋଉଟା ବି ଲାଗୁନି ।

ଅଳକା (ଚା ଧରି ଆସନ୍ତି ଏବଂ ଦୁଇଭାଇଙ୍କୁ ଦିଅନ୍ତୁ ।) ଲାଗୁନିଟି... ଟଙ୍କା ଦେବ ଦେବ କହି ମାସେ ହେଲାଣି ଟାଇମ୍ ନେଇଗଲ । ଏପଟେ ଫୋନ୍‌ଟାକୁ କାଟି ଦେଇ ବସିଗଲ । ଏଥିରେ ବାପାଙ୍କ ଅବସ୍ଥା କ'ଣ ହେଇଥିବ ବୁଝିପାରୁଚଟି ।

ଶେଷାଦ୍ରୀ : ତମେ ମିଛରେ ବ୍ୟସ୍ତ ହଉଚ । ଆମର ବିଶ୍ୱାସ ସେ ଲୋକ ସେମିତି କିଛି କାମ କରିବନି ।

ଅଳକା : ସେଇଆ ଭାବୁଥାଅ - ବାପାଙ୍କର ଯଦି କିଛି ହେଇଯାଏ - କେହି ତମ ଦୁଇଭାଇଙ୍କୁ କ୍ଷମା କରିବେନି ।

(ବାହାରୁ କଲିଂ ବେଲ୍‌ର ଶବ୍ଦ)

ଅକାରଣ : (ଭିତରୁ) ସନାତନ... ସନାତନ ଘରେ ଅଛୁନା... ?

ଶେଷାଦ୍ରୀ : ଅକାରଣ ମଉସାଙ୍କ ସର ଭଳି ଲାଗୁଛି ।

(ଅଳକା ଭିତରକୁ ଚାଲିଯାଏ, ବାହାରୁ ଆସନ୍ତି ଅକାରଣ ଓ ଶିବାନନ୍ଦ)

ଶେଷାଦ୍ରୀ ଓ ସୀମାଦ୍ରୀ : ନମସ୍କାର ମଉସା ।

ସୀମାଦ୍ରୀ : ଭିତରକୁ ଆସନ୍ତୁ ମଉସା ।

ଶେଷାଦ୍ରୀ : ଆସନ୍ତୁ ମଉସା ।



Digitized by PPRACHIN, SOA

ଅକାରଣ : (ଅକାରଣ ଓ ଶିବାନନ୍ଦ ପ୍ରବେଶ । ଅକାରଣ ହାତରେ ଖାମ୍) ବହୁତ ଦିନ ହେଲା ସନାତନ ସାଙ୍ଗରେ ଦେଖାହେଇନି ତ - ସେଇଥିପାଇଁ ଚାଲିଆସିଲୁ ।

ଶିବାନନ୍ଦ : କ'ଣ ହେଇଛି ତା' ଦେହ ପା ଠିକ୍ ଅଛି ତ ?

ସୀମାଦ୍ରୀ : ବାପା ତ କେବେ ଠୁ ବ୍ୟବସାୟ ସଂକ୍ରାନ୍ତରେ ବାହାରକୁ ଯାଇଛନ୍ତି । ଆମେ ଭାବିଥିଲୁ ଯିବା ପୂର୍ବରୁ ଆପଣମାନଙ୍କୁ କହିକି ଯାଇଥିବେ ।

ଶିବାନନ୍ଦ : କହିକି ଯାଇଥିଲେ ଆମେ ପଚାରନ୍ତୁ କାହିଁକି । ଆମର ଧାରଣା ଥିଲା ତୁମମାନଙ୍କ ଉପେର ଦାୟିତ୍ୱ ଦେଇ ସେ ବ୍ୟବସାୟ କଥା ଛାଡିଦେଇଥିଲା ।

ସୀମାଦ୍ରୀ : ନା' ମଉସା, ତାଙ୍କର ବିଭିନ୍ନ ମହଲରେ ବହୁତ ଦିନର ଜଣାଶୁଣା ଅଛି ତ...ଆମେ ତାଙ୍କୁ ସେଇଥିପାଇଁ ପଠେଇଛୁ । ତାଙ୍କ ଖାତିରିରେ କେତେଗୁଡେ କାମ ହେଇଯିବ ।

ଅକାରଣ : ଏବେ ସେ କୋଉଠି ?

ସୀମାଦ୍ରୀ : ଦୁଇଦିନ ତଳେ ମାଡ୍ରାସରେ ଥିଲେ...ଦରକାର ପଡିଲେ ସେଇଠି କାମ ସାରି ହାଇଦ୍ରାବାଦ ଦେଇ ଫେରିବେ ବୋଲି କହୁଥିଲେ ।

ଅକାରଣ : ତା'ହେଲେ ଠିକ୍ ଅଛି । ଅନେକ ଦିନରୁ ନ ଦେଖି ଆମେ ଭାବିଥିଲୁ ତା ଦେହ କିଛି ଖରାପ ଅଛି ।

ଶିବାନନ୍ଦ : ସନ'ତନ ଆସିଲେ ଆମକୁ ଟିକେ ଖବର ଦବ ।

ସୀମାଦ୍ରୀ : ହଁ ମଉସା ।

ଅକାରଣ : ଆମେ ତା ହେଲେ ଆସୁଚୁ ବାପା । ଆରେ ହଁ, ଏଇ ଚିଠିଟା ତୁମ ଗେଟ୍ ପାଖରେ ପଡିଥିଲା । (ଶେଷାଦ୍ରୀ ଚିଠି ନେଇଛି)

ଶେଷାଦ୍ରୀ : ଟିକେ ଚା' ପିଇଦେଇ ଯିବେନି ମଉସା ।

ଶିବାନନ୍ଦ : ନାଇଁ ନାଇଁ । ଆମେ ବାଟରେ ପିଇକି ଆସିଚୁ । (ଅକାରଣ ଓ ଶିବାନନ୍ଦ ଚାଲିଯାଆନ୍ତି ତାଙ୍କ ସହିତ ସୀମାଦ୍ରୀ ଯାଇ ବାଟେଇ ଦେଇ ଫେରିଆସେ)



Digitized by PPRACHIN, SOA

ଶେଷାଦ୍ରୀ : ମଉସାମାନଙ୍କୁ ଦେଖି ମୁଁ ତ ପୁରା ଡରିଯାଇଥିଲି । ଦେଖିଲି ତମେ ବଡ଼ ଆରାମରେ ବୁଝେଇ ଦେଲ ଯେ ବାପା ବ୍ୟବସାୟ ସଂକ୍ରାନ୍ତରେ ବାହାରକୁ ଯାଇଚନ୍ତି ।

ସୀମାଦ୍ରୀ : ଆରେ ଆମେ ଯେମିତି ଅବସ୍ଥାରେ ଅଛେ, ମିଛ କହିବା ଛଡା ଆଉ କ'ଣ କହିଥାନ୍ତି ।

ଶେଷାଦ୍ରୀ : ଭାଇ ଏଇଟା ତୁମ ନାଁରେ ଆସିଛି । **(ଶେଷ ଖାମ୍‌ଟା ସୀମାଦ୍ରୀଙ୍କୁ ଦିଏ)**

ସୀମାଦ୍ରୀ : ମୋ ନାଁରେ ?... **(ସୀମାଦ୍ରୀ ଖାମ୍ ଖୋଲି ଚିଠି ଉପରେ ଆଖି ବୁଲେଇ ନିଅନ୍ତି ଚିଠିର ଭାଷା ଗଜାନନ କଣ୍ଠରୁ ଶୁଣାଯାଏ)**

ସୀମାଦ୍ରୀ : **(ଚିଠି ପଢୁଛି, ଭିତରୁ ଗଜାନନ ର କଣ୍ଠସ୍ୱର)** ସୀମାଦ୍ରୀ ବାବୁ - ଆପଣ ମୋ ସହିତ ବିଶ୍ୱାସଘାତକତା କରିଛନ୍ତି । ଫଳସ୍ୱରୂପ ୨୪ ଘଣ୍ଟା ଭିତରେ ୪୦ ଲକ୍ଷ ଟଙ୍କା ଦାଖଲ କରିବାକୁ ପ୍ରସ୍ତୁତ ହୁଅନ୍ତୁ । କାରଣ ବିଶାଖାପାଟଣାରେ ପଢୁଥିବା ଆପଣଙ୍କ ପୁଅ - 'ଅସୀମ ଅନିକେତ' ଆମ ପାଖରେ ପଣବନ୍ଦୀ । ମନେରଖନ୍ତୁ ୨୫ ନୁହେଁ ୪୦ ଲକ୍ଷ । ଟଙ୍କାଟା କୋଉଠି କେମିତି ନିଆଯିବ କିଛି ଘଣ୍ଟା ପରେ ଆମେ କହୁଛୁ - **(ସୀମାଦ୍ରୀ ଚିଠି ପଢୁ ପଢୁ ଥକ୍କାମାରି ବସି ଯାଆନ୍ତି)**

ଶେଷାଦ୍ରୀ : କ'ଣ ହେଲା ? ଚିଠି କିଏ ଦେଇଚି ? **(ସୀମାଦ୍ରୀ ହାତରୁ ଶେଷାଦ୍ରୀ ଚିଠିଟେ ନେଇ ପଢିଛି)** ସୀମାଦ୍ରୀ ବାବୁ ଆପଣ ମୋ ସହିତ ବିଶ୍ୱାସଘାତକତା କରିଛନ୍ତି । ଫଳସ୍ୱରୂପ ୨୪ ଘଣ୍ଟା ଭିତରେ ୪୦ ଲକ୍ଷ ଟଙ୍କା ଦାଖଲ କରିବାକୁ ପ୍ରସ୍ତୁତ ହୁଅନ୍ତୁ । (ପରେ ପରେ ଚିଠି ଉପରେ କେବଳ ଆଖି ବୁଲାଇ ନିଅନ୍ତି) ସବୁ ଗଡବଡ ହେଇଗଲା - ରାସ୍କେଲଟା ଏତେ ଧୂର୍ତ୍ତ...ଆମ ପୁଅକୁ ତା' ସ୍କୁଲରୁ ଉଠେଇ ନେଇଛି ।

ସୀମାଦ୍ରୀ : (ଚୁପ୍ ରହିବାକୁ ଇଙ୍ଗିତ କରି) ରହ... ତୋ ଭାଉଜ ଆସୁଚି ।



Digitized by PPRACHIN, SOA

ଶେଷାଦ୍ରୀ : (ଚିଠିଟାକୁ ପକେଟରେ ଲୁଚେଇ ଦିଏ)

ଅଳକା : ମୋତେ ଦେଖି ଦୁଇଭାଇ ଯାକ ଚୁପ୍ ହେଇଗଲ ଯେ, ଚିଠିଟା କିଏ ଦେଇଛି।

ଶେଷାଦ୍ରୀ : ସେଇଟା - ସେଇଟା ଭାଇଙ୍କର ଅଫିସିଆଲ୍ ଚିଠି। ତୁମର ଜାଣିବା ଦରକାର ନାହିଁ।

ଅଳକା : ନାଁ - ତୁମେମାନେ ମୋତେ କିଛି ଲୁଚଉଛ, ମୋତେ ଦେଖି ସେଇଟା କାହିଁକି ପକେଟରେ ପୂରେଇଲ ?

ଶେଷାଦ୍ରୀ : ନାଇଁ ଭାଉଜ... ବିଶ୍ୱାସ କରନ୍ତୁ, ସେଇଟା ଗୋଟେ ଅଫିସିଆଲ୍ ଲେଟର।

ଅଳକା : ଅଫିସିଆଲ୍ ଲେଟର୍ ତ, ମୁଁ ପଢିବାରେ କିଛି ଅସୁବିଧା ନାହିଁ। ଦେଲ... ଲେଟରଟା ଦେଲ... ଦିଅ।
(ଅଳକା ଚିଠି ନେଇ ପଢୁ ପଢୁ ମୁଣ୍ଡ ଚକ୍କର୍ ଦିଏ - ନିଜକୁ ସମ୍ଭାଳି ନପାରି ତଳେ ପଡି ଯାଉ ଯାଉ ସୀମାଦ୍ରୀ ଉଠିଆସି ସମ୍ଭାଳି ନିଏ।)

ସୀମାଦ୍ରୀ : ପାଣି ଟିକେ ଆଣିଲୁ ଜଲଦି।

ଶେଷାଦ୍ରୀ : (ଭିତରକୁ ଦୌଡି ଯାଇ ପାଣି ଆଣେ। ଦୁହେଁ ପାଣି ଛିଞ୍ଚି ଅଳକାର ଚେତା ଫେରେଇ ଆଣିବା ପାଇଁ ଚେଷ୍ଟା କରିନ୍ତି।

ସୀମାଦ୍ରୀ : ଚାଲ ଭିତରକୁ ନେଇଯିବା। **(ଦୁହେଁ ମିଶି ଅଳକାକୁ ଭିତରକୁ ନେଇଯାଆନ୍ତି। ଏଇ ସମୟରେ ଫୋନ୍ ଆସେ, ଶେଷ ଆସି ଫୋନ୍ ଧରେ)** ହାଲୋ କିଏ କହୁଛନ୍ତି ?

ଗଜାନନ : (ଭିତରୁ) ଏହା ଭିତରେ ଚିଠିଟା ପାଇଯାଇଥିବେ ଶେଷ ବାବୁ।

ଶେଷାଦ୍ରୀ : (ଫୋନ୍ ମୁହଁ ବନ୍ଦ କରି) ଭାଇ, ସେ ଲୋକର ଫୋନ୍।

(ସୀମାଦ୍ରୀ ଆସେ)

ସୀମାଦ୍ରୀ : (ଶେଷାଦ୍ରୀ ପାଖରୁ ଫୋନ୍ ନେଇ) ମୋ ପୁଅକୁ ନେଇ କୋଉଠି ରଖିଛୁ ରାସ୍କେଲ୍। ପ୍ରଥମେ କହ ତା' ଅବସ୍ଥା କେମିତି ଅଛି ?



Digitized by PPRACHIN, SOA

ଗଜାନନ : କାହିଁ, ବାପାର ଅବସ୍ଥା କେମିତି ଅଛି ପଚାରୁ ନାହାଁନ୍ତି । ଓଃ ସେ ବୁଢାଲୋକ... ଅଦରକାରୀ । ପୁଅ ଯେ କୁଳପ୍ରଦୀପ...

ସୀମାଦ୍ରୀ : ଠିକ୍ ଅଛି କୋଉଠି ଟଙ୍କା ଦିଆଯିବ କହ ?

ଗଜାନନ : ୪୦ ଲକ୍ଷରୁ ଗୋଟିଏ ଟଙ୍କା ଯେମିତି କମ୍ ନହୁଏ ।

ସୀମାଦ୍ରୀ : ହଁ ହଁ ୪୦ ଲକ୍ଷ । ଜାଗାଟା କହ ।

ଗଜାନନ : ବ୍ୟସ୍ତ ହୁଅନ୍ତୁନି । ୨୪ ଘଣ୍ଟା ଭିତରେ ଜାଗାଟା ନିଶ୍ଚୟ ଜାଣିପାରିବେ । ଟଙ୍କାଟା ରେଡି କରନ୍ତୁ । ନମସ୍କାର ।

**(ଧିରେ ଧିରେ ଉଭୟ ଜୋନ୍‌ରୁ ଆଲୋକ ଲିଭିଆସେ)**

(ଅନ୍ଧାର)





Digitized by PPRACHIN, SOA

## ଶେଷ ଦୃଶ୍ୟ

(ପୂର୍ବବର୍ଣ୍ଣିତ ସେଇ ପାର୍କର ଦୃଶ୍ୟ । ଅପହରଣକାରୀ ଅଜା ଓ ନାତକୁ ସେଇ ପାର୍କରେ ଛାଡିଦେଇ ଯାଇଛନ୍ତି । ସମୟ ଭୋର୍ । ଗୋଟିଏ ବେଞ୍ଚରେ ସନାତନ କୋଳରେ ଅସୀମ ଶୋଇରହିଛି ।)

ଅସୀମ : ତୁମେ ଶୋଇନ ଜେଜେ ।

ସନାତନ : ଶୋଇଥିଲି, ଏବେ ଉଠିପଡିଛି । ସକାଳ ହେବାକୁ ଆହୁରି ବାକି ଅଛି । ତୁ ଶୋଇପଡ ।

ଅସୀମ : ସକାଳ ହେଲେ ଆମେ ଏଠୁ ଚାଲିଯିବା ନା ଜେଜେ ।

ସନାତନ : ହଁ, ମୁଁ ମୋ ସାଙ୍ଗମାନଙ୍କୁ ଖବର ଦେଇଚି, ସେମାନେ ଆସିଲେ ଚାଲିଯିବା ।

ଅସୀମ : ସେମାନେ କେତେବେଳେ ଆସିବେ ?

ସନାତନ : ଆସୁଥିବେ, ତୁ ଶୋଇଯା । ସେମାନେ ଆସିଲେ ମୁଁ ତୋତେ ଉଠାଇ ଦେବି । **(ବାହାରେ କିଛି ଲୋକଙ୍କ କଥାବାର୍ତ୍ତା ଶୁଣାଯାଏ । ଶେଷାଦ୍ରୀ, ସୀମାଦ୍ରୀ ଓ ଅଳକା ନିଜ ଭିତରେ କଥାବାର୍ତ୍ତା ହେଇ ଅଜା ଆଉ ନାତିଙ୍କୁ ଖୋଜୁଥାନ୍ତି ।)**

ସନାତନ : ଉଠିଲୁ ବାପା ଉଠ୍ । ଦେଖେ ତ କାହାର ପାଟି ଶୁଭୁଚି । **(ଏଇ ସମୟରେ ଶେଷାଦ୍ରୀ, ସୀମାଦ୍ରୀ ଓ ଅଳକା ଆସିଛନ୍ତି)**

ଅସୀମ : ମମି !

ଅଳକା : **(ଅଳକା ପୁଅକୁ କୋଳେଇ ନେଇ କୋହଭରା କଣ୍ଠରେ)** ମୋ ବାପାରେ... ତୁ ଠିକ୍ ଅଛୁତ ? **(ଅନିକେତକୁ ଚୁମା ପରେ ଚୁମା ଦେଇ ଚାଲନ୍ତି ।)**

ସୀମାଦ୍ରୀ : ବାପା ଆପଣଙ୍କର କିଛି ଅସୁବିଧା ହେଇନି ତ ।



Digitized by PPRACHIN, SOA

ଶେଷାଦ୍ରୀ : ତା' ସର୍ତ୍ତ ଆମେ ପୂରଣ କରିଦେଇଛୁ ବାପା । ଆମେ ଏବେ ଚାଲିଯିବା ।

ଅଳକା : ତମର ଆଉ କିଛି ହେବନି ବାପା, ଆମେ ସମସ୍ତେ ଚାଲିଆସିଛୁ ।

ଅସୀମ : ଆମେ ସମସ୍ତେ ଏବେ ଘରକୁ ଯିବା ନା ମମି ।

ଅଳକା : ହଁ, ସେଇଥି ପାଇଁ ତ ଆମେ ଆସିଛୁ ।

ସୀମାଦ୍ରୀ : ଚାଲନ୍ତୁ ବାପା... ଆଉ ଡେରି କରିବାନି । ଚାଲନ୍ତୁ...

ସନାତନ : କୁଆଡେ ?

ସୀମାଦ୍ରୀ : ଘରକୁ ଚାଲିଯିବା ।

ସନାତନ : ଘରକୁ ? କାହା ଘରକୁ ଚାଲିଯିବା ? ମୁଁ ତ ତମମାନଙ୍କ ଘରକୁ ଯାଇପାରିବିନି ?

ଶେଷାଦ୍ରୀ : ଆପଣ ଆପଣଙ୍କ ଘରକୁ ଯିବେ ବାପା ।

ସୀମାଦ୍ରୀ : ଆପଣଙ୍କର ତ ସବୁକିଛି ।

ସନାତନ : ସେସବୁ ମୋର କେବେ ଥିଲା । ଏବେ ସେସବୁ ମୋର ନୁହେଁ । ଯାହା ମୋର ହେଇ ନାହିଁ । ସେଠିକି ଗଲେ ମୁଁ ତ ଅଣନିଶ୍ୱାସୀ ହେଇଯିବି ।

ସୀମାଦ୍ରୀ : ଏତେଗୁଡାଏ ଟଙ୍କା ଯୋଗାଡ କରିବାକୁ ସମୟ ଲାଗିଲା ବାପା ।

ସନାତନ : କିଛି ସଫେଇ ଦେବା ଦରକାର ନାହିଁ । ବାପାକୁ ମୁକ୍ତ କରିବାକୁ ତୁମେ ମାସେ ସମୟ ନେଲ - ହେଲେ ପାରିଲନି । ଅଥଚ ନିଜ ପୁଅ ପାଇଁ... ଗୋଟିଏ ଙ୍ଗସେଇ ହାତରେ ମୋତେ ଛାଡିଦେଇ ତୁମେମାନେ ଶାନ୍ତିରେ ଶୋଇରହିଲ କେମିତି ? ଏଇଥିପାଇଁ ନା - ତୁମ ପାଇଁ ଗୋଟେ ବୁଢା ବାପାର କିଛି ଆବଶ୍ୟକତା ନାହିଁ ।

ଶେଷାଦ୍ରୀ : ଆମେ ସେମିତି କିଛି ଭାବିନୁ ବାପା... ଆପଣ ମିଛରେ ।

ସୀମାଦ୍ରୀ : ଆମକୁ ଟିକେ ବୁଝିବାକୁ ଚେଷ୍ଟା କରନ୍ତୁ ବାପା ।

ସନାତନ : ଢେର ବୁଝିଛି । ଆଉ ବୁଝିବା ଦରକାର ନାହିଁ । ତୁମେମାନେ ଅସୀମକୁ ନେଇ ଚାଲିଯାଅ, ମୋ କଥା ମୁଁ ବୁଝିବି । ହେଇ ମୋ



Digitized by PPRACHIN, SOA

ବନ୍ଧୁମାନେ ଆସିଲେଣି ମୁଁ ତାଙ୍କ ସହିତ ଚାଲିଯିବି । **(ଅକାରଣ ଓ ଶିବାନନ୍ଦ ଆସନ୍ତି)**

ଅଳକା : ଆପଣ ଆମକୁ ଛାଡି କୁଆଡେ ଯିବେ ବାପା । ଆପଣଙ୍କ ବିନା ଏମାନଙ୍କର ଦୁନିଆରେ ଯେ କିଛି ପରିଚୟ ନାହିଁ ।

ସୀମାଦ୍ରୀ : ସେ ଲୋକ ଆପଣଙ୍କୁ କିଛି ଖରାପ ବ୍ୟବହାର କରୁନି ବୋଲି ଆପଣ ସେଦିନ ଫୋନ୍‌ରେ କହିଲେ । ଆମର ବିଶ୍ୱାସ ହେଇଗଲା ଯେ ଅପହରଣକାରୀର ଲୋଭ ଟଙ୍କା ଉପରେ । ସେଇଥିପାଇଁ...।

ସନାତନ : ସେଇଥିପାଇଁ ବାପାର ଜୀବନ ନେଇ ବ୍ୟବସାୟ ଆରମ୍ଭ କରିଦେଲ । କିଛି ଟଙ୍କା କମିଗଲେ ମୁନାଫା ମିଳିଯିବ । ଏୟାନା ? ହେଲେ କ'ଣ ପାଇଲ... ? ତୁମେ ତା' ସହିତ ସମୟ ଗଡେଇ ଖେଳିବାକୁ ଲାଗିଲ, ସେ ସୁଧମୂଳ ସହ ଦୁଇଗୁଣ ଟଙ୍କା ନେଇ ଚାଲିଗଲା । ଏବେ ମୁଁ ବୁଝୁଛି - ସେ ମୋତେ ସିନା ସାମୟିକ ଭାବେ ପଣବନ୍ଦୀ କରି ରଖିଥିଲା, ହେଲେ ତୁମମାନଙ୍କ ସ୍ୱାର୍ଥ, ତମର ସର୍ବଗ୍ରାସୀ ଲୋଭ, ତମର ହୃଦୟ, ତମର ବିବେକ ପଣିଆକୁ ଅପହରଣ କରି ନେଇ ପଣବନ୍ଦୀ କରି ରଖିଛି ।

ସୀମାଦ୍ରୀ : ବାପା !

ସନାତନ : ସମସ୍ତେ ଜାଣି ରଖ, ତୁମମାନଙ୍କୁ ଉଚିତ୍ ଶିକ୍ଷା ଦେବାପାଇଁ, ମୁଁ ନିଜେ ଯାଇ ଅସୀମକୁ ତା' ସ୍କୁଲରୁ ନେଇ ଆସିଥିଲି । ମୋ ନିର୍ଦ୍ଦେଶରେ ସେ ଲୋକ ଅସୀମକୁ ପଣବନ୍ଦୀ କରିଛି ବୋଲି ତୁମକୁ ଧମକ ଦେଉଥିଲା । **(''ମୁଁ ନିଜେ ଯାଇ... ଧମକ ଦେଉଥିଲା'' । ସଂଳାପର ଏଇତ ଅଂଶ ବାରମ୍ବାର ପ୍ରତିଧ୍ୱନିତ ହେଉଥାଏ ।)**

ଅଳକା : ବାପା, ଆପଣ ନିଜେ ଯାଇ ଅସୀମକୁ ନେଇଆସିଛନ୍ତି ।

ସନାତନ : ହଁ, ଗାର୍ଡିଅନ ଭାବେ ମୋ ନାଁ, ଫଟୋ ସବୁ ସେଠି ଦେଇଥିଲ, ତେଣୁ ସାନୁକୁ ଆଣିବାକୁ କିଛି ଅସୁବିଧା ହେଲାନି । ଏ କାମରେ



Digitized by PPRACHIN, SOA

ଅପହରଣକାରୀର କୌଣସି ଭୂମିକା ନଥିଲା...। ତା' ବାପାଙ୍କ ଚିକିତ୍ସା ପାଇଁ ତା'ରି କିଛି ଟଙ୍କାର ଆବଶ୍ୟକତା ଥିଲା... ତେଣୁ ସେ ମୋ ନିର୍ଦ୍ଦେଶରେ କାମ କରୁଥିଲା। ତୁମେମାନେ ଅସୀମକୁ ନେଇ ଚାଲିଯାଅ, ମୁଁ ମୋ ବନ୍ଧୁମାନଙ୍କ ସହିତ ଚାଲିଯିବି।

ସୀମାଦ୍ରୀ : ମଉସା (ଅକାରଣକୁ) ଆପଣ ବାପାଙ୍କୁ ବୁଝାନ୍ତୁ। ଆମ ଉପରେ ଅଭିମାନ କରି ଚାଲିଗଲେ ସମାଜ ଭିତରେ ଆମେ ମୁଣ୍ଡଟେକି ଚାଲିପାରିବୁନି।

ଶେଷାଦ୍ରୀ : ଆମର ପ୍ରକୃତରେ ଭୁଲ୍ ହେଇଯାଇଛି । ଆମେ ସେଥିପାଇଁ ଅନୁତପ୍ତ।

ଅକାରଣ : ପିଲାମାନେ ସେମାନଙ୍କର ଭୁଲ୍ ବୁଝିପାରିଛନ୍ତି ସନାତନ। ତାଙ୍କୁ କ୍ଷମା କରିଦେ, ଯେତେହେଲେ ସେମାନେ ତୋର ପିଲା।

ସନାତନ : ଏସବୁ ସାମୟିକ ଭାବପ୍ରବଣତାରେ ମୁଁ କେବେବି ଭାସିଯିବିନି ବୋଲି ନିଷ୍ପତ୍ତି ନେଇଛି। ମୁଁ ଏବେ ବୁଝିପାରିଛି ଯେ ଆଜିକାଲିର ସବୁପିଲା ସମାନ । ସେମାନଙ୍କ ସାମନାରେ ଅର୍ଥ ହେଉଛି ସବୁକିଛି। ପିତାମାତାଙ୍କ ତ୍ୟାଗର କୌଣସି ମୂଲ୍ୟ ନାହିଁ। ସମାଜ ଭିତରେ ମୁଣ୍ଡ ଟେକି ଚାଲିପାରିବେନି ବୋଲି, ଭୁଲ୍ - ଅନୁତାପର ନାଁ ଦେଇ ମିଛିମିଛିକା ଆବେଗ ଦେଖାଉଛନ୍ତି । ମୁଁ ସେଥିରେ ଭୁଲିଯିବାର ଲୋକ ନୁହେଁ। ଅପହରଣକାରୀ ତା'ର ଯେତିକି ଟଙ୍କା ଦରକାର ସେତିକି ନେଇ ବାକି ଟଙ୍କା ଛାଡିଯାଇଛି । ମୁଁ ଠିକ୍ କରିଛି ମୋ ଭଳି ଅସହାୟମାନଙ୍କ ପାଇଁ କିଛି କରିବି।

ଶିବାନନ୍ଦ : ତା'ମାନେ ତୁ ମୋ ହୃଦୟର ଦୁଃଖକୁ ଶେଷରେ ବୁଝିପାରିଲୁ ସନାତନ...।

ସନାତନ : ହଁ, ସେଦିନ ତୋ ପୁଅବୋହୁଙ୍କ ସହିତ କିଛି ସାଲିସ୍ କରିନେବାକୁ ଉପଦେଶ ଦେଉଥିଲି, ହେଲେ ଆଜି ବୁଝିଛି - ଯେ ଏସବୁ ଅସହ୍ୟ । ଯେତେ ଯାହା କଲେବି ମଣିଷ ବୁଢା ହେଇଗଲେ ପିଲାମାନଙ୍କ ପାଇଁ ବୋଝ ହେଇଯାଏ। ଅଦରକାରୀ, ଅଲୋଡା



Digitized by PPRACHIN, SOA

ହେଇଯାଏ । କୋଟି କୋଟି ଟଙ୍କାର ସମ୍ପତ୍ତି ପୁଅମାନଙ୍କ ହାତରେ ଟେକି ଦେଇ ଭାବୁଥିଲି ଯେ ସେମାନେ ବାପା ପାଖରେ ଚିରଦିନ କୃତଜ୍ଞ ରହିବେ । ହେଲେ ବାପାର ଜୀବନ ଅପେକ୍ଷା ଟଙ୍କା ସେମାନଙ୍କୁ ଅଧିକ ପ୍ରିୟ ଲାଗିଲା । ଗୋଟେ ବୁଢା ବାପା କେତେ ନିସ୍ୱ, କେତେ ଅସହାୟ ଆଜି ବୁଝିପାରିଛି । ଆମ ଓଡିଆରେ ଗୋଟେ ଢଗ ଅଛି । 'ହଡା ବଳଦ ବୁଢାବାପା - ଯେତେ ଢଳଦି ବିଦା ସେତିକି ନଫା' । ଆମମାନଙ୍କର ଅବସ୍ଥା ବର୍ତ୍ତମାନ ସେୟା । ଆମେମାନେ ପିଲାମାନଙ୍କ ଆଗରେ ଗୋଟେ ଗୋଟେ ଅକାମି ହଡା ବଳଦ । ହେଲେ ମୁଁ ହାରିଯିବା ଲୋକ ନୁହେଁ ଶିବା, ଆମ ଭଳି ଅଲୋଡାମାନଙ୍କ ପାଇଁ ମୁଁ ଏକ ଆଶ୍ରୟସ୍ଥଳର ପରିକଳ୍ପନା କରିଛି । ସେଇଟା ଠିଆ କିରବା ପାଇଁ ମୋତେ ଶକ୍ତି, ସାମର୍ଥ୍ୟ ଦେବାରେ ଭଗବାନ କେବେ କୁଣ୍ଠାବୋଧ କରିବେନି, ସେ ବିଶ୍ୱାସ ମୋର ଅଛି ।

ସୀମାଦ୍ରୀ : ଏ ବୟସରେ ଆପଣଙ୍କର ସେବା ଶୁଶ୍ରୂଷା ଦରକାର ବାପା । ସେଥିରୁ ଆମକୁ ବଞ୍ଚିତ କରନ୍ତୁ ନି । ଦୟାକରି... ଆମ ସହିତ ଚାଲନ୍ତୁ ।

ସନାତନ : ସେବା ପାଇବା ଆଶାରେ ମୁଁ ମୋ ନିଷ୍ପତ୍ତି ବଦଳାଇ ପାରିବିନି । ସେବା ଅପେକ୍ଷା ଶାନ୍ତି ମୋ ପାଇଁ ଅଧିକ ମୂଲ୍ୟବାନ ।

ଅଳକା :
ସୀମାଦ୍ରୀ :
ଶେଷାଦ୍ରୀ : (ସନାତନଙ୍କ ଗୋଡ ପାଖରେ ବସିଯାଇ) ନା' ବାପା... ଆପଣ ଆମକୁ କ୍ଷମା ନକଲେ, ଭଗବାନ ଆମକୁ କେବେବି କ୍ଷମା କରିବେନି । ଆମ ପ୍ରତି ଏତେଟା ନିର୍ଦ୍ଦୟ ହୁଅନ୍ତୁନି ।

ସନାତନ : ପ୍ରଥମରୁ କହିଛି ଭାବାବେଗରେ ନ ଭୁଲି, ମୋ କଥାରେ ମୁଁ ଅଟଳ ରହିବି । ମୁଁ ଯିବି - ହଁ ଯିବି । ହଁ, ଯଦି କିଛି ସାହାଯ୍ୟ କରିବାକୁ ଚାହଁ, ଅନ୍ତତଃ ଗୋଟେ ମାସ ଭିତରେ ମୋ ଘର ଛାଡି ତୁମେ ନିଜନିଜ ଘରକୁ ଚାଲିଯାଅ । ସେଇଠି ମୁଁ ଗୋଟେ ଆଶ୍ରୟସ୍ଥଳିର କାର୍ଯ୍ୟ ଆରମ୍ଭ କରିବି । ଯେଉଁମାନେ ନିଜ ପିଲାମାନଙ୍କ ଦ୍ୱାରା ମୋ ଭଳି ଅଲୋଡା ହୋଇଯିବେ ସେ ଆଶ୍ରୟସ୍ଥଳି ହେବ ସେଇମାନଙ୍କ ଶେଷଠିକଣା ।



Digitized by PPRACHIN, SOA

(ସନାତନ ଅକାରଣ ଓ ଶିବାନନ୍ଦକୁ ଚାହିଁ ହାତ ଠାରି) ଚାଲ - ଆମେ ବାହାରିଯିବା ।

ଅସୀମ : ତୁମ ସହିତ ମୁଁ ଯିବି ଜେଜେ - ମୋତେ ସାଙ୍ଗରେ ନେଇଯାଅ ।

ସନାତନ : ନା'ରେ ବାପା, ତୋ ବାପା ଦାଦା ସିନା ମୋ ଜୀବନ ନେଇ ବ୍ୟବସାୟ କରୁଥିଲେ ହେଲେ ତୁ ସେମାନଙ୍କ ପାଖରେ ରହ । ସେମାନେ ଯେତେବେଳେ ମୋ ଭଳି ଅସହାୟ ହେଇଯିବେ ତାଙ୍କୁ ହେଲେ ସାହାଯ୍ୟ କରିବୁ ।

ଅସୀମ : ନା' ଜେଜେ - ମୁଁ ତୁମ ସାଙ୍ଗରେ ଯିବି ।

ସନାତନ : ଅନ୍ଧମୁନି - ଶ୍ରବଣ କୁମାର କାହାଣୀ ଶୁଣିଲା ଦିନ - ତୁ ମୋତେ କଥା ଦେଇଥିଲୁ... ତୋ ଡାଡି, ମମି ବୁଢାବୁଢୀ ହେଇଗଲେ ତାଙ୍କର ସେବା କରିବୁ । ସେ ପ୍ରମିସ୍ ରଖିବୁନି ?

ଅସୀମ : (କୋହ ଭରା କଣ୍ଠରେ) ସେମାନେ ତ ଏବେ ବୁଢାବୁଢୀ ହେଇନାହାଁନ୍ତି - ତୁମେ ହେଇଯାଇଛ । ତୁମେ ମୋର ବୁଢା ଜେଜେବାପା - ମୁଁ ତୁମ ସେବା କରିବି । କୁହ - ତୁମେ ମୋ ସହିତ ଘରକୁ ଯିବ କି ନାହିଁ ?

ସନାତନ : ତୁ ତ କାଲି ସ୍କୁଲକୁ ଚାଲିଯିବୁ । ତୁ ଗଲାପରେ ମୁଁ ଯେମିତି ଏକାକୁ ସେମିତି ଏକା ହେଇ ରହିଯିବି ।

ଅସୀମ : (କାନ୍ଦି କାନ୍ଦି) ନା' ନା'... ମୁଁ ତୁମକୁ ଛାଡିବିନି । କେବେ ଛାଡିବିନି । **(ଅସୀମ ସନାତନକୁ କୁଣ୍ଢେଇଧରି କାନ୍ଦିଉଠେ ଓ ଟାଣିଧରେ । ସନାତନ ବୁଲି ତାଙ୍କୁ ଚାହିଁ ରୁହନ୍ତି । ନିଜର କୋହ ସମ୍ଭାଳି ନପାରି ଭୋ ଭୋ ହୋଇ କାନ୍ଦି ଉଠନ୍ତି । ପରେ ପରେ ତାକୁ କୋଳେଇ ନିଅନ୍ତି । ସେମାନେ କାନ୍ଦୁଥାନ୍ତି । ମଞ୍ଚ ଧିରେ ଧିରେ ଅନ୍ଧାର ହୋଇଯାଏ ।)**





Digitized by PPRACHIN, SOA

**'କଲଚରାଲ୍ ଏକାଡେମୀ' ରାଉରକେଲା ର ସୁବର୍ଣ୍ଣ ଜୟନ୍ତୀ ସମାରୋହ ଅବସରରେ**

**'ପ୍ରତିଧ୍ୱନି, ରାଉରକେଲା' ଦ୍ୱାରା ପ୍ରସ୍ତୁତ 'ଶେଷଠିକଣା' ନାଟକରେ ଅଂଶଗ୍ରହଣ କରିଥିବା ଶିଳ୍ପୀମାନେ**

| **ଚରିତ୍ର** | | **ଶିଳ୍ପୀଙ୍କ ନାମ** |
|---|---|---|
| ସନାତନ | : | ଲକ୍ଷ୍ମୀନାରାୟଣ ତ୍ରିପାଠୀ |
| ଅକାରଣ | : | ମନୋରଞ୍ଜନ ବକ୍ସି |
| ଶିବାନନ୍ଦ | : | ଅମୂଲ୍ୟ ପାତ୍ର |
| ସୀମାଦ୍ରୀ | : | ତାପସ ଶତପଥି |
| ଶେଷାଦ୍ରୀ | : | ଅକ୍ଷୟ ମହାନ୍ତି |
| ଯୋଗେଶ | : | ରମେଶ ଚନ୍ଦ୍ର ମହାନ୍ତି |
| ଗଜାନନ | : | ଶରତ ଦାସ |
| ଅଳକା | : | ପ୍ରିୟଦର୍ଶିନୀ ମହାନ୍ତି |
| *ସାଧିକା | : | ନୀତା ଗୋସାମୀ |
| ଅସୀମ (ଶିଶୁ) | : | ରିତିଶ ମହାନ୍ତି |

**ମଞ୍ଚ ଅନ୍ତରାଳେ**

| | | |
|---|---|---|
| ସଂଗୀତ | : | ପ୍ରଦୀପ ଗୁରୁୱାରା |
| ମଞ୍ଚସଜ୍ଜା | : | ଗୌରାଙ୍ଗ ମହାରଣା ଓ ଅକ୍ଷୟ ମହାନ୍ତି |
| ରୂପସଜ୍ଜା | : | ବଟକୃଷ୍ଣ ସାଇଁ |
| ଆଲୋକ | : | ଶାରଦା ସାଇଁ ଓ ପ୍ରଫୁଲ୍ଲ ସେଠୀ |
| ମଞ୍ଚ ପରିଚାଳନା | : | ପ୍ରତିଧ୍ୱନି ପରିବାର |
| **ନିର୍ଦ୍ଦେଶନା** | : | **ଶରତ ଦାସ** |

ସ୍ଥାନ - ସିଭିକ୍ ସେଣ୍ଟର, ରାଉରକେଲା - ତା ୧୮.୦୪.୨୦୧୨ (ବୁଧବାର)

*ସାଧିକା ଚରିତ୍ରଟି ବଦଳାଇ ପରେ ରଥଶର୍ମା ଚରିତ୍ର ଯୋଗ କରାଯାଇଅଛି ।



Digitized by PPRACHIN, SOA

ପୁରୀ ଠାରେ ଓଡିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ଆୟୋଜିତ
ଜୋନ୍‌ସ୍ତରୀୟ ନାଟ୍ୟ ପ୍ରତିଯୋଗିତା - ୨୦୧୪
ଓ
ବ୍ରହ୍ମପୁର ଠାରେ ଗଞ୍ଜାମ ଜିଲ୍ଲା ନାଟକ ସମାରୋହ ସମିତି ଦ୍ୱାରା ଆୟୋଜିତ ରାଜ୍ୟସ୍ତରୀୟ ନାଟ୍ୟ ମହୋତ୍ସବ - ୨୦୧୪ ଏବଂ କଳାପରିଷଦ, ଢେଙ୍କାନାଳର ୩୪ତମ ବାର୍ଷିକ ଉତ୍ସବ ତଥା ରାଜ୍ୟସ୍ତରୀୟ ନାଟ୍ୟମହୋତ୍ସବ ୨୦୧୪ ଅବସରରେ ଏଇ ନାଟ୍ୟସଂସ୍ଥାର ଅଂଶଗ୍ରହଣ କରିଥିବା ଶିଳ୍ପୀମାନେ...

| ଚରିତ୍ର | | ଶିଳ୍ପୀମାନଙ୍କ ନାମ |
|---|---|---|
| ସନାତନ | | ଶରତ କୁମାର ମାଝୀ |
| ଅକାରଣ | : | ମନ୍ମଥ ପଟ୍ଟନାୟକ |
| ଶିବାନନ୍ଦ | : | ପ୍ରବୀର ମହାନ୍ତି |
| ସୀମାଦ୍ରୀ | : | ପ୍ରସନ୍ନ କୁମାର ପାଣି |
| ଶେଷାଦ୍ରୀ | : | ମନୋରଞ୍ଜନ ସିଂ |
| ଯୋଗେଶ | : | ବିନୋଦ ମହାନ୍ତି |
| ଗଜାନନ | : | ଶତ୍ରୁଘ୍ନ ମାଟି |
| ରଥଶର୍ମା | : | ସୁରେଶ ମହାନ୍ତି (ପରେ) ଅମ୍ବିକା ପଟ୍ଟନାୟକ |
| ଅଳକା | : | କନିଜ୍ ଫାତ୍‌ମା (କୁନୁ) |
| ଅସୀମ (ଶିଶୁ) | : | ଆୟୁଷ୍ମାନ ପ୍ରିୟରଞ୍ଜନ ପଟ୍ଟନାୟକ (ଲିଙ୍କୁ) |

**ମଞ୍ଚ ଅନ୍ତରାଳେ**

| | | |
|---|---|---|
| ସଂଗୀତ | : | ମଣ୍ଟୁ ଓ ପୁଣ୍ଟୁ |
| ମଞ୍ଚସଜ୍ଜା | : | ବାବୁଜୀ ମହାନ୍ତି ଓ ସନ୍ତୋଷ ସାହୁ |
| ମଞ୍ଚ ପରିଚାଳନା | : | ଜୟନ୍ତ ବର୍ମା ଓ ତପନ ସାହୁ |
| **ନିର୍ଦ୍ଦେଶନା** | : | **ଦିଲ୍ଲୀଶ୍ୱର ମହାରଣା** |

●

ସ୍ଥାନ - ପୌରସଦନ ପ୍ରେକ୍ଷାଳୟ, ପୁରୀ - ତା ୧୮.୧୨.୨୦୧୩
ଗଞ୍ଜାମ କଳାପରିଷଦ ପରିସର, ବ୍ରହ୍ମପୁର - ତା ୧୭.୦୧.୨୦୧୪
ମିନିଷ୍ଟାଡିୟମ, ଢେଙ୍କାନାଳ - ତା ୧୯.୧୨.୨୦୧୪



Digitized by PPRACHIN, SOA

## ଶ୍ରୀ ଆନନ୍ଦ ଚନ୍ଦ୍ର ପହିଙ୍କ ଲିଖିତ ମୂଳ କାହାଣୀ

# ପଣବନ୍ଦୀ

ସକାଳ ଏଗାରଟା ଯାଇ ବାରଟା ବାଜିଲା ତଥାପି ସନାତନ ମର୍ଣ୍ଣିଂ ୱାକ୍‌ରୁ ଫେରିଲେ ନାହିଁ । ବଡ଼ବୋହୂ ଅଳକାନନ୍ଦା ଆଉ ସାନବୋହୂ ସୁନନ୍ଦା ଦୁହେଁ ବ୍ୟସ୍ତ ହେଲେ । ଅଳକା ଫୋନ୍ କରି ଜଣାଇଲେ ସ୍ୱାମୀ ସୀମାଦ୍ରୀ ଓ ଦିଅର ଶେଷାଦ୍ରୀଙ୍କୁ । ସେମାନେ ବାପାଙ୍କ ସାଙ୍ଗ, ସାଥୀ ଆଉ ବନ୍ଧୁବାନ୍ଧବଙ୍କ ଘରକୁ ଫୋନ୍ କରି ବୁଝିନେଲେ । ସନାତନଙ୍କ ସନ୍ଧାନ କେଉଁଠି ହେଲେ ମିଳିଲା ନାହିଁ । ସଂଧ୍ୟା ହେଲା, ରାତି ହେଲା । ତଥାପି ସନାତନଙ୍କର କିଛି ଖବର ମିଳିଲା ନାହିଁ ।

ସୀମାଦ୍ରୀ କହିଲେ - ବାପା ଯଦି କୋଉଠି ଥାଆନ୍ତେ ତା'ହେଲେ ସିଏ ଏତେବେଳକୁ ନିଶ୍ଚୟ ଘରକୁ ଫେରି ଆସନ୍ତେଣି । ଆମେ ଆଉ ଅଧିକ ସମୟ ବିଳମ୍ବ ନକରି ପୋଲିସ୍ ଷ୍ଟେସନ୍‌ରେ ଏତେଲା ଦେବାଟା ଉଚିତ୍ ହେବ ।

ସୀମାଦ୍ରୀଙ୍କ କଥା ନସରୁଣୁ ଲ୍ୟାଣ୍ଡ୍‌ଫୋନ୍‌ଟା ବାଜିଲା । ସମସ୍ତେ ଉତ୍କଣ୍ଠିତ ହେଲେ । ବାପାଙ୍କ ଫୋନ୍ ହୋଇଥାଇ ପାରେ । ଶେଷାଦ୍ରୀ ଉଠିଯାଇ ଫୋନ୍ ଧରିଲେ - ହ୍ୟାଲୋ ! ହଁ, ଏଇଟା ସନାତନ ଚୌଧୁରୀଙ୍କ ରେସିଡେନ୍ସ । ଆପଣ କିଏ କହୁଥିଲେ ? କ'ଣ କହିଲେ, ମୁଁ କିଏ ? ମୁଁ ତାଙ୍କ ସାନପୁଅ ଶେଷାଦ୍ରୀ ଚୌଧୁରୀ । କିନ୍ତୁ ଆପଣ କିଏ ? ମୁଁ ସେକଥା ଜାଣିବା ଆବଶ୍ୟକ ନାହିଁ ? କ'ଣ କହିଲେ ବାପା ଆପଣଙ୍କ ପାଖରେ ଅଛନ୍ତି ? ମାନେ ? ଆପଣ ତାଙ୍କୁ କିଡନାପ୍ କରିଛନ୍ତି ? କିନ୍ତୁ କାହିଁକି ? ସିଏ ଆପଣଙ୍କର କି ଅପରାଧ କରିଛନ୍ତି ? ଆରେ, ଏମିତି ହସୁଛନ୍ତି କାହିଁକି ? କ'ଣ କହିଲେ, ଅପରାଧୀକୁ କେହି କେବେ କିଡ୍‌ନାପ୍ କରେ ନାହିଁ ? ସବୁବେଳେ ନିରୀହ, ନିରପରାଧ ଲୋକମାନେ ହିଁ କିଡ୍‌ନାପ୍ ହୁଅନ୍ତି ?

ସୀମାଦ୍ରୀ ଉଠିଆସି ଟେଲିଫୋନ୍‌ଟା ଶେଷାଦ୍ରୀ ହାତରୁ ଛଡ଼ାଇ ନେଇ ଚିତ୍କାର କଲେ - ହ୍ୟାଲୋ । ଆମ ବାପା ଭଲ ଅଛନ୍ତି ତ ? ଦେଖ ତାଙ୍କର ଯଦି କିଛି ହୋଇଯାଏ ମୁଁ ତୁମକୁ ଆଦୌ ଛାଡ଼ିବି ନାହିଁ । ଏ ସହରର ଏସ୍.ପି. ମୋର



Digitized by PPRACHIN, SOA

ପରିଚିତ । କ'ଣ କହିଲେ, ପୋଲିସ୍ ପର୍ଯ୍ୟନ୍ତ କଥା ଯିବା ପୂର୍ବରୁ ତମେ ମୋ ବାପାଙ୍କୁ ହତ୍ୟା କରି ରେଳ ଧାରଣା ଉପରେ ପକାଇ ଦେବ ? ନା, ମୁଁ ଜାଣେ କୌଣସି କିଡ୍‌ନାପର୍ ପଣବନ୍ଦୀ ରଖିଥିବା ଲୋକକୁ ହତ୍ୟା କରିବାକୁ ପସନ୍ଦ କରେନା । ସିଏ ପ୍ରଥମେ ଧମକ ଦିଏ । ହଁ, ଏଇଟାକୁ ମୁଁ ତୁମର ସେଇ ଧମକ ଭାବେ ଧରି ନେଉଛି । ଏଥର ତୁମର ଅସଲ ଉଦ୍ଦେଶ୍ୟ ପ୍ରକାଶ କର । ପଣବନ୍ଦୀ ରଖିଥିବା ଆମ ବାପାଙ୍କୁ ମୁକ୍ତି ଦେବା ପାଇଁ କି ସର୍ତ୍ତ ରଖିଛ ? କେତେ ? ୧୦ ଲକ୍ଷ ଟଙ୍କା ? ନା, ଅସମ୍ଭବ । ଏତେଗୁଡେ ଟଙ୍କା ଆମେ ଦେଇପାରିବୁ ନାହିଁ । କ'ଣ କହିଲେ, ଆମ ଦୁଇଟାଯାକ ଇଣ୍ଡଷ୍ଟ୍ରିଜ୍‌ର ଆନୁଆଲ୍ ଟର୍ଣ୍ଣଓଭର ୧୦୦ କୋଟି ଟଙ୍କା ? ଏ ଦୁଇଟା ଯାକ ଇଣ୍ଡଷ୍ଟ୍ରି ଆମକୁ ଆମ ବାପା ଦେଇଛନ୍ତି ? ହଁ, ମୁଁ ହିସାବ ଜାଣେ । ୧୦୦ କୋଟି ଟଙ୍କାର ୱାନ୍ ପର୍ସେଣ୍ଟ ହେଲା ୧ କୋଟି ଟଙ୍କା । ଆଉ ଆପଣ ମାଗୁଛନ୍ତି ମାତ୍ର ୧୦ ଲକ୍ଷ ଟଙ୍କା ।

ହଠାତ୍ ଫୋନ୍‌ଟା କଟିଗଲା । କଥାଟା ଏବେ ପରିଷ୍କାର ହୋଇଗଲା ଯେ ୧୦ ଲକ୍ଷ ଟଙ୍କା ପାଇଁ ସନାତନଙ୍କୁ କିଏ କିଡ୍‌ନାପ୍ କରିଚି । ଯିଏ ଏ କାମ କରିଛି ସିଏ ସନାତନଙ୍କ ପରିବାର, ତାଙ୍କ ଇଣ୍ଡଷ୍ଟ୍ରି ଆଉ ଇଣ୍ଡଷ୍ଟ୍ରିର ଟର୍ଣ୍ଣଓଭର ବିଷୟରେ ଟିକ୍‌ନିଖ୍ ଖବର ରଖିଛି ।

ସୀମାଦ୍ରୀ, ଶେଷାଦ୍ରୀ, ଅଳକା ଓ ସୁନନ୍ଦା ସମସ୍ତେ ଡ୍ରଇଂ ରୁମ୍‌ରେ ବସି ବାପାଙ୍କୁ ମୁକ୍ତ କରିବାର ଉପଯୁକ୍ତ ଉପାୟ କଥା ଆଲୋଚନା କଲେ । ସାନବୋହୂ ସୁନନ୍ଦା କହିଲା - ବାପାଙ୍କ କିଡ୍‌ନାପ୍ ଖବରଟା ପୋଲିସ୍‌ରେ ଜଣାଇ ପୋଲିସ୍‌ର ସାହାଯ୍ୟ ମାଗିବା ଉଚିତ୍ ହେବ ।

ବଡବୋହୂ ଅଳକା କହିଲା - ମୁଁ ଅନେକ ହିନ୍ଦୀ, ଓଡିଆ ସିନେମା ଓ ସିରିଆଲ୍‌ରେ ଦେଖିଛି ଗୋଟେ ବ୍ରିଫ୍‌କେଶ୍‌ରେ ଟଙ୍କା ଭର୍ତ୍ତି କରି କିଡ୍‌ନାପର୍ କହିଥିବା ସ୍ଥାନରେ ରଖାଯାଏ, ଆଉ ପୋଲିସ ସିଭିଲ୍ ଡ୍ରେସ୍‌ରେ ଖଣ୍ଡେ ଦୂରରେ ଲୁଚିକି ରୁହନ୍ତି । କିଡ୍‌ନାପର୍ ବ୍ରିଫ୍‌କେଶ୍ ଧରିବା ମାତ୍ରକେ ପୋଲିସ ଲୁଚିବା ସ୍ଥାନରୁ ବାହାରି ତାକୁ ମାଡିବସି କାବୁ କରେ । ଏଠି ଆମେ ସେମିତି କିଛି କଲେ କେମିତି ହୁଅନ୍ତୁ ?



Digitized by PPRACHIN, SOA

ସୀମାଦ୍ରୀ ପ୍ରଶ୍ନ କଲେ - କିନ୍ତୁ କିଡ୍‌ନାପର୍ ଯଦି ପୋଲିସ୍ ହାତରୁ ଖସିଯାଏ, ଆଉ ରାଗିଯାଇ ବାପାଙ୍କୁ ହତ୍ୟା କରେ ?

ସମସ୍ତେ କିଛି ସମୟ ନୀରବରେ ବସି ରହିଲେ । କିଛି ନିରାପଦ ଓ ସୁବିଧାଜନକ ଉପାୟ ପ୍ରତ୍ୟେକ ଚିନ୍ତା କରୁଥିଲେ । କିନ୍ତୁ ସେମିତି କିଛି ଉପାୟ କାହାରି ମୁଣ୍ଡକୁ ଜୁଟୁ ନଥିଲା ।

ଦଶ ଲକ୍ଷ ଟଙ୍କା ଦେଇ କିଡ୍‌ନାପର୍ ହାତରୁ ବାପାଙ୍କୁ ମୁକ୍ତ କରିବା କଥାଟାକୁ ସେମାନଙ୍କ ଭିତରୁ କେହି ଜଣେ ହେଲେ ଗ୍ରହଣ କରିପାରୁ ନଥିଲେ । ସେଥିପାଇଁ ସେମାନେ ଅନ୍ୟକିଛି ଉପାୟ କଥା ଚିନ୍ତା କରୁଥିଲେ ।

ବାପାଙ୍କୁ କିଡ୍‌ନାପର୍ ହାତରୁ ମୁକ୍ତ ନକଲେ ସାଇ, ପଡ଼ିଶା, ବନ୍ଧୁବାନ୍ଧବ ଆଉ ଖୋଦ୍ ବାପାଙ୍କ ଦୃଷ୍ଟିରେ ସେମାନେ ଛୋଟ ହୋଇଯିବେ ବୋଲି, ସେମାନେ ବାପାଙ୍କୁ ମୁକୁଳାଇବାର ଉପାୟ ଚିନ୍ତା କରୁଛନ୍ତି । କିନ୍ତୁ ପ୍ରକୃତ ପକ୍ଷେ ବାପା ଦୁଇ ପୁଅଙ୍କ ଇଣ୍ଡଷ୍ଟ୍ରି କାମରେ ଅଯଥା ହସ୍ତକ୍ଷେପ କରୁଥିବାରୁ ବାପାଙ୍କୁ ସେମାନେ ଅନ୍ତରରେ ଶ୍ରଦ୍ଧା କରୁନଥିଲେ । ତା'ଛଡା ବାପା ସେମାନଙ୍କ ଉପରେ ତାଙ୍କ ପୁରୁଣା ଦୃଷ୍ଟିକୋଣ ଲଦିବାକୁ ବାରମ୍ବାର ଚେଷ୍ଟା କରନ୍ତି । ନୂଆ କିଛି ଆଗ୍ରେସିଭ୍ ପଦକ୍ଷେପ ନେବାବେଳେ ବାପା ତାଙ୍କୁ ବିରୋଧ କରନ୍ତି ।

ଦୁଇ ବୋହୂ ମଧ ବାପାଙ୍କ ଉପସ୍ଥିତି ଘରେ ଚାହାଁନ୍ତି ନାହିଁ । ବାପା ଘରେ ଥିବାବେଳେ ସେମାନଙ୍କ ଚାଲିଚଳନ, ବ୍ୟବହାର, ହସଖୁସି, ବଜାର ବୁଲା ଆଉ ସାଙ୍ଗସାଥୀ ଚର୍ଚ୍ଚାରେ ସେମାନେ ସ୍ୱଚ୍ଛନ୍ଦ କି ସାଧୀନ ହୋଇପାରନ୍ତି ନାହିଁ । ବାପା ଘରେ ବସି ଦୁଇ ବୋହୂଙ୍କ ଗତିବିଧି ପ୍ରତି ନଜର ରଖନ୍ତି । ଏସବୁ ପାଇଁ ବାପାଙ୍କ ଉପରେ ଦୁଇ ବୋହୂ ଅନ୍ତରରେ ସନ୍ତୁଷ୍ଟ ନୁହଁନ୍ତି ।

ହଠାତ୍ ଫୋନ୍‌ଟା ଆଉ ଥରେ ବାଜିଲା । ସମସ୍ତେ ସଜାଗ ହେଲେ ଏଇଟା ସେଇ କିଡ୍‌ନାପର୍ ଫୋନ୍ । କିନ୍ତୁ କେହି ଫୋନ୍‌ଟା ଉଠାଇବାକୁ ସାହାସ କଲେ ନାହିଁ । ଦୁଇ ପୁଅ ପରସ୍ପରଙ୍କ ମୁହଁକୁ ଚାହିଁଲେ । ଦୁଇ ବୋହୂ ଡ୍ରଇଂ ରୁମ୍ ଛାଡି ନିଜ ନିଜ ବଖରାକୁ ଚାଲିଗଲେ । ଫୋନ୍‌ଟା ସେମିତି ବାଜି ବାଜି ଚୁପ୍ ହୋଇଗଲା । ଶେଷାଦ୍ରୀ ଓ ସୀମାଦ୍ରୀ ପୁଣି ନିଜ ଭାବନା ଭିତରକୁ ଫେରିଆସିଲେ ।



Digitized by PPRACHIN, SOA

ଫୋନ୍‌ଟା ମାତ୍ର ପାଞ୍ଚ ମିନିଟ୍ ଚୁପ୍ ରହି ପୁଣି ବାଜିଲା । ଏଥର ସୀମାଦ୍ରୀ ଭୟ ଆଉ ଅନିଚ୍ଛା ସତ୍ତ୍ୱେ ଫୋନ୍ ଉଠାଇଲେ । ଫୋନ୍‌ରେ କିଡ୍‌ନାପର୍‌ର କଣ୍ଠ - କ'ଣ ସ୍ଥିର କଲ ? ଦଶ ଲକ୍ଷ ଟଙ୍କା ଦେବ ନା ମୁଁ ବାଧ ହେବି ତୁମ ବାପାଙ୍କୁ ହତ୍ୟା କରିବାକୁ ?

ସୀମାଦ୍ରୀ ଯୁକ୍ତି କଲେ - ଆମେ ଟଙ୍କା ଦେବୁ ନାହିଁ ବୋଲି କହିଲେ ତୁମେ କେବେବି ଖୁସି ହେବ ନାହିଁ । ଆମେ ତୁମ ସର୍ତ୍ତରେ ରାଜି ।

କିଡ୍‌ନାପର୍ ଠୋ ଠୋ ହସି କହିଲା - ମୁଁ ଜାଣେ ତୁମେ ନିଶ୍ଚୟ ରାଜି ହେବ । ଶହେ କୋଟି ଟଙ୍କା କମାଇଥିବା ବାପା ମାତ୍ର ଦଶ ଲକ୍ଷ ଟଙ୍କା ପାଇଁ କିଡ୍‌ନାପର ହାତରେ ମରିବାଟାକୁ ସମାଜ ଭଲ ଦୃଷ୍ଟିରେ ଦେଖିବ ନାହିଁ । ତୁମକୁ ସମାଜ କ୍ଷମା ଦେବ ନାହିଁ । ତେଣୁ ତୁମେ ମୋ ସର୍ତ୍ତରେ ରାଜି ହେବାକୁ ବାଧ୍ୟ ।

ଶେଷାଦ୍ରୀ ହାତ ମୁଣ୍ଡ ହଲାଇ ଠାରରେ କହିଲେ - ଭାଇ, ତମେ ଏମିତି କେମିତି ରାଜି ହୋଇଗଲ ? ଦଶ ଲକ୍ଷ ଟଙ୍କା ଏବେ ଆମ ପାଖରେ କାହିଁ ?

ସୀମାଦ୍ରୀ ଠାରରେ ସେମିତି କହିଲେ - ସମୁଦାୟ କଥାଟା ନଶୁଣି ଏମିତି କାହିଁକି ବ୍ୟସ୍ତ ହେଉଚୁ ?

ସମୀଦ୍ରୀ ଏଥର କିଡ୍‌ନାପର୍‌କୁ କହିଲେ - ଆମେ ତୁମ ସର୍ତ୍ତ ଅନୁସାରେ ଦଶ ଲକ୍ଷ ଟଙ୍କା ଦେବାକୁ ରାଜି ଅଛୁ । କିନ୍ତୁ ଆମ ପାଖରେ ଏବେ ଏତେ ଟଙ୍କା ନାହିଁ । ଆମକୁ ମାସଟେ ସମୟ ଦିଅ ।

କିଡ୍‌ନାପର୍ ଏଥର ଆଗ ଅପେକ୍ଷା ଆହୁରି ଜୋର୍‌ରେ ହସି କହିଲା - ତୁମେ ଭାବୁଚ ତମେ ଏକୁଟିଆ ଚାଲାଖ ? ତମର ମନେ ରଖିବା ଉଚିତ୍ ପୁଲିସ ଆଉ ପ୍ରଶାସନଠୁ ଅଧିକ ଚାଲାଖ ହୋଇଥିବାରୁ ତାଙ୍କୁ ଚିତାକାଟି ଚୋର ଚୋରି କରେ, କିଡ୍‌ନାପର୍ କିଡ୍‌ନାପ୍ କରେ । ସେଇ ନ୍ୟାୟରେ ମୁଁ ତୁମଠୁ ଅଧିକ ଚାଲାଖ । ତମେ ଭାବିଛ ଏଇ ମାସେ କାଳ ମୁଁ ତୁମ ବାପାଙ୍କୁ ଖୋଇପେଇ ଏଠି ଜଗିକି ବସିବି ଆଉ ସେଇ ସମୟ ଭିତରେ ତୁମେ ମୋ ପଛରେ ପୋଲିସ୍ ଲଗେଇ ଆରେଷ୍ଟ କରିବ ? ନା, ସେମିତି ଚାଲାଖି କରିବାକୁ ତୁମକୁ ସୁଯୋଗ ମିଳିବ ନାହିଁ । ତୁମକୁ ମୁଁ ମାତ୍ର ଗୋଟିଏ ଦିନ ସମୟ ଦେଲି । କାଲି ରାତି ବାରଟା ସୁଦ୍ଧା ଯଦି ଦଶ



Digitized by PPRACHIN, SOA

ଲକ୍ଷ ଟଙ୍କା ନ ମିଳିବ ତା'ହେଲେ ରେଳ ଲାଇନ୍ ଉପରେ ତୁମ ବାପାଙ୍କ ଶବ ପଡ଼ିଥିବାର ଦେଖିବ ।

ଆଚ୍ଛା, ତୁମେ ବୁଝୁନା କାହିଁକି ? ଗୋଟେ ଦିନ ଭିତରେ ଆମେ ଦଶ ଲକ୍ଷ ଟଙ୍କା କୋଉଠୁ ଆଣିବୁ ? ଜଣେ ଇଣ୍ଡଷ୍ଟ୍ରିଆଲିଷ୍ଟ କ'ଣ କେବେ ଏତେ ଟଙ୍କା ଆଇଡିଲ୍ ରଖେ ? ସିଏ ଯେତେ ଅଧିକ ରୋଜଗାର କରେ ସେତେ ଅଧିକ ଟଙ୍କା ଇଣ୍ଡଷ୍ଟ୍ରିରେ ଇନ୍‌ଭେଷ୍ଟ କରେ ।

ତୁମେ ମୋତେ ଆଉ ବୁଦ୍ଧି ଶିଖାଇବାକୁ ଚେଷ୍ଟା କରନା । ଟଙ୍କା କୋଉଠୁ ଆସିବ ସେ କଥା ଜଣେ ଇଣ୍ଡଷ୍ଟ୍ରିଆଲିଷ୍ଟକୁ ଭଲ ଭାବରେ ଜଣା । ତେବେ ତୁମେ ଜାଣିକି ନ ଜାଣିବାର ଅଭିନୟ କରୁଥିବାରୁ କହି ଦଉଛି ଶୁଣ । ବିଭିନ୍ନ ବ୍ୟାଙ୍କରୁ ଆଜିକାଲି ଖୁବ୍ ସହଜରେ ଅଳ୍ପ ସୁଧରେ ଲୋନ୍ ମିଳୁଛି । ତମପରି ଶିଳ୍ପପତିଙ୍କୁ ଗୋଟିଏ ଦିନରେ ଦଶ ଲକ୍ଷ କାହିଁକି ପଚାଶ ଲକ୍ଷ ଟଙ୍କା ଲୋନ୍ ଦେବାକୁ ଅନେକ ବ୍ୟାଙ୍କ ନିଜ ନିଜ ଭିତରେ ପ୍ରତିଯୋଗିତା କରିବେ । ତମେ ଯେ କୌଣସି ଗୋଟେ ବ୍ୟାଙ୍କକୁ ଫୋନ୍ କରି ପରୀକ୍ଷା କର ।

ଜଣେ ଶିଳ୍ପପତି ବ୍ୟାଙ୍କରୁ ଲୋନ୍ ଆଣିବା ପୂର୍ବରୁ ପ୍ରଥମେ ଦେଖେ ଏ ଟଙ୍କା ସେ ଯେଉଁଠି ଇନ୍‌ଭେଷ୍ଟ କରିବ ତାକୁ ସେଥିରୁ କେତେ ଲାଭ ମିଳିବ ।

କିଡ୍‌ନାପର୍ ଗର୍ଜି ଉଠିଲା । ତୁମ ଲାଭ କ୍ଷତିର ହିସାବ ଶୁଣିବାକୁ ମୋର ଧୈର୍ଯ୍ୟ ନାହିଁ କି ମୋ ହାତରେ ସମୟ ନାହିଁ । ତୁମେ ତା'ହେଲେ ଏଥର ଖୋଲା ଖୋଲି କହିଦିଅ ତୁମ ବୁଢା ବାପାଙ୍କୁ ମୁକୁଳାଇବାକୁ ତୁମେ ଚାହୁଁନା । ତୁମଠୁ ସେତିକି କଥା ସ୍ପଷ୍ଟ ଭାବରେ ଶୁଣିଲେ ମୋ କାମ ମୁଁ କରିବି । ମୋତେ ବୋକା ବନେଇବାକୁ ଚେଷ୍ଟା କରନା ।

ସୀମାଦ୍ରୀ ଉତ୍ତର ଦେଲେ - ଏ ଦିଗରେ ତୁମେ କେତେ ବୁଦ୍ଧିମାନ ତା'ର ପରିଚୟ ମିଳି ସାରିଛି । ତମେ ଜଣେ ୬୫ ବର୍ଷର ବୁଢାକୁ କିଡ୍‌ନାପ୍ କରି ତା' ପରିବର୍ତ୍ତେ ଦଶ ଲକ୍ଷ ଟଙ୍କା ଦାବି କରୁଛ । ତୁମେ ଜାଣ ବୁଢାଲୋକମାନେ ପରିବାରରେ କେତେ ଅଦରକାରୀ, ଅଲୋଡା ? ଏବେ ତୁମେ ନିଜେ ଚିନ୍ତା କର, ନିଜ ମନକୁ ପଚାର ଜଣେ କର୍ତ୍ତୃତ୍ୱହୀନ ବୃଦ୍ଧକୁ କିଡ୍‌ନାପ୍ କରି ତୁମ ଧନ୍ଦା ଦୃଷ୍ଟିରୁ



Digitized by PPRACHIN, SOA

ପ୍ଲସ ପଏଣ୍ଟରେ ଅଛ ନା ମାଇନସ୍ ପଏଣ୍ଟରେ ଅଛ ? ଏ ବିଷୟରେ ଭଲ ଭାବରେ ଚିନ୍ତା କରିବା ପାଇଁ ମୁଁ ତୁମକୁ ଗୋଟିଏ ଘଣ୍ଟା ସମୟ ଦେଲି ।

ସୀମାଦ୍ରୀ ଏତକ କହିସାରିବା ସଙ୍ଗେ ସଙ୍ଗେ ଫୋନ୍‌ର ରିସିଭରଟା ଥୋଇଦେଲେ । ଶେଷାଦ୍ରୀ ବଡ଼ଭାଇଙ୍କ କଥା କହିବାର ଦକ୍ଷତାକୁ ପ୍ରଶଂସା କଲେ । ଦୁଇ ଭାଇ ହସାହସି ହେଲେ । ବଲ୍‌ଟା ଏଥର କିଡ୍‌ନାପର୍ କୋର୍ଟରେ ।

ଠିକ୍ ଘଣ୍ଟାକ ପରେ ଫୋନ୍ ବାଜିଲା । ସୀମାଦ୍ରୀ ଚାହିଁଲେ ଶେଷାଦ୍ରୀ ମୁହଁକୁ । ତାଙ୍କଠୁ ଇସାରା ପାଇ ଶେଷାଦ୍ରୀ ଫୋନ୍ ଉଠାଇଲେ । ସେପଟରୁ କିଡ୍‌ନାପର୍ କହିଲା - ଦଶ ଲକ୍ଷ ଟଙ୍କା ଯଦି ତୁମକୁ ଏତେ ବାଧୁଛି, ତା'ହେଲେ ତୁମେ ଆଠ ଲକ୍ଷ ଟଙ୍କା ଦିଅ । କାଲି ଦିନ ବାରଟାବେଳେ ମୋ ଲୋକ ଖଣ୍ଡଗିରି ଛକରେ ଅପେକ୍ଷା କରିଥିବ । ତା' ମୁଣ୍ଡରେ ଗୋଟେ ନାଲି ଟୋପି ଥିବ ।

ଶେଷାଦ୍ରୀ ଫୋନ୍‌ର ରିସିଭରଟାକୁ ଗୋଟେ ହାତରେ ବନ୍ଦ୍ କରି ବଡ଼ ଭାଇଙ୍କୁ କହିଲେ - କିଡ୍‌ନାପର୍ ଆଠ ଲକ୍ଷକୁ ଖସିଲାଣି । ନିଅ ତୁମେ ଏଥର ତା' ସହିତ ବାର୍ଗେନ କର । ଏଟା ନୂଆ ଆଉ ଅନଭିଜ୍ଞ କିଡ୍‌ନାପର୍ ପରି ମନେ ହେଉଛି । ଲକ୍ଷେ ଟଙ୍କାକୁ ଖସିଲେ ରାଜି ହେଇଯିବ ।

ସୀମାଦ୍ରୀ ସାନଭାଇ ହାତରୁ ଫୋନ୍ ରିସିଭରଟା ନେଇ କହିଲେ ତୁମେ ଏବେ ବୁଝିଲଣିତ ବୃଦ୍ଧମାନଙ୍କ ମୁଣ୍ଡ ଦାମ୍ ବେଶି ନୁହେଁ ବୋଲି ?

ତୁମେ ବୋଧେ ଭୁଲିଯାଉଛ ସୀମାଦ୍ରୀବାବୁ ମୁଁ ଜଣେ ବୃଦ୍ଧକୁ କିଡ୍‌ନାପ୍ କରିନାହିଁ, ତୁମ ବାପାଙ୍କୁ କିଡ୍‌ନାପ୍ କରିଛି, ଯିଏ ତୁମକୁ ପୃଥିବୀର ଆଲୋକ ଦେଖାଇଛନ୍ତି ଆଉ ଏତେ ବଡ଼ ଇଣ୍ଡଷ୍ଟ୍ରିର ମାଲିକ କରାଇଛନ୍ତି । ତୁମ ବାପା ଯଦି ମୋ ହାତରେ ସାମାନ୍ୟ କେଇ ଲକ୍ଷ ଟଙ୍କା ପାଇଁ ମୃତ୍ୟୁବରଣ କରନ୍ତି ତା'ହେଲେ ତୁମର ବନ୍ଧୁବାନ୍ଧବ, ସାଇ ପଡ଼ିଶା ଆଉ ତୁମ ସମାଜ ତୁମକୁ କ୍ଷମା ଦେବତ ?

ତୁମ ହାତରେ ଯଦି ଆମ ବାପାଙ୍କର ହତ୍ୟା ହୁଏ, ସେଥିପାଇଁ ଆମେ ନିନ୍ଦିତ ହେବୁ ନାହିଁ, ନିନ୍ଦିତ ହେବ ତୁମେ ଆଉ ଆମ ରାଜ୍ୟର ପୋଲିସ୍ ।

ଠିକ୍ ଅଛି ସୀମାଦ୍ରୀବାବୁ, ତୁମେ ଏଥର ତୁମ ବାପାଙ୍କ ସହିତ କଥାବାର୍ତ୍ତା ହୁଅ । ସିଏ କ'ଣ କହୁଚନ୍ତି ଶୁଣ ।



Digitized by PPRACHIN, SOA

ଏଥର ଫୋନ୍‌ରେ ସନାତନଙ୍କ କାନ୍ଦ କାନ୍ଦ ସର ଶୁଭିଲା - ତୁମ ପାଇଁ ଆଠ, ଦଶ ଲକ୍ଷ ଟଙ୍କା ବଡ଼ ହେଇଗଲା ? ବାପାଠି ତୁମର ଆଉ କିଛି କାମ ନାହିଁ ? ହଁ, ତମେ ଯେତେବେଳେ ପିଲାଥିଲ, ପାଠ ପଢୁଥିଲ, ରୋଜଗାରକ୍ଷମ ହୋଇନଥିଲ କି ବିବାହ କରିନଥିଲ, ସେତେବେଳେ ତୁମର ବାପା ଦରକାର ଥିଲା । ଏବେ ଏ ବୁଢ଼ା ବାପାଟା ତୁମର କି କାମରେ ଲାଗିବ ?

ନା ବାପା ! ମୁଁ ତୁମକୁ ଏ ସବୁକଥା କହିନାହିଁ । ମୁଁ କିଡ୍‌ନାପର୍‌କୁ ଯାହା କହିଛି ସେସବୁ ସତ ବୋଲି ତୁମେ କେମିତି ଭାବି ପାରିଲ ? ତୁମ ପୁଅମାନଙ୍କ ଉପରେ ତୁମର କ'ଣ ଆସ୍ଥା କି ବିଶ୍ୱାସ ନାହିଁ ? ଗୋଟେ କିଡ୍‌ନାପର୍‌ର ସବୁ ସର୍ତ୍ତ ମାନିଯିବା କ'ଣ ଠିକ୍ କଥା । ତା' ସହିତ ମୁଁ ଯାହା କଥା ହେଇଚି ସେସବୁ ମୋ ଅନ୍ତର କଥା ନୁହଁ, ସେସବୁ ମୋର ଡିପ୍ଲୋମାଟିକ୍ କଥା । ମୁଁ ଯଦି କିଡ୍‌ନାପର୍ କହିବା ସଙ୍ଗେ ସଙ୍ଗେ ଦଶ ଲକ୍ଷ ଟଙ୍କା ଦେଇଦିଏ ତା'ହେଲେ ସିଏ ଆଉ କାହା ବାପାଙ୍କୁ କିଡ୍‌ନାପ୍ କରିବାକୁ ଉତ୍ସାହିତ ହେବ । କିଏ ଜାଣେ ତୁମକୁ ବି ଆଉ ଥରେ ଉଠାଇ ନେଇପାରେ । ଆଚ୍ଛା ବାପା, ତୁମକୁ ସିଏ କିଛି ମିସ୍‌ବିହେଭ୍ କରୁନାହିଁ ତ ? ଭୟ କରନାହିଁ, ସେଠି ତୁମର ଯାହା ଯାହା ଅସୁବିଧା ହେଉଛି ମୋତେ କୁହ ।

ନା, ମୋର କିଛି ବି କ୍ଷତି କରି ନାହାଁନ୍ତି । ଆଦୌ ମିସ୍‌ବିହେଭ୍ କରିନାହାଁନ୍ତି ।

ଖାଇବା ପିଇବା ଠିକ୍ ଭାବେ ଦେଉଛନ୍ତି ତ ?

ସେସବୁ ଠିକ୍ ଭାବେ ଦେଉଛନ୍ତି, କିନ୍ତୁ ମୋର ଖାଇବାକୁ ଇଚ୍ଛା ନାହିଁ । ମତେ ଏଠି ମୋଟେ ଭଲ ଲାଗୁନାହିଁ । ତୁ ମତେ ଏଠୁ ଶୀଘ୍ର ମୁକୁଳାଇ ନେ ।

ତୁମେ ବ୍ୟସ୍ତ ହୁଅନା ବାପା ! ଠିକ୍ ଭାବେ ଖିଆପିଆ କର । କିଡ୍‌ନାପର୍ ତୁମକୁ ମାରିବାକୁ ସେଠିକି ନେଇନାହିଁ । ତୁମକୁ ମାରିଦେଲେ ତାକୁ ଟଙ୍କାଟିଏ ବି ମିଳିବ ନାହିଁ । ସୀମାଦ୍ରୀକୁ କିଡ୍‌ନାପର୍ ପ୍ରଶ୍ନ କଲା କ'ଣ ଡିସାଇଡ୍ କଲ ?

ସୀମାଦ୍ରୀ ଚଡ଼ାଗଳାରେ ଉତ୍ତର ଦେଲେ - ଯାହା ଜଣାପଡୁଛି ଆମକୁ ପୋଲିସ୍‌ର ସାହାଯ୍ୟ ନେବାକୁ ପଡିବ । ଠିକ୍ ଅଛି, ତୁମେ ଯାହା କରିବା କଥା କର । ମୋତେ ଆଉ ଫୋନ୍ କରି ବିରକ୍ତ କରନା ।

କିଡ୍‌ନାପର୍ ହସି ହସି କହିଲା - ମତେ ତମେ ପୋଲିସ୍ ଧମକ



Digitized by PPRACHIN, SOA

ଦେଉଚ ? ପୋଲିସ୍ କେତେ ଦକ୍ଷ ତମେ ଜାଣ କି ନା ମୁଁ କହିପାରିବି ନାହିଁ । କିନ୍ତୁ ସେ କଥା ମୁଁ ଜାଣେ । କିଡ୍‌ନାପର୍‌କୁ ଖୋଜିବାକୁ ପୋଲିସ୍ ଗାଡିରେ ପେଟ୍ରୋଲ୍ ନାହିଁ । ପୋଲିସ୍ ହାତକୁ ପ୍ରତିଦିନ ଯେତେ କେଶ୍ ଆସୁଛି ତାକୁ ହ୍ୟାଣ୍ଡଲ୍ କରିବା ପାଇଁ ତାଙ୍କ ପାଖରେ ଯଥେଷ୍ଟ ସଂଖ୍ୟକ ଷ୍ଟାଫ୍ କି ଅଫିସର୍ ନାହାଁନ୍ତି । ମୋର ଗୋଟେ କଥା ମନେରଖ, ପୋଲିସ୍ ଫେଲ୍ ମାରିଲେ ତୁମେ ମୋଠୁ ଆଉ କିଛି ସାହାଯ୍ୟ କି ସମ୍ବେଦନା ପାଇବ ନାହିଁ । କାଲିରାତି ବାରଟା ଭିତରେ ମୋ ସର୍ତ୍ତ ପୂରଣ ନ ହେଲେ ମୁଁ ତୁମ ବାପାଙ୍କୁ ହତ୍ୟା କରିବାକୁ ବାଧ ହେବି ।

କିଡ୍‌ନାପର୍ ରାଗି ଯାଇ ଫୋନ୍‌ଟା କାଟି ଦେଲା । ସୀମାଦ୍ରୀ ଓ ଶେଷାଦ୍ରୀ ଦୁହେଁ ପରସ୍ପରଙ୍କ ମୁହଁକୁ ଚାହିଁଲେ । କାହାରି ମୁହଁରେ କିଛି କଥା ନାହିଁ । ପରିଣତି କ'ଣ ହେବ ? କିଡ୍‌ନାପର୍ ଯଦି ରାଗିଯାଇ ସତରେ ବାପାଙ୍କୁ ମାରିଦିଏ, ତା'ହେଲେ ତାଙ୍କ ସାମାଜିକ ସ୍ଥିତି କ'ଣ ହେବ ?

ସୀମାଦ୍ରୀ ଓ ଶେଷାଦ୍ରୀ କିଡ୍‌ନାପର୍‌ର ପରବର୍ତ୍ତୀ ଫୋନ୍‌କୁ ଅପେକ୍ଷା କରି ବସି ରହିଲେ । ଉଭୟଙ୍କ ମୁହଁରେ ଭୟ ଓ ଉତ୍କଣ୍ଠାର ମିଶାମିଶି ରଙ୍ଗ ନେସି ହୋଇଥିଲା ।

କିଡ୍‌ନାପର୍ ସନାତନଙ୍କୁ ବୁଝାଇଲା - ଦେଖନ୍ତୁ, ଆପଣ ମୋ ବାପା ବୟସର । ମୁଁ ଆପଣଙ୍କୁ ମାରିବାକୁ ଚାହୁଁନାହିଁ । କିନ୍ତୁ ଆପଣଙ୍କ ପୁଅମାନେ ମୋତେ ବାଧ କରୁଛନ୍ତି ସେମିତି ଗୋଟେ ଅମାନୁଷିକ କାମ କରିବା ପାଇଁ । ଆପଣ ଏତେ ଶୀଘ୍ର ଏତେ ଟଙ୍କାର ଇଣ୍ଡଷ୍ଟ୍ରି ଦୁଇଟା ଦୁଇ ପୁଅଙ୍କୁ ହସ୍ତାନ୍ତର କରିବାର ନଥିଲା । ଆପଣ ଏବେ ତାଙ୍କ ପାଖରେ ଅତ୍ୟନ୍ତ ଅଦରକାରୀ । ଆପଣଙ୍କ ସ୍ତ୍ରୀ ଥିଲେ ହୁଏତ ପୁଅମାନଙ୍କ ଉପରେ ଚାପ ପକାଇ ଆପଣଙ୍କୁ ମୁକୁଳାଇବାର ବ୍ୟବସ୍ଥା କରିପାରିଥାନ୍ତେ । ତାଙ୍କର ପାଞ୍ଚ ବର୍ଷ ତଳେ ମୃତ୍ୟୁ ହୋଇଯାଇଛି । ଆପଣଙ୍କ ବୋହୂମାନେ ହୁଏତ ଆପଣଙ୍କୁ ଏଠୁ ମୁକୁଳାଇବାର ସପକ୍ଷରେ ନାହାଁନ୍ତି ।

ସନାତନ ଯୁକ୍ତି ବାଢ଼ିଲେ - ନା, ତୁମ କଥାରେ ମୁଁ ଏକମତ ନୁହଁ । ମୋ ପୁଅ ମୋତେ ଫୋନ୍‌ରେ କହିଚି ସିଏ ନିଶ୍ଚୟ ମୋତେ ଏଠୁ ମୁକୁଳାଇ ନେବ । ସିଏ ତୁମକୁ ଯାହାସବୁ କହିଚି ସେଟା ତା'ର ଅନ୍ତରର କଥା ନୁହଁ । ସେଟା ତା'ର



Digitized by PPRACHIN, SOA

ଡିପ୍ଲୋମାଟିକ୍ କଥା । ତା'ଛଡା ତୁମେ ଯଦି ମୋତେ କିଡ୍‌ନାପ୍ କରି ଦଶ ଲକ୍ଷ କି ଆଠ ଲକ୍ଷ ଟଙ୍କା ପାଇଯାଅ, ତା'ହେଲେ ତୁମେ ଅଧିକ ଉତ୍ସାହିତ ହୋଇ ମୋପରି ଆଉ ଯେ କୌଣସି ପରିବାରରୁ ଆଉ ଗୋଟେ ବାପାକୁ କିଡ୍‌ନାପ୍ କରିବ । ତୁମର ଏ ବାପା କିଡ୍‌ନାପିଙ୍ଗ୍ ଯୋଜନାକୁ ଉତ୍ସାହିତ କରାଯିବା ଠିକ୍ ନୁହେଁ ।

ଆପଣଙ୍କ ପୁଅ ମୋ ସହିତ ଡିପ୍ଲୋମାଟିକ କଥାବାର୍ତ୍ତା କଲେ କି ଆପଣଙ୍କ ସହିତ ଡିପ୍ଲୋମାଟିକ୍ କଥାବାର୍ତ୍ତା କଲେ ସେ କଥାଟା ଠିକ୍ ଭାବେ ବୁଝି ହେଉନାହିଁ । ତେବେ ମୁଁ ଏତିକି ବୁଝିଲି ଆପଣଙ୍କ ପୁଅ ଖୁବ୍ ଡିପ୍ଲୋମାଟିକ୍ ଆଉ ସିଏ ଆମ ଉଭୟଙ୍କ ସହିତ ଡିପ୍ଲୋମାଟିକାଲି କଥାବାର୍ତ୍ତା କରିଛନ୍ତି । ମୁଁ ଆପଣଙ୍କ ପୁଅକୁ କାଲିରାତି ୧୨ଟା ପର୍ଯ୍ୟନ୍ତ ସମୟ ଦେଇଚି । ସେହି ସମୟ ଭିତରେ ଯଦି ତାଙ୍କଠୁ କିଛି ସୂଚନା କି ସ୍ୱୀକୃତି ନ ଆସିଲା, ତେବେ ମୋ କଥା ଅନୁସାରେ ଏଇ ବନ୍ଧୁକ ସାହାଯ୍ୟରେ ଆପଣଙ୍କୁ...

କିଡ୍‌ନାପର୍ ବନ୍ଧୁକଟି ସନାତନଙ୍କ ମୁଣ୍ଡ ପାଖରେ ଲଗାଇ ରଖିଲା । ସନାତନ ଭୟଭୀତ ହୋଇ ଅନୁନୟ କଲେ - ଦେଖ ମୋତେ ମାରିଦେଲେ ତୁମକୁ ଟଙ୍କାଟିଏ ବି ମିଳିବ ନାହିଁ । ଗୋଟେ ବୃଦ୍ଧକୁ ମାରିବାରେ ପୌରୁଷର ପରିଚୟ ବି ମିଳିବ ନାହିଁ । ଅଯଥା ତୁମେ ଗୋଟେ ହତ୍ୟା ଅପରାଧ ମୁଣ୍ଡାଇବ । ମୋ କଥାରେ ଯଦି ତୁମେ ବିଶ୍ୱାସ କରିବ ଆଉ ମୋ କଥା ଅନୁସାରେ ତୁମେ ଯଦି କାମ କରିବ ତା'ହେଲେ ତୁମକୁ ତୁମ ପଣ ଟଙ୍କା ମିଳିଯିବ ।

କିଡ୍‌ନାପର୍ ସନାତନଙ୍କ ମୁହଁକୁ ଚାହିଲା । ତାଙ୍କ ମୁହଁରେ ନିଜ ବାପାଙ୍କ ମୁହଁକୁ ଦେଖିପାରି ବିଚଳିତ ହେଲା । ନିଜକୁ ଯଥା ସମ୍ଭବ ନିୟନ୍ତ୍ରଣ ଭିତରେ ରଖି କହିଲା - ଆଗରୁ କହିଛି ଆପଣ ମୋ ବାପା ପରି । ଆପଣଙ୍କ କଥାକୁ ମୁଁ ନିଶ୍ଚୟ ବିଶ୍ୱାସ କରିବି । କ'ଣ କରିବାକୁ ପଡିବ କୁହନ୍ତୁ ?

ସନାତନ କହିଲେ - ମତେ ତମେ ମୁକ୍ତ କରିଦେଇ ପାରିବ ? ମୁଁ କଥା ଦେଉଛି ଦୁଇ ଦିନ ଭିତରେ ତୁମ ଟଙ୍କା ତୁମେ ପାଇଯିବ । କିନ୍ତୁ ତୁମକୁ ମୋର ଗୋଟିଏ ଅନୁରୋଧ ରକ୍ଷା କରିବାକୁ ହେବ, ତୁମେ ଆଉ କେବେ କୌଣସି ପରିବାରର ବୃଦ୍ଧ ପିତାକୁ ଅପହରଣ କରିବ ନାହିଁ । ସେମାନେ ତାଙ୍କ



Digitized by PPRACHIN, SOA

ପରିବାରରେ ଅତ୍ୟନ୍ତ ଅଦରକାରୀ ଓ ଅସହାୟ । ବୃଦ୍ଧମାନେ ତୁମ ପିତାଙ୍କ ବୟସର ଓ ପିତା ପରି ।

କିଡ୍‌ନାପର୍ ଗମ୍ଭୀର ହୋଇ କିଛି ସମୟ ଭାବିଲା । ସନାତନ ପୁଣିଥରେ କହିଲେ - ତୁମେ ଚିନ୍ତା କରନା, ମୋ ଉପରେ ବିଶ୍ୱାସ ରଖ । ମୁଁ ଯଦି ମୋ ଦୁଇ ପୁଅଙ୍କୁ ଶହେ କୋଟି ଟଙ୍କାର ଦୁଇଟା ଇଣ୍ଡଷ୍ଟ୍ରି ଦେଇପାରିଲି ତୁମକୁ ଦଶ ଲକ୍ଷ ଟଙ୍କା ଦେଇ ନ ପାରିବି କାହିଁକି ? ଏତେ ଟଙ୍କା ମୁଁ କୋଉଠୁ ଆଣିବି ବୋଲି ତୁମ ମନରେ ହୁଏତ ସନ୍ଦେହ ଥିବ । ଦୁଇ ପୁଅଙ୍କୁ ମାଗିକି ତାଙ୍କଠୁ ଟଙ୍କା ଆଣି ତୁମକୁ ଦେବି ନାହିଁ । ମୁଁ ଜାଣେ ସେମାନେ ଦେବେ ନାହିଁ । ସେମାନେ ଯଦି ଦେଇଥାନ୍ତେ, ତା'ହେଲେ ତୁମ ପାଖରୁ ମୋତେ ଏମିତି ଜୀବନ ଭିକ୍ଷା କରିବାକୁ ପଡିନଥାନ୍ତା ।

କିଡ୍‌ନାପର୍ ଏଥର ବିଶ୍ୱାସର ସହିତ ସନାତନଙ୍କ ମୁହଁକୁ ଚାହିଁଲା । ସନାତନ କହିଲେ - ମୁଁ ଦଶ ବର୍ଷ ତଳେ ଷ୍ଟେଟ୍ ବ୍ୟାଙ୍କରେ ସାତ ଲକ୍ଷ ଟଙ୍କା ଫିକ୍ସଡ୍ ଡିପୋଜିଟ୍ କରିଥିଲି । ସେ ଟଙ୍କାର ସୁଧମୂଳ ମିଶି ଏବେ ଚଉଦ ପନ୍ଦର ଲକ୍ଷ ଟଙ୍କା ହୋଇଥିବ । ସେଇ ଟଙ୍କା ଉଠାଇ ମୁଁ ତୁମକୁ ଦଶ ଲକ୍ଷ ଟଙ୍କା ଦେଇଦେବି । ମୋ କଥାରେ ଯଦି ତୁମର ବିଶ୍ୱାସ ହେଉଛି, ତୁମେ ମୋତେ ଛାଡିଦିଅ, ଯଦି ବିଶ୍ୱାସ ନ ହେଉଛି ମତେ ହତ୍ୟା କର ।

କିଡ୍‌ନାପର୍ ଏଥର ବିଚଳିତ ଦିଶିଲା । ସିଏ କାନ୍ଦ କାନ୍ଦ କଣ୍ଠରେ କହିଲା - ମୁଁ ଆପଣଙ୍କୁ କହିବାକୁ ବାଧ ହେଉଛି ଯେ, ମୁଁ ପେଶାଦାର କିଡ୍‌ନାପର୍ ନୁହଁ । ମୁଁ ଜଣେ ଶିକ୍ଷିତ ବେକାର । ମୋ ବାପାଙ୍କର ଓପନହାର୍ଟ ସର୍ଜରି ପାଇଁ ଆଠ ଲକ୍ଷ ଟଙ୍କା ଦରକାର । ସେଥିପାଇଁ ମୁଁ ଆପଣଙ୍କୁ କିଡ୍‌ନାପ୍ କରିଥିଲି । ମତେ କ୍ଷମା କରିବେ, ଆପଣ ବର୍ତ୍ତମାନ ମୁକ୍ତ ।

ସନାତନ କହିଲେ - ତୁମେ ଯଦି ଆରମ୍ଭରୁ ତୁମ ବାପାଙ୍କ ଅପରେସନ୍ କଥା କହିଥାନ୍ତ, ତା'ହେଲେ କଥା ଏତେ ପର୍ଯ୍ୟନ୍ତ ଯାଇ ନଥାନ୍ତା । ତୁମ ବାପା କୋଉ ହସ୍‌ପିଟାଲ୍‌ରେ ଆଡମିଟ୍ ହୋଇଛନ୍ତି ମତେ କୁହ । ତାଙ୍କ ବେଡ୍ ନମ୍ବର କୁହ ମୁଁ ନିଜେ ନେଇ ଟଙ୍କା ଦେଇଆସିବି ଆଉ ତୁମ ବାପାଙ୍କୁ ଦେଖିଆସିବି ।



Digitized by PPRACHIN, SOA

କିଡ୍‌ନାପର୍ ନିଜ ଆଖିରୁ ଲୁହ ପୋଛିସାରି ଗୋଟେ କାଗଜରେ ହସ୍‌ପିଟାଲ୍‌ର ନାଆଁ ଆଉ ବେଡ୍ ନମ୍ବର ଲେଖି ସନାତନଙ୍କ ହାତକୁ ବଢ଼ାଇ ଦେଲା ଓ କହିଲା - ଆପଣଙ୍କ ମହାନୁଭବତା ପାଇଁ ମୁଁ ଓ ମୋ ବାପା ଆପଣଙ୍କ ପାଖରେ କୃତଜ୍ଞ ରହିବୁ । କିନ୍ତୁ ଦଶ ଲକ୍ଷ ଟଙ୍କା ନୁହଁ, ବାପାଙ୍କ ଅପରେସନ୍ ପାଇଁ ଆଠ ଲକ୍ଷ ଟଙ୍କା ଆବଶ୍ୟକ । ବାପାଙ୍କ ଅପରେସନ୍ ଡେଟ୍ ଆଉ ଚାରି ଦିନ ଅଛି ।

ଯଥା ସମୟରେ ନିର୍ଦ୍ଦିଷ୍ଟ ହସ୍‌ପିଟାଲ୍‌ରେ ଆଠ ଲକ୍ଷ ଟଙ୍କା ପହଞ୍ଚାଇ ଦେବାର ପ୍ରତିଶ୍ରୁତି ଦେଇ ସନାତନ ଗୋଟିଏ ଟେମ୍ପୋରେ ସବାର ହେଲେ ।

କିଡ୍‌ନାପର ତା ବାପାଙ୍କ ଚିକିତ୍ସା ଦାୟିତ୍ୱରେ ଥିବା ଡାକ୍ତରଙ୍କୁ ଫୋନ୍ କରି ଜଣାଇ ଦେଲେ ଅପରେସନ୍ ପାଇଁ ଟଙ୍କାର ବ୍ୟବସ୍ଥା ହୋଇଗଲା । ଆପଣ ମୋ ବାପାଙ୍କ ଅପରେସନ୍ ପାଇଁ ସବୁ ପ୍ରସ୍ତୁତ କରନ୍ତୁ । ଟଙ୍କା ଠିକ୍ ସମୟରେ ପହଞ୍ଚି ଯିବ ।





Digitized by PPRACHIN, SOA

# ଦ୍ୱିତୀୟ ଈଶ୍ୱର

## ଚରିତ୍ରଲିପି

| | | |
|---|---|---|
| ବିଭୁ ପ୍ରସାଦ | : | ବୈଜ୍ଞାନିକ |
| ବାଙ୍କନିଧି | : | ବୈଜ୍ଞାନିକଙ୍କ ଶାଳକ |
| ଦଣ୍ଡପାଣି | : | ବ୍ୟକ୍ତିଗତ ସହାୟକ |
| ଦୀପଙ୍କର | : | ବିଭୂଙ୍କ ଛାତ୍ର ଓ ସହକାରୀ |
| ଅଲେଖ | : | ଚାକର ପିଲା |
| ଜଗଦୀଶ | | ବ୍ୟାପାରୀ |
| ନେତ୍ରାନନ୍ଦ | : | ନେତା |
| ପ୍ରକାଶ | | ପୋଲିସ୍ ଅଫିସର୍ |
| ବିଦେଶୀ | : | ଅନ୍ୟ ଦେଶର ବ୍ୟାପାରୀ |
| ଭାଷାନ୍ତରକ | | ବିଦେଶୀଙ୍କ ସହଯୋଗୀ |
| ରବି | | ସ୍କୁଲ ଛାତ୍ର |
| ନନ୍ଦୀ | : | ସଂପାଦକ |
| ଭୃଙ୍ଗୀ | | ସାମ୍ବାଦିକ ସଂପାଦକ |

**ଅଭିନୟ ସମୟ ଅବଧି ଏକ ଘଣ୍ଟା**



Digitized by PPRACHIN, SOA

# ଦ୍ୱିତୀୟ ଈଶ୍ୱର

## ପ୍ରଥମ ଦୃଶ୍ୟ

(ବୈଜ୍ଞାନିକ ବିଭୂପ୍ରସାଦଙ୍କ ଗବେଷଣା ପ୍ରକୋଷ୍ଠ ସମ୍ମୁଖ ବୈଠକ ଘର । ପଛ ଭାଗରେ ଗବେଷଣା ଗୃହର ପ୍ରବେଶ ଦ୍ୱାର । ପ୍ରବେଶ ଦ୍ୱାର ଦରଜା କାନ୍ଥରେ ଗୋଟିଏ ଲାଲ ଆଲୋକ ଜଳୁଛି । ବୈଠକ ଘର ଡାହାଣ ପାଖରେ ବାହାରକୁ ଯିବା ପାଇଁ ଦ୍ୱାର, ବାମ ପାଖରେ store room ଓ ଅନ୍ୟାନ୍ୟ ଘରକୁ ଯିବାକୁ ଅନ୍ୟ ଏକ ଦ୍ୱାର !

ଗବେଷଣା ପ୍ରକୋଷ୍ଠ କାନ୍ଥରେ ଦୁଇଟି ବୋର୍ଡ । ଗୋଟିକରେ 'Scientist at work' ଅନ୍ୟଟିରେ 'ନୀରବତା ରକ୍ଷା କରନ୍ତୁ' ଲେଖାଯାଇଛି । କାନ୍ଥରେ ଗୋଟିଏ କାନ୍ଥଘଣ୍ଟା ଓ ଜଗନ୍ନାଥଙ୍କର ଏକ ଫଟୋ ଟଙ୍ଗାଯାଇଛି ।

ବୈଠକ ଘରେ ସୋଫା, ଟେବୁଲ, ଚେୟାର, ବହି ରଖିବା ଆଲମିରା ଓ ଫୋନ୍ ଇତ୍ୟାଦି ରହିଛି । ଆଗନ୍ତୁକମାନଙ୍କ ପାଇଁ ଏକ ଲମ୍ୱା ସୋଫା ମଧ୍ୟ ପଡିଛି ।

ସମୟ ଅପରାହ୍ନ । ଚୌକି ଉପରେ ବସିବା ଅବସ୍ଥାରେ ଘୁମାଇ ପଡିଛନ୍ତି ବୈଜ୍ଞାନିକଙ୍କର ବ୍ୟକ୍ତିଗତ ସହକାରୀ (P.A) ଦଣ୍ଡପାଣି ବାବୁ । ଭିତରୁ ବୈଜ୍ଞାନିକଙ୍କ କଣ୍ଠରୁ ଶୁଣାଯାଉଛି ।)

ବିଭୂ : (ଗବେଷଣା ପ୍ରକୋଷ୍ଠରେ ରହି) ମଣ୍ଟି - ମଣ୍ଟି - Look here. ତୋ ପାଇଁ ଖାଇବାକୁ କୋଉଠି ରଖାଯାଇଛି ଖୋଜି ନେ - yes **(ହଠାତ୍ ଗୋଟିଏ କାଚ ଉପକରଣ ଭାଙ୍ଗିବାର ଶବ୍ଦ ଓ ପରେ ପରେ କୁକୁର ଭୁକିବାର ଶବ୍ଦ ।)**

ବିଭୂ : (ଭିତରୁ) ସେଲକା... I say stop it. Stop it. **(କୁକୁର ର ଶବ୍ଦ**



Digitized by PPRACHIN, SOA

**ବନ୍ଦ ହୋଇଛି । ଏଣେ ଟେଲିଫୋନ୍ ରିଙ୍ଗ୍ ହୋଇଛି । ଦଣ୍ଡପାଣି ନିଦରୁ ଉଠି ରିସିଭର ଉଠାଇଛନ୍ତି ।)**

ଦଣ୍ଡପାଣି : ହାଲୋ.... କିଏ - ଡେଜି... ଡେଜି ଡାର୍ଲିଂ ! good afternoon ଡେଜି ଡାର୍ଲିଂ । କ'ଣ ହେଲା ତୁମେ ଏଠିକି ଆସିବ । ଦରକାର ନାହିଁ । ସମୟ ପାଇଲେ ମୁଁ ଚାଲିଯିବି । ଆରେ ଏତେ ତରତର କାହିଁକି ? ଆମର ବାହାଘର ନିଶ୍ଚୟ ହେବ । ଚଟ୍ ମଙ୍ଗ୍‌ନି, ଫଟ୍ ସାଦି, - ରେଜିଷ୍ଟ୍ରି ଅଫିସ ଯାଇ ଦି'ଟା signature ମାରିଦେଲେ କାମ ଖତମ୍ । ଦେଖ୍ - ସାରଙ୍କର ଗବେଷଣା ଧୂମ୍‌ଧାମ୍ ଚାଲିଛି । କାମ ଶେଷ ହେଲେ ସାରଙ୍କ ପାଖରୁ ଗୋଟେ ମୋଟା ରକମ୍‌ର advance ନେଇ... ଓଃ କି ମୁସ୍କିଲ । ହେଲା... ହନିମୁନଟା ଦାର୍ଜିଲିଂ କିମ୍ବା ଗୁଲମାର୍ଗ ଯେଉଁଠି କହିବ ସେଇଠି କରିବା । Yes - Yes ... (ଯୋରରେ ହସି ଉଠି ବଡ ପାଟିରେ) alright my sweet heart...OK.

**(ହଠାତ୍ ଗବେଷଣା ଗୃହର ଦରଜା ଖୋଲିଯାଇଛି । ଲାଲ୍ ଆଲୋକ ଲିଭିଯାଇଛି । ପଶି ଆସିଛନ୍ତି ବିଭୂ ପ୍ରସାଦ, ରିଟାୟଡ ପ୍ରଫେସର ତଥା ବୈଜ୍ଞାନିକ ।)**

ବିଭୂ : ତୁମେ ଏଠି ଚିତ୍କାର କରୁଛ ଦଣ୍ଡପାଣି । ବାହାରେ ଲାଲ ଆଲୋକ ଜଳୁଥିଲା ଦେଖିପାରୁନଥିଲ ?

ଦଣ୍ଡ : ଭୁଲ ହୋଇଯାଇଛି ସାର ।

ବିଭୂ : ଭୁଲ ହୋଇଯାଇଛି ଗୋଟେ excuse ନୁହେଁ । ଶେଷଥର ପାଇଁ ତୁମକୁ warning ଦେଇଦେଉଛି । ଲାବ୍ରୋଟାରୀରେ କାମ ଚାଲିଲାବେଳେ ଏଠି ବିଲ୍‌କୁଲ୍ ପାଟି ବନ୍ଦ ।

ଦଣ୍ଡ : କି ମୁସ୍କିଲ...।

ବିଭୂ : କ 'ଣ କହିଲ ?

ଦଣ୍ଡ : ବୁଝିଗଲି ସ୍ୱାର - ପିନ୍‌ଡ୍ରପ୍ ସାଇଲେନ୍ସ । Phone ring



Digitized by PPRACHIN, SOA

ହେଲେବି...ଧରିବିନି ? ଫୋନ୍‌ଟାକୁ ବାହାର କରି ରଖିଦେଉଛି ସାର୍ । ସେଇଟା ମଝିରେ ମଝିରେ କ୍ରିଁ କ୍ରିଁ କରି ବଡ ମୁସ୍କିଲ କରୁଛି ।

ବିଭୂ : Yes...do that.

(ଦଣ୍ଡପାଣି ଫୋନ୍ ରିସିଭର ବାହାର କରି ରଖିଦେଲେ ।)

ବିଭୂ : No No ସେଟା ଯେମିତି ଥିଲା ଥାଉ ।

ଦଣ୍ଡ : କି ମୁସ୍କିଲ - ସେଇଟା ଆପଣଙ୍କୁ ପରା ବଡ ମୁସ୍କିଲ କରୁଛି ।

ବିଭୂ : No, ଯୁକ୍ତି କରନା - ମୁଁ ଯାହା କହୁଛି ସେୟା କର । ବାହାରୁ କ'ଣ ଜରୁରୀ ଖବର ଆସିପାରେ । ବିଶେଷ କରି ମା' ଖୋଜିପାରନ୍ତି ।

ଦଣ୍ଡ : ବୁଝିଗଲି ସାର୍ । (ଫୋନ୍ ଠିକ୍ ଢଙ୍ଗରେ ରଖିଲା)

ବିଭୂ : ଦେଖ - ତୁମେ ଯାଇ ସେଇ ଘରେ ବସ । ବାହାରୁ କେହି ଦେଖା କରିବାକୁ ଆସିଲେ ମନା କରିଦେବ । (ଚାଲିଗଲେ ବିଭୂପ୍ରସାଦ)

ଦଣ୍ଡ : Ok Sir, ପୁରା ମାର୍ଶାଲ ଅର୍ଡର ।

ବିଭୂ : (ପୁଣି ଫେରିଆସି) ଦୀପଙ୍କର - ଦୀପଙ୍କର -

ଦଣ୍ଡ : ଦୀପକ ବାବୁ ଫେରିନାହାଁନ୍ତି ସାର୍ ।

ବିଭୂ : ଫେରିନି ମାନେ । ସେ କୁଆଡେ ଯାଇଛି ?

ଦଣ୍ଡ : କି ମୁସ୍କିଲ - ଆପଣ ବାହାରକୁ ପଠେଇଛନ୍ତି ସାର୍ ।

ବିଭୂ : No - No. ମୁଁ ପଠେଇବାର ମୋର ମନେପଡୁନି । ଯାଅ ତାକୁ ନେଇଆସ ।

ଦଣ୍ଡ : ସେ କୋଉ ଜାଗାକୁ ଯାଇଛନ୍ତି ମୁଁ ଜାଣିନି ସାର୍ ।

ବିଭୂ : ତୁମେ ଜାଣିନାହଁ ଗୋଟେ excuse ନୁହେଁ । ମୋର ପ୍ରାଇଭେଟ୍ ସେକ୍ରେଟାରୀ ହିସାବରେ ତୁମେ ଜାଣିବାକୁ ବାଧ୍ୟ । ଯାଅ - ଦୀପଙ୍କର ଯେଉଁଠି ଥାଉନା କାହିଁକି ତାକୁ ଧରିନେଇ ଆସ - Quick.

ଦଣ୍ଡ : କି ମୁସ୍କିଲ - ଆପଣ କୋଉଠିକି ପଠେଇଛନ୍ତି, ମୁଁ କେମିତି ଜାଣିବି ସାର୍ ।



Digitized by PPRACHIN, SOA

ବିଭୂ : ମୁଁ ଯୋଉଠିକି ପଠାଇଥାଏ ନା କାହିଁକି ସେଇଟା ପୃଥିବୀ ବାହାରକୁ ନୁହେଁ ।

ଦଣ୍ଡ : ସେ କଥା ବୁଝିଛି ଯେ ସାର୍...।

ବିଭୂ : No argument. ମୋର ବର୍ତ୍ତମାନ ଦୀପଙ୍କର ଦରକାର । ସେ ପୃଥିବୀର ଯେ କୌଣସି କୋଣରେ ଥାଉନା କାହିଁକି ତାକୁ ଧରିଆଣିବାକୁ ହେବ । **(ବାହାରୁ ଆସିଛି ଦୀପଙ୍କର)**

ଦୀପକ : (ପ୍ରବେଶ) ମୋତେ ଧରି ଆଣିବା ଦରକାର ନାହିଁ ମୁଁ ଆସିଯାଇଛି ସାର୍ ।

ବିଭୂ : ମୁଁ ତୁମକୁ କୁଆଡେ ପଠେଇଥିଲି ଦୀପଙ୍କର ?

ଦୀପକ : Railway station ସାର୍ ମିତା ଦେବୀଙ୍କୁ ଦିଲ୍ଲୀ ଯିବା ପାଇଁ see up କରିବାକୁ ।

ବିଭୂ : Thanks. ମିତା ତା'ହେଲେ ଦିଲ୍ଲୀ ଚାଲିଗଲା । ଝିଅଟା ଏଇଠି ବସି ବୋର୍ ହେଉଥିଲା । ଯାଉ, ମାମୁଁ ଘରୁ ଘେରାଏ ବୁଲିଆସୁ । ଆଛା - ତାହେଲେ ମୁଁ ତୁମକୁ ପଠେଇଥିଲି ?

ଦଣ୍ଡ : ମୁଁ କହୁନଥିଲି ସାର୍ । ଆପଣ ପଠେଇଥିଲେ ।

ବିଭୂ : You shut up. ମୁଁ  କୁଆଡେ ପଠେଇଥିଲି ତୁମେ କାହିଁକି କହିପାରିଲନି । You are totaly unfit for the post you hold. Further ଏମିତି ଭୁଲ ଦେଖିଲେ punishment ଦେବି ।

ଦଣ୍ଡ : କି ମୁସ୍କିଲ - ମୁଁ punishment ନେବି ସାର୍ ।

ବିଭୂ : Yes.

(ପୁଣି ଗବେଷଣା ଘରକୁ ଯାଉଥିଲେ)

ଦୀପକ : ମୋତେ କାହିଁକି ଖୋଜୁଥିଲେ ସାର ?

ବିଭୂ : ନାହିଁ - ମୁଁ ତୁମକୁ ତ ଖୋଜିନି...କିଏ କହିଲା ?

ଦୀପକ : ମୁଁ ଆସିଲା ବେଳକୁ ଦଣ୍ଡପାଣିଙ୍କୁ ମୋତେ ଧରି ଆଣିବାକୁ କହୁନଥିଲେ ସାର୍ ?

ବିଭୂ : କହୁଥିଲି ନା କ'ଣ ?



Digitized by PPRACHIN, SOA

ଦଣ୍ଡ : କି ମୁସ୍କିଲ - ସାର୍ ଆପଣ କହୁନଥିଲେ ପୃଥିବୀର ଯେ କୌଣସି କୋଣରେ ଥାଆନ୍ତୁ ନା କାହିଁକି...।

ବିଭୂ : Shut up ଅନ୍ୟ ସାଙ୍ଗରେ କଥାବାର୍ତ୍ତା ହେଲାବେଳେ ତୁମେ ମଝିରେ କିଛି କହିବନି - understand.

ଦଣ୍ଡ : Yes Sir - ନହେଲେ punishment.

ବିଭୂ : Yes - heavy punishment, go. ସେପଟେ ଅପେକ୍ଷା କର। ଦେଖ ଆମକୁ ଯେମିତି କେହି disturb ନକରନ୍ତି।

ଦଣ୍ଡ : କି ମୁସ୍କିଲ। (ଦଣ୍ଡପାଣି ଚାଲିଗଲେ)

ବିଭୂ : ଆଚ୍ଛା ଦୀପଙ୍କର - ମୁଁ ତୁମକୁ କାହିଁକି ଖୋଜୁଥିଲି ?

ଦୀପକ : ଜାଣିନି ସାର୍।

ବିଭୂ : ଜଣିନି ସାର୍ - ଗୋଟେ excuse ନୁହେଁ। ମୋ ପାଖରେ ଏତେଦିନ ପାଠ ପଢ଼ିଲ। ମୁଁ ରିଟାୟାର୍ଡ କଲା ପରେ ମୋର assistant ହୋଇ ମୋତେ ଗବେଷଣାରେ ସାହାଯ୍ୟ କଲ। ତଥାପି ତୁମେ ଜାଣିପାରିଲନି - ମଝିରେ ମଝିରେ ତୁମକୁ ମୁଁ କାହିଁକି ଖୋଜୁଛି ?

ଦୀପକ : (ହସି) ଜାଣିଗଲି ସାର୍। ଆମର ନୂଆ ମେଡିସିନ୍‌ଟା ପୋଷା ମାଙ୍କଡ ମଣ୍ଡି ଉପରେ ପ୍ରୟୋଗ କରିବାର ଥିଲା।

ବିଭୂ : Right. ତୁମେ ଠିକ୍ କଥା କହିଛ। ମୋର କ'ଣ ମନେହେଉଛି ଜାଣିଛ ଦୀପଙ୍କର, human brain କୁ ଅଧିକ ଶକ୍ତିଶାଳୀ କରିବା ପାଇଁ ଆମ ତିଆରି ନୂଆ ମେଡିସିନ୍ ନେଇ ଆମେ ନିଶ୍ଚୟ successful ହେବା।

ଦୀପକ : ସେ କଥା ମୁଁ ବି ବିଶ୍ୱାସ କରୁଛି ସାର୍। ତେବେ ଆମେ କ'ଣ ସତରେ ଚେରମୂଳ ଓ କିଛି ରାସାୟନିକ ପଦାର୍ଥ ମିଶା ଏଇ ମେଡିସିନ୍ ପ୍ରୟୋଗ କରି human brain ର gland ଗୁଡିକୁ active କରିଦେଇ ପାରିବା ?

ବିଭୂ : Oh sure ! ଆର୍ଯ୍ୟ ମୁନୀ ଋଷିଗଣ, ଯୋଗ, ଧ୍ୟାନ ତପସ୍ୟା



Digitized by PPRACHIN, SOA

ବଳରେ ମସ୍ତିଷ୍କର ସେ ତନ୍ତ୍ରୀକୁ ଜାଗ୍ରତ କରିପାରୁଥିଲେ । ଯାହା ଫଳରେ ସେମାନେ ଗୋଟିଏ ସ୍ଥାନରେ ରହି ଅନ୍ୟ ଏକ ସ୍ଥାନରେ କ'ଣ ଘଟୁଛି ତା'ର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଦେଇପାରୁଥିଲେ । ନାରଦ, ବଶିଷ୍ଠ, ମହାଭାରତର ସଞ୍ଜୟ ଏମାନେ ହେଲେ ଜ୍ୱଳନ୍ତ ଉଦାହରଣ । ଆମେ କିନ୍ତୁ ରାସାୟନିକ ପ୍ରକ୍ରିୟା ଦ୍ୱାରା ମସ୍ତିଷ୍କର ସେଇ ଗ୍ରନ୍ଥିକୁ ଉନ୍ମୋଚନ କରିପାରିବା ।

ଦୀପକ : ଭଗବାନଙ୍କ ବିନା ଆଶୀର୍ବାଦରେ ଏକଥା କେବେ ସମ୍ଭବ ହୋଇପାରିବ ସାର୍ ?

ବିଭୂ : ମଣିଷ ତା'ର ଜ୍ଞାନ ଆଉ ଅଧ୍ୟବସାୟ ବଳରେ, ଅସମ୍ଭବକୁ ସମ୍ଭବ କରିପାରିଛି । ତୁମେ ବିଶ୍ୱାସ ରଖ ଆମେ ନିଶ୍ଚୟ କରିପାରିବା ।

ଦୀପକ : ସେ ବିଶ୍ୱାସ ମୁଁ ରଖୁଛି ସାର୍, କିନ୍ତୁ....।

ବିଭୂ : ୟା' ଭିତରେ କୌଣସି କିନ୍ତୁ ବା ପରନ୍ତୁର ସ୍ଥାନ ନାହିଁ ଦୀପଙ୍କର । ମୋର ଦୃଢ ବିଶ୍ୱାସ ଆମ ତିଆରି ନୂତନ ଔଷଧ ପ୍ରୟୋଗ କରି ଆମେ ମଣିଷ ଦେହରେ ସେ ଶକ୍ତି ଜାଗରଣ କରିପାରିବା । ଆଉ ସେ ଐଶ୍ୱରିକ ଶକ୍ତିର ଅଧିକାରୀ ହୋଇ ଏଇ ବିଂଶ ଶତାବ୍ଦୀର ମଣିଷ ହେବ 'ଦ୍ୱିତୀୟ ଈଶ୍ୱର'...।

**(ହଠାତ୍ ଲାବ୍ରୋଟାରୀ ଭିତରୁ କିଛି କାଚ ଜିନିଷ ଭାଙ୍ଗିବାର ଶବ୍ଦ ପରେ ପରେ କୁକୁର ଭୁକି ଉଠିବାର ଶବ୍ଦ ହୁଏ ।)**

ଆମର ପୋଷା ମାଙ୍କଡ ମଣ୍ଟି ଉପରେ ମୁଁ ଆଜି ଆମ ନୂଆ ଔଷଧର କିଛି ମାତ୍ରା ପ୍ରୟୋଗ କରିଥିଲି । ତା'ର reaction ବୋଧହୁଏ ଆରମ୍ଭ ହୋଇଛି । ଚାଲ ତାକୁ ଦୁଇଜଣ ମିଶି study କରିବା....।

(ବିଭୂ ଓ ଦୀପଙ୍କର ଗବେଷଣା ପ୍ରକୋଷ୍ଠକୁ ଚାଲିଯାଆନ୍ତି)

(ଅନ୍ଧାର)





Digitized by PPRACHIN, SOA

## ଦ୍ୱିତୀୟ ଦୃଶ୍ୟ

(ସମୟ ରାତି - ସେଇ ପୂର୍ବ ବର୍ଣ୍ଣିତ ବୈଠକ ଗୃହ । କାନ୍ଥ ଘଣ୍ଟାରେ ବାରଟା ବାଜିବାର ସୂଚନା ଦଣ୍ଡପାଣି ମୁହଁରେ ଗୋଟିଏ ଖବର କାଗଜ ଦେଇ ସୋଫା ଉପରେ ଶୋଇଛି । ବିଭୂ ପ୍ରସାଦଙ୍କ ଘରୋଇ ଚାକର ଅଲେଖ ସୋଫା ତଳେ ବସିଥିଲା - ଘଣ୍ଟା ଶବ୍ଦ ଶୁଣି ସେ ଦଣ୍ଡପାଣିଙ୍କୁ ଉଠାଇବାକୁ ଚାହିଁଛି ।)

ଅଲେଖ : (ଦଣ୍ଡପାଣିଙ୍କୁ ଉଠାଇ) ବାବୁ - ସେକ୍ରେଟେରି ବାବୁ ଆଜ୍ଞା - ଉଠନ୍ତୁ ।

ଦଣ୍ଡ : କାହିଁକି ପାଟି କରୁଛୁ କହିଲୁ । ଚୁପ୍‌ଚାପ୍ ବସ୍ ।

ଅଲେଖ : ଘଣ୍ଟାରେ ବାରଟା ବାଜିଲାଣି ।

ଦଣ୍ଡ : କି ମୁସ୍କିଲ । ଘଣ୍ଟାରେ ବାରଟା ବାଜିବନି ତ କ'ଣ ତୋ ପିଠିରେ ବାଜିବ ।

ଅଲେଖ : ରାତି ଏତେ ହେଲାଣି, ବାବୁଙ୍କ ଖାଇବା ସବୁ ଏ ଟିଫିନ୍ ଭିତରେ ଶୁଖିଗଲାଣି । ମା' ମୋତେ ବିରକ୍ତ ହେବେ ।

ଦଣ୍ଡ : ମା' ତୋତେ ବିରକ୍ତ ହେଲେ ମୁଁ କ'ଣ କରିବି । ଏଇନା କବାଟ ଖୋଲିଲେ ବୁଢା ମୋତେ ରିଟ୍ରେଞ୍ଚ କରିଦବ ।

ଅଲେଖ : ମା' ମୋତେ, ବାବୁ ଏସବୁ ଖାଇସାରିଲା ପରେ ଯିବାକୁ କହିଛନ୍ତି ।

ଦଣ୍ଡ : ଏତେ ରାତି ହେଲାଣି - ବାବୁ ଲାବ୍ରୋଟାରୀ ଭିତରେ ଗବେଷଣା ଚଳେଇଛନ୍ତି । ଖାଇବା କଥା କ'ଣ ତାଙ୍କର ମନେଥିବ ।

ଅଲେଖ : ଆପଣ ମନେପକେଇ ଦଉନାହାଁନ୍ତି ।



Digitized by PPRACHIN, SOA

ଦଣ୍ଡ : କି ମୁସ୍କିଲ । ମୋତେ କବାଟ ଖୋଲିବାକୁ ପରା ମନା କରିଛନ୍ତି । ତାଙ୍କର ଇଚ୍ଛାହେଲେ ଯାଇ ଖୋଲିବେ । ତୁ ବରଂ ଏଇଠି କାନି ପାରି ଶୋଇପଡ ।

ଅଲେଖ : ନାଇଁ ଆଜ୍ଞା ।

(ଟେଲିଫୋନ୍ ରିଂ ହୋଇଛି)

ଦଣ୍ଡ : (ରିସିଭର ଉଠେଇ) ହାଲୋ ଡେଜି ଡାର୍ଲିଂ । (ଜିଭ କାମୁଡି) excuse me madam ମୁଁ ଦଣ୍ଡପାଣି କହୁଛି । (ରିସିଭରରେ ହାତ ଦେଇ) ମୁଁ ବି ଗୋଟେ ବୁଦ୍ଧୁ ନିଦ ବାଉଳାରେ ମା'ଙ୍କୁ ଡେଜି ବୋଲି କହୁଛି । (ପୁଣି ଫୋନ୍‌ରେ) ଅଲେଖ ଏଇଠି ବସିଛି । ବାବୁ ଦରଜା ଖୋଲି ନାହାଁନ୍ତି । ଆପଣ କାହିଁକି ଆସିବେ । ଆମେ କବାଟ ଖୋଲି ଖାଇବାକୁ ଦେଇଦେଉଛୁ ।

(ଫୋନ୍ ରଖିଦେଇ)

କି ମୁସ୍କିଲ - ମା ଫୋନ୍‌ରେ କହିଛନ୍ତି କବାଟ ଖୋଲି ବାବୁଙ୍କୁ ଖାଇବାକୁ ଦେବାକୁ ପଡିବ । କ'ଣ କରାଯିବ ଏଥର, କି ମୁସ୍କିଲ ।

ଅଲେଖ : ମୁଁ ସାଢେ ଦଶଟା ବେଳୁ ଆସିଲିଣି । ଏ ପର୍ଯ୍ୟନ୍ତ ବାବୁ ଖାଇନାହାଁନ୍ତି । ସେପଟେ ମା ବିଗିଡି ଯିବେଣି ।

ଦଣ୍ଡ : ଏପଟେ କବାଟ ଖୋଲିଦେଲେ ସାର୍ ଚାକିରି ଖାଇଯିବେ । ସେପଟେ ଖାଇବାକୁ ଦିଆନଗଲେ ମା' ଏଠିକି ଚାଲିଆସିବେ । ମୁଁ ବି ଗୋଟେ ଅଜବ ଲୋକ । ଭୁଟ୍‌କିନା କହିଦେଲି ବାବୁ ଖାଇନାହାଁନ୍ତି ।

ଅଲେଖ : ମୁଁ ତାହେଲେ କବାଟ ବାଡଉଛି ।

ଦଣ୍ଡ : କି ମୁସ୍କିଲ - ଟିକିଏ ଭାବିବାକୁ ଦେ....।

ଅଲେଖ ଭାବିବେ କ'ଣମ । କବାଟ ଖୋଲିବେ । ବାବୁ କିଛି କହିଲେ ମା'ଙ୍କୁ କହିଦେବାନି । ମା'ଙ୍କ ନାଁ ଶୁଣିଲେ ବାବୁ ଏକବାରେ ଥଣ୍ଡା ।



Digitized by PPRACHIN, SOA

ଦଣ୍ଡ : ଆରେ ମା' ହେଉଛନ୍ତି ତୋର appointment authority ତୁ ରକ୍ଷା ପାଇଯିବୁ । ହେଲେ ସାର୍ ହେଉଛନ୍ତି ମୋର ସର୍ବେସର୍ବା । Mood ଠିକ୍ ଅଛିତ morning appointment ମୁଡ୍ ବିଗିଡି ଯାଇଛି evening retrenchment. ଅପିଲ କରିବାକୁ ରାହାନାହିଁ । ରହ...ଆସ୍ତେ ଆସ୍ତେ ଡାକିବା ।

ଅଲେଖ / ଦଣ୍ଡପାଣି : (ଧୀର ଗଳାରେ) ସାର୍...ସାଆର... (**କବାଟରେ ହାତ ମାରୁ ମାରୁ ସେଇଟି ଧଡଙ୍କରି ଖୋଲିଗଲା ।**)

ଦଣ୍ଡ : ଦେଖିଲୁ ମୁଁ ମନା କରୁ କରୁ...ହଠାତ୍ କରି କବାଟ ଖୋଲିଦେଲୁ । (ବିଭୂପ୍ରସାଦ ବାହାରି ଆସିଛନ୍ତି)

ବିଭୂ : You Mr. ଦଣ୍ଡପାଣି ତୁମେ ଶେଷରେ...।

ଦଣ୍ଡ : ମୁଁ disturb କରିନି ସାର୍ । କି ମୁସ୍କିଲ ।

ବିଭୂ : ମୁଁ ପଚାରୁଛି ତୁମକୁ ଏଠି କାହିଁକି appointment କରାଯାଇଛି ?

ଦଣ୍ଡ : କି ମୁସ୍କିଲ, ମୋର କିଛି ଦୋଷ ନାହିଁ ସାର୍ ମୁଁ ମନା କରୁ କରୁ ଅଲେଖ....।

ବିଭୂ : ଏଇ କବାଟ ଖୋଲିବା ନେଇ ମୋର କ'ଣ ସବୁ instruction ଥିଲା ମନେଅଛି ।

ଦଣ୍ଡ : ସବୁ ମନେଅଛି ସାର୍ - ଟିପା ଖାତାରେ ଟିପି ରଖିଛି । (ପକେଟରୁ ଖାତା କାଢି) ସକାଳ ୬-୩୦ ରେ ଚା - ଦିନ ୧-୩୦ ରେ ଲଞ୍ଚ - ଅପରାହ୍ନ ଚାରିଟାରେ ଚା' - ପୁଣି ରାତି ଏଗାରଟା ରେ ଡିନର ବ୍ୟତୀତ ସବୁବେଳେ Door closed. ମାନେ ଲାବ୍ରୋଟାରୀର ଦ୍ୱାର ବନ୍ଦ ରହିବ ସାର୍ ।

ବିଭୂ : ଏଥର ବ୍ୟତିକ୍ରମ ହେଲେ... ?

ଦଣ୍ଡ : ପନିସ୍‌ମେଣ୍ଟ ସାର୍ । ପନିସ୍‌ମେଣ୍ଟ ସହି ନପାରିଲେ ରିଟ୍ରେଞ୍ଚମେଣ୍ଟ - ରିଟ୍ରେଞ୍ଚମେଣ୍ଟ ସହି ନପାରିଲେ କମ୍ପଲସରି ରିଟାୟାରମେଣ୍ଟ



Digitized by PPRACHIN, SOA

ସାର୍... କି ମୁସ୍କିଲ ସବୁ ଘୋଷି ପାଣି କରିଦେଇଛି, ଭୁଲ ହେଇଯିବ । ତେବେ ଆଜି କଥା ଦୁସରା ସାର୍ - ରାତି ୧୨ଟା ବାଜିଲାଣି, ଆପଣ ଖାଇନାହାଁନ୍ତି ସାର୍ ।

ବିଭୂ : ଖାଇ ନାହିଁ ଗୋଟେ excuse ନୁହେଁ । ବି ରେଡି ଫର୍ ପନିସ୍‌ମେଣ୍ଟ - ତୁମେ ତୁମ କାମରେ ଭୁଲ କରିଛ ।

ଦଣ୍ଡ : ମୁଁ କିଛି ଭୁଲ କରିନି ସାର୍ । ପ୍ରଭୁଭକ୍ତ ହନୁମାନ ଭଳି ଦିନରାତି ଆପଣଙ୍କର ସେବା କରିଚାଲିଛି ।

ବିଭୂ : No - No. ତୁମର କୌଣସି କଥା ମୁଁ ଶୁଣିବାକୁ ଚାହେଁନି । ତୁମେ ହନୁମାନ - ତ ? ତୁମର punishment ହେଲା କାନଧରି 'ରାମ ଲକ୍ଷ୍ମଣ ଜାନକୀ ଜୟ ବୋଲ ହନୁମାନକି' । ଏଇ ଦୁଇ ପଦ ହଜାର ଥର ରିପିଟ୍ କର ।

ଦଣ୍ଡ : ସାର୍ ଅଲେଖ ଆପଣଙ୍କର ରାତି ଖାଇବା ଟା ଆଣିଥିଲା । ସେଇଥି ପାଇଁ ।

ବିଭୂ : No ଅଲେଖ or ଗୋଲେଖ start - ten, nine, eight, seven, six, five, four, three, two, one (ଚିତ୍କାର କରି) zero.

(ଏଇ ଚିତ୍କାରରେ କୁକୁର ଭୁକି ଉଠିଛି । ଦଣ୍ଡପାଣି କାନଧରି ରାମ ଲକ୍ଷ୍ମଣ ଜାନକୀ କହିବାରେ ଲାଗିଛନ୍ତି ।)

ଅଲେଖ : ଆଜ୍ଞା, ସକାଳ ଖାନା ଖାଇନାହାଁନ୍ତି । ରାତି ଖାନାଟା ହେଲେ ଖାଇନିଅନ୍ତୁ ।

ବିଭୂ : ମୋର ଖାଇବା ସମୟ ଗଡିଯାଇଛି । ପୁଣି କାଲି ସେ ସମୟ ଆସିଲେ ଖିଆଯିବ ।

ଅଲେଖ : କାଲି ସମୟ ଗଡିଗଲେ ପରଦିନ ଖିଆହେବ । ପରଦିନ



Digitized by PPRACHIN, SOA

ଗଡିଗଲେ - ତା ପରଦିନ ଖିଆହେବ । ଆଜ୍ଞା ଆପଣ ଖାଇବେ ନା ନାହିଁ କହିଲେ । ମା ତେଣେ ଅପେକ୍ଷା କରି ବସିଛନ୍ତି ।

ବିଭୂ : ମା ଅପେକ୍ଷା କରି ବସିଛନ୍ତି ଗୋଟେ excuse ନୁହେଁ । ତୋତେ ବି punishment ନବାକୁ ପଡିବ । ତୁ କାନଧରି ସେଇ ଭଜନ କର ।

ଅଲେଖ : ଏତେ ନବରଙ୍ଗ କରୁ କରୁ ମା' ଯଦି ଚାଲିଆସିବେ ସବୁ ମଜା ବାହାରି ପଡିବ ସେତେବେଳେ ।

ବିଭୂ : ପୁଣି ଯୁକ୍ତି... ତା'ହାଲେ ଯା ଅପେକ୍ଷା ତୋତେ ଆହୁରି ଭିଗରସ୍ ପନିସ୍‌ମେଣ୍ଟ ଦେବାକୁ ପଡିବ । ସେଲକା...ସେଲକା...।

**(କୁକୁର ଭୁକି ଉଠିଛି । ଅଲେଖ କାନଧରି ଦଣ୍ଡପାଣି ସହିତ ତାଳଦେଇ ଭଜନ ଆରମ୍ଭ କରିଛି । ଫୋନ୍ ବାଜି ଉଠିଛି । ବିଭୂ ପ୍ରସାଦ ଫୋନ୍ ଉଠେଇଛନ୍ତି ।)**

ବିଭୂ : ହ୍ୟାଲୋ ....(ବିରକ୍ତ ସହକାରେ) ଏତେ ରାତିରେ କିଏ Disturb କରୁଛି ଭାଇ । Who is speaking other side ? ଜବାବ୍ ଦେଉନା କାହିଁକି ? ହ୍ୟାଲୋ... ମିତା ବୋଉ (ହଠାତ୍ ଯେମିତି ଡରି ଯାଇଛନ୍ତି) ଆହ୍ଲାଦିନୀ । କିଏ କହିଲା (ପାଟି ଖନିମାଗିନିଏ)। ମୁଁ କେତେବେଳୁ ଖାଇସାରିଲିଣି । ଅଲେଖ ମୋତେ ଖାଇବାକୁ ଦେଇ ଚାଲିଗଲାଣି - ମିଛ ନୁହେଁ - ସତ । ବହୁତ ସୁନ୍ଦର ପ୍ରିପାରେସନ୍ ହେଇଥିଲା... କ'ଣ କ'ଣ ହେଇଥିଲା ? ? ? (ଫୋନ୍ ମୁହଁ ବନ୍ଦ କରି) ଟିଫିନ୍ କ୍ୟାରିଅରରେ କ'ଣ କ'ଣ ଆଣିଛୁ କହ ।

ଅଲେଖ : (ନଶୁଣିଲା ପରି) ରାମ ଲକ୍ଷ୍ମଣ ଜାନକୀ - ଜୟ ବୋଲ ହନୁମାନକି ।

ବିଭୂ : ତୋତେ ଶୁଣାଯାଉନି ଇଡିଅଟ୍...(ଫୋନ୍‌ରେ) ଆରେ ଆରେ ତୁମକୁ ନୁହେଁ ତୁମକୁ ନୁହେଁ - ମୁଁ ତୁମକୁ କେବେ ଇଡିଅଟ୍



Digitized by PPRACHIN, SOA

କହିପାରିବି । ଆହ୍ଲାଦିନୀ - ଦଣ୍ଡପାଣି କି କହୁଥିଲି । (ଫୋନ୍ ମୁହଁ ବନ୍ଦ କରି) ଅଲେଖ - ତୋତେ ଶୁଣାଯାଉନି ?

ଅଲେଖ : ମୁଁ ଚକୁଳି ଖାଇବା ଲୋକ ବିନ୍ଧ ଗଣିବାକୁ ଯିବି କାହିଁକି ? ରାମ ଲକ୍ଷ୍ମଣ ଜାନକୀ - ଜୟବୋଲ ହନୁମାନକି ।

ବିଭୂ : ରାସକେଲ - ତୋ ରାମ ଲକ୍ଷ୍ମଣ ଜାନକୀ ଛଡେଇ ଦଉଛି । (ଫୋନ୍‌ରେ) କ'ଣ କହିଲ ... ଅଲେଖ ପହଞ୍ଚିନି । ସେତେବେଳୁ ଗଲାଣି ଏ ପର୍ଯ୍ୟନ୍ତ ପହଞ୍ଚିନି । ଚଣ୍ଡାଳଟା ରାସ୍ତାରେ କେଉଁଠି ଶୋଇପଡିଥିବ ।

ଅଲେଖ : (ଫୋନ୍ ପାଖକୁ ଆସି) ବାବୁ ଖାଇନାହାଁନ୍ତି ମା' । ବାବୁ ମିଛ କହୁଛନ୍ତି - ମୁଁ ଏଇଠି ଅଛି ।

ବିଭୂ : ଆରେ ତୁମେ ଏଠିକି ଆସିବ କାହିଁକି ? ନାହିଁ ନାହିଁ କିଛି ଦରକାର ନାହିଁ । ମୁଁ ସାଙ୍ଗେ ସାଙ୍ଗେ ଖାଇନଉଛି । ବିଶ୍ୱାସ କର ମୁଁ ଖାଇଦେଇ ଅଲେଖକୁ ପଠେଇ ଦଉଛି । (ରିସିଭର ରଖିଦେଲେ)

ଅଲେଖ : ଏଥର ବାଢି ଦଉଛି ଆଜ୍ଞା ?

ବିଭୂ : ବାଢିବା ଦରକାର ନାହିଁ । ସେ ଲାବ୍ରୋଟାରୀରେ ରଖିଦେଇ ଯା । ନିଜେ ବାଢି ମୁଁ ଖାଇନେବି ।

ଅଲେଖ : ସେକଥା ହେବନି ଆଜ୍ଞା, ଆପଣ ଖାଇ ନିଅନ୍ତୁ । ମୁଁ ବାସନ ପତ୍ର ମାଜି ନେଇଯିବି । ଆପଣ ଖାଇସାରନ୍ତୁ ।

ବିଭୂ : ଓଃ ସେ ସବୁ ମୁଁ ନିଜେ ଧୋଇଦେବି । ଡେରି କରନା - ତୋ ମା ଚାଲିଆସିବ । ଖାଲି ତୋ ମା' ଆସିବନି ଯେ, ଆସିବ ଗୋଟେ ଘୂର୍ଣ୍ଣିବାତ୍ୟା - ଟର୍ଣ୍ଣାଡୋ । ମୋ ଲାବ୍ରୋଟାରୀ ଫାବ୍ରୋଟାରୀ ସବ୍ ଉଡେଇ ନେଇ ଚାଲିଯିବ ।

ଅଲେଖ : ହଉ ମୁଁ ଯାଉଛି । ଜାଣିବି ଯଦି ପୁଣି ଖାଇନାହାଁନ୍ତି ମା'ଙ୍କୁ ଡାକି



Digitized by PPRACHIN, SOA

ଆଣି ରାମ ଲକ୍ଷ୍ମଣ ଜାନକୀ ସବୁ କଥା କହିଦେବି । (ଅଲେଖ ଚାଲିଗଲା)

ବିଭୂ : ଯା ଯା - ଯା ମା'କୁ ମୁଁ ଯେମିତି ଡରିଛି । କିଛି ଖାଇବିନି । ସବୁ ଫୋପାଡିଦେଇ ବାସନ ଧୋଇଧାଇ ରଖିଦେବି । (ଟିଫିନ୍ କ୍ୟାରିଅର ନେଇ ଲାବ୍ରୋଟାରୀକୁ ଚାଲିଯାଉଥିଲେ)

ଦଣ୍ଡ : ମୋର ପନିସ୍‌ମେଣ୍ଟ ଆଉ କେତେ ପର୍ଯ୍ୟନ୍ତ ଚାଲିଥିବା ସାର୍ - ରାମ ଲକ୍ଷ୍ମଣ ଜାନକୀ ଜୟ ବୋଲ ହନୁମାନକି ।

ବିଭୂ : ଟୁ ଦି ଇନ୍‌ଫିନିଟି ଟାଇମ୍ ।

ଦଣ୍ଡ : କି ମୁସ୍କିଲ - ଏଇ ରାମ ଲକ୍ଷ୍ମଣ ଜାନକୀ ଭିତରେ କିଛି ବୁଝିହେଲାନି ସାର୍ ।

ବିଭୂ : ଅନନ୍ତ କାଳ ପର୍ଯ୍ୟନ୍ତ ।

ଦଣ୍ଡ : ମରିଯିବି ସାର୍ । ଟିକିଏ କନ୍‌ସେସନ୍ କରିଦିଅନ୍ତୁ । ଫୋନ୍ ଆସିଲେ କେମିତି କଥାହେବି ?

ବିଭୂ : କଥା ହେବା ଦରକାର ନାହିଁ । ମୁଁ ସେଇଟା ଅଲଗା ରଖିଦେଉଛି (ଫୋନ୍ ଅଲଗା କରିଦେଇ) ଫୋନ୍ ଟୋନ୍ ସବୁ ବନ୍ଦ ।

ଦଣ୍ଡ : କି ମୁସ୍କିଲ - ଫୋନ୍ ବନ୍ଦ ହେଇଗଲା ଅଥଚ ମୋ punish-ment ବନ୍ଦ ହବନି - ରାମ ଲକ୍ଷ୍ମଣ ଜାନକୀ....।

ବିଭୂ : No ମୁଁ ନକହିଲା ପର୍ଯ୍ୟନ୍ତ ବନ୍ଦ ହେବନି । ମନେ ରହିଲା । (ବିଭୂ ପ୍ରସାଦ ଭିତରକୁ ଚାଲିଗଲେ)

ଦଣ୍ଡ : ରିସର୍ଚ୍ଚ କରି କରି ସାର୍‌ଙ୍କ ମୁଣ୍ଡରେ ଯାହାଥିଲା ସେ ସବୁ ବିଶୁଦ୍ଧ ଗୋବର ପାଲଟି ଯାଇଛି । ମୁଁ ବି ଗୋଟେ ଗଧ । ବର୍ଷେ ଖଣ୍ଡେ ଚାକିରୀ କଲିଣି ଏ ପର୍ଯ୍ୟନ୍ତ ଜାଣିପାରିଲିନି ମୁଁ ଚିଡିଆଖାନାରେ



Digitized by PPRACHIN, SOA

ଅଛି ନା ପାଗଳ ଗାରଦରେ । (ଦଣ୍ଡପାଣି ଆପେ କାନ ମୋଡି ହୋଇ ନିଜକୁ ଥାପଡ ମାରିଲା)

ବିଭୂ : (ଭିତରୁ) 'ରାମ ଲକ୍ଷ୍ମଣ ଜାନକୀ' ବନ୍ଦ ହୋଇଗଲା । ଏପଟକୁ କିଛି ଶୁଣାଯାଉନି ।

ଦଣ୍ଡପାଣି 'ରାମ ଲକ୍ଷ୍ମଣ ଜାନକୀ' ବଡ ପାଟିରେ କହିବାକୁ ଲାଗିଲା, କ୍ରମଶଃ ସେ କହିବା ଦ୍ରୁତ ହେଲା - ଶେଷରେ କୁକୁର ଭୁକି ଉଠିଲା । ଭିତରୁ ବିଭୂ stop it ବୋଲି ଚିତ୍କାର କଲେ । ମଞ୍ଚ ଅନ୍ଧକାର ହେଲା ।)

(ଅନ୍ଧାର)





Digitized by PPRACHIN, SOA

## ତୃତୀୟ ଦୃଶ୍ୟ

(ସେଇ ବୈଠକ ଗୃହ । ସମୟ ଅପରାହ୍ନ । ବାହାରେ କିଛି ଲୋକଙ୍କ କଥା ଶୁଣାଯାଉଛି । ଦଣ୍ଡପାଣି, ତାଙ୍କ ପଛେ ପଛେ ବିଦେଶୀ ଲୋକ - ଯାହାର ବେଶଭୂଷା ଅଦ୍ଭୁତ ଢଙ୍ଗର । ସେ ଯେଉଁ ଭାଷା କହୁଛନ୍ତି ତାହା ବୁଝିବା ପାଇଁ ସାଙ୍ଗରେ ଜଣେ ଇଣ୍ଟରପ୍ରିଟର ବା ଭାଷାନ୍ତରକ ଆଣିଛନ୍ତି ।)

ଯୋଗେଶ : ମି: ଦଣ୍ଡପାଣି । ସାରଙ୍କ କଥା ଟିକିଏ ବୁଝିବାକୁ ଚେଷ୍ଟା କରନ୍ତୁ ।

ଦଣ୍ଡ : କି ମୁସ୍କିଲ । କିଓ ମୁଁ ବୁଝିବାକୁ କିଏ ।

ବିଦେଶୀ : ସୁସାସି, ସାମାଇନ ସାଇସା । ସାଗାସୁ ସିସି ସାଇନା ସିସି ।

ଦଣ୍ଡ : କି ମୁସ୍କିଲ । ଆରେ ବାବୁ ଏ ସବୁ କି ଭାଷା କହୁଛ ।

ଯୋଗେଶ : ସାର୍ କହୁଛନ୍ତି ଆପଣ ବୈଜ୍ଞାନିକଙ୍କ ସହିତ ତାଙ୍କର ଆପଏଣ୍ଟମେଣ୍ଟ ଠିକ୍ କରିଦିଅନ୍ତୁ । ସେ କଥା ହେବେ ।

ବିଦେଶୀ : ସା, ସିସାସି ସାରାସିସ୍ ସାଇନା ସାସାସା । ସାମାସୁ ସାସି ।

ଯୋଗେଶ : ସାର୍ କହୁଛନ୍ତି ଆପଣ ଯଦି କିଛି ଫିସ୍ ଚାହାଁନ୍ତି । ସେ ଦେବାକୁ ପ୍ରସ୍ତୁତ ଅଛନ୍ତି ।

ଦଣ୍ଡ : କି ମୁସ୍କିଲ । ମୋତେ ଲାଞ୍ଚ ଯାଚୁଛ । ମୋ ଚାକିରୀ ଖଣ୍ଡକ ଖାଇବ ନା କ'ଣ ? ସାରଙ୍କ ସହିତ ମୋଟେ ଦେଖା ହୋଇପାରିବନି, ଆପଣମାନେ ଯାଆନ୍ତୁ ।

ବିଦେଶୀ : ସୁସାଶି ସିସିମୁ ସିସିନୁମୁ । ସାସି ସୁସୁସୁସୁ ସୁଏମ ସିସି...।

ଦଣ୍ଡ : କି ମୁସ୍କିଲ । (ଯୋଗେଶ କୁ) ହୋ ବାବୁ ତୁମ ବାବୁ ଲଙ୍କା ଖାଇଛନ୍ତି ନା କ'ଣ ? ଏମିତି ସୁସା ସିସି ହେଉଛନ୍ତି କାହିଁକି ? ତାଙ୍କୁ କୁହ ସାର୍ ଆସିବା ପୂର୍ବରୁ ଏଠୁ ଚାଲିଯାଆନ୍ତୁ ।

(ବାହାରୁ ଆସନ୍ତି ଦୀପଙ୍କର, ନେତ୍ରାନନ୍ଦ ଓ ଜଗଦୀଶ ।)



Digitized by PPRACHIN, SOA

ଦୀପଙ୍କର : ଓଃ ଆପଣମାନେ ବୁଝୁ ନାହାଁନ୍ତି କାହିଁକି । ପ୍ରଫେସର ସାହେବ କାହା ସହିତ ଦେଖା କରିପାରିବେନି ।

ନେତ୍ରାନନ୍ଦ : ମୋତେ ପାଞ୍ଚ ମିନିଟ୍ ପାଇଁ ଦେଖା କରେଇ ଦିଅନ୍ତୁ । କୁହନ୍ତୁ ଜନସେବକ ପାର୍ଟିର ନେତା ନେତ୍ରାନନ୍ଦ ମହାନ୍ତି ଆସିଛନ୍ତି । ଜରୁରୀ କାମ ଅଛି ।

ଦୀପଙ୍କର : ନା' ସାର୍‌ଙ୍କ ଇନ୍‌ଷ୍ଟ୍ରକ୍‌ସନ୍ ଅଛି ଏବେ ତାଙ୍କୁ କେହି ଦେଖା କରିପାରିବେନି ।

ଜଗଦୀଶ : କିଉଁ, ଆମେ ଶୁନିଆସିଲା ପ୍ରଫେସର ସାହେବ୍ ମେଡିସିନ୍‌ଟା ନିକାଲି ଦେଇଛି । ମେଡିସିନ୍‌ଟା ଯିଏ ଲବ - ଗୁଟେ ଜାଗାରେ ରହି ଆଉ ଗୁଟେ ଜାଗାରେ କନ୍ କନ୍ ସବୁ ଚାଲିଛି ଦେଖିଲେଇ ପାରିବ ।

ନେତ୍ରାନନ୍ଦ : ହଁ ସେଇଥିପାଇଁ ପ୍ରଫେସର ସାହେବଙ୍କୁ ଆମେ ଅଭିନନ୍ଦନ ଜଣାଇବାକୁ ଆସିଛୁ ।

ଜଗଦୀଶ : ଆର ଯଦି ଦରକାର ପଡିବ ଆପନ ପ୍ରଫେସର ସାହିବକୁ ଡାକିଆଣିବ । ଯିତନା ରୂପାୟା ଲାଗିବ ପଛେ ଆମେ ଫର୍ମୁଲାଟା କିନିଲବ । (ଆଟାଚି ଦେଖାଇ) ଆମେ ମାଲଟା ନେଇ ଆସିଛି । କହିବ ଯଦି ଆଡଭାନ୍ସ ଟା ଦେଇଦେବ ।

ବିଦେଶୀ : (ଯୋଗେଶ କୁ) ସିସୁସା ସାମାରେ ସିସୁସାସି ସୁ ।

ଯୋଗେଶ : ସାର୍ ଆପଣ ଦୀପଙ୍କର ବାବୁ ନା । ଏ ବାବୁ ସୁଦୂର 'କାମାସାକାଟାକା' ରୁ ଆସିଛନ୍ତି । ନିଜର ଗୋଟେ ଜାହାଜ କମ୍ପାନୀ ଅଛି । ସେ ଦ୍ୱିତୀୟ ଈଶ୍ୱର ଫର୍ମୁଲା ବିଷୟରେ ଜାଣିବାକୁ ଚାହୁଁଛନ୍ତି ।

ବିଦେଶୀ : (ଦୀପଙ୍କର ସହିତ ହାତ ମିଳାଇ) ସେମାସୁ ସିମାଉ 'କାମାସାକାଟାକା' । ଦିଟିୟ ଏସ୍ୱର ଫର୍ମୁଲା...ସାମୁସାସେ ସିମାସି...ଚେକ୍ (ଚେକ୍ ଦେଖାଇଛି) ଟେନ୍ ବିଲିଅନ୍ ଡଲାର...।

ଯୋଗେଶ : ସାର୍ ଏଇ ଫର୍ମୁଲା ପାଇଁ ଦଶ ବିଲିଅନ୍ ଡଲାର୍ ଦେବାକୁ ପ୍ରସ୍ତୁତ ।



Digitized by PPRACHIN, SOA

ଦୀପଙ୍କର : ଦଣ୍ଡପାଣି ବାବୁ ଅମ ଲାବ୍ରୋଟାରୀ ଖବର ବାହାର ଲୋକ କେମିତି ଜାଣିଲେ । ସାର୍ ଏସବୁ ଜାଣିଲେ ଆମ ଅବସ୍ଥା କ'ଣ ହେବ ବୁଝୁଛନ୍ତି ।

ଦଣ୍ଡ : କି ମୁସ୍କିଲ । ଏମାନେ କେହି ବୁଝିବାକୁ ପ୍ରସ୍ତୁତ ନୁହେଁ ସାର୍ ।

ଦୀପଙ୍କର : ସାର୍ ଏଠିକି ଆସିବା ପୂର୍ବରୁ ଏମାନଙ୍କୁ ବାହାରକୁ ନେଇଯାଇ ଗେଟ୍‌ରେ ଗୋଟେ ତାଲା ପକେଇ ଦିଅନ୍ତୁ ।

ନେତ୍ରାନନ୍ଦ : ତା'ମାନେ ସାରଙ୍କ ସହିତ ଦେଖାହେଇ ପାରିବନି ।

ଜଗଦୀଶ : ହମ୍, ପାଞ୍ଚ ଦାଶ ଲାଖ୍ ଯିତ୍‌ନା ମାଙ୍ଗିବ ଦିବାକୁ ତୟାର ଅଛି । ଦେଖା ହେଇପାରିବନି ବଡ଼ ଅସୁବିଧା ହେଇଯିବ ।

ବିଦେଶୀ : ସିବିସି ସିମାସୁ ମିସାସି ଶିକୁମା ସୁସି... କମାସକାଟକା ।

ଯୋଗେଶ : କାମାସକାଟକା ରୁ ଆସି ଦେଖା ନ ମିଳିଲେ ଆମ ସାର୍‌ଙ୍କୁ ବହୁତ ଦୁଃଖ ହେବ ।

ନେତ୍ରାନନ୍ଦ :
ଯୋଗେଶ : (କୋରସ୍) ଆମକୁ କୌଣସି ଉପାୟରେ ଦେଖା କରିବାକୁ ପଡିବ ।

ଜଗଦୀଶ : ହଁ ।

ଦୀପଙ୍କର : ଆରେ ବାବୁ ସମସ୍ତେ ଚୁପ ରହିଲେ । ଶୁଣନ୍ତୁ ସାର୍‌ଙ୍କର ଔଷଧ ଏ ପର୍ଯ୍ୟନ୍ତ ତିଆରି ହେବା ଶେଷ ହୋଇନି । ମେଡିସିନ୍ ତିଆରି ହେବ । ତା'ପରେ ମଣିଷ ଦେହରେ ପରୀକ୍ଷା କରାଯିବ । ସମୟ ଆସିଲେ ଆପଣମାନଙ୍କୁ ଫାଷ୍ଟ ଚାନ୍ସ ଦିଆଯିବ । ଆପଣମାନେ ନିଜ ନିଜର ଠିକଣା ଲେଖିଦେଇ ଯାଆନ୍ତୁ । ଦୟାକରି ଏ ଦଣ୍ଡପାଣି ବାବୁଙ୍କ ସହିତ ବାହାରକୁ ଯାଆନ୍ତୁ । ଗୋଟେ ଗୋଟେ ଫର୍ମରେ ନାଁ ଠିକଣା ଲେଖି ଯାଆନ୍ତୁ । (ସମସ୍ତେ ଦଣ୍ଡପାଣି ପଛେ ପଛେ ବାହାରକୁ ଯାଆନ୍ତି । କେବଳ ଜଗଦୀଶ ରହିଯାଆନ୍ତି ।)

ଦୀପଙ୍କର : ଆପଣ ଗଲେନି ଯେ ।

ଜଗଦୀଶ : ହମ ଦିନଦୟାଲ ଜଗଦୀଶ ଲାଲ ଝୁନ୍‌ଝୁନ୍‌ୱାଲା ସୁପ୍ରିମ ଲାଲ



Digitized by PPRACHIN, SOA

ମଂଜରୀ ପାନ୍ ଜର୍ଦ୍ଦାର ପ୍ରୋପାଇଟର ଅଛି । ଲେକିନ୍ ହମକୁ ଲିଖି ଆସିନି....।

ଦୀପଙ୍କର : ଲେଖି ନଆସିଲେ ଦଣ୍ଡପାଣି ବାବୁ ଲେଖିଦେବେ ।

ଜଗଦୀଶ : ଆଡଭାନ୍ସଟା ଲେଇ ଯାଇଥିଲେ ଭଲ ହେଇଥାନ୍ତା...। ଆପନ ଦୀପକ ବାବୁ ଚାହିଁଲେ ସବକୁଛ ହେବ ।

ଦୀପଙ୍କର : (ହାତଯୋଡି) please ଯାଆନ୍ତୁ... ଦୟାକରି ଯାଆନ୍ତୁ ।

ଜଗଦୀଶ : ହାଁ ହାଁ ଆମେ ଚାଲିଯାଉଛି ଦୀପକ ବାବୁ । ଲେକିନ କହିଦେଉଛି ହମକୋ ହାତଯୋଡି ଆର ସରମିନ୍ଦା କରିବନି । ଆପନ୍ ବଡା ସାଇଁଟିଷ୍ଟ ଅଛି - ଆର ଆମେ ଗୁଟେ ଛୋଟ୍ ପାନ ଜର୍ଦ୍ଦା କମ୍ପାନୀର ମାଲିକ ଅଛି ।

ଦୀପଙ୍କର : (ଟିକିଏ ଜୋର ଗଳାରେ) ଜଗଦୀଶ ବାବୁ ।

ଜଗଦୀଶ : ନମସ୍ତେ ବାବୁଜୀ, ଯାଉଛି । ଆମକୁ ଯେମିତି ଭୁଲିଯିବନି । ନମସ୍ତେ....।

**(ଜଗଦୀଶ ଚାଲିଯାଏ । ଦୀପଙ୍କର ଟେବୁଲ ପାଖକୁ ଯାଇ ଗୋଟେ କାଗଜ ନେଇ କ'ଣ ସବୁ ଲେଖିବାକୁ ଲାଗିଲେ । ଆଲୋକ କମିଯାଇ ପୁଣି ବଢି ଉଠିଲା । ଲାବ୍ରୋଟାରୀ ଦରଜା ଖୋଲି ବିଭୂପ୍ରସାଦ ପଶିଆସିଲେ । ସେ ଯେମିତି ଖୁସିରେ ପାଗଳ ।)**

ବିଭୂ : ୟୁରେକା - ୟୁରେକା - ମୁଁ ଆଜି ପାଇଯାଇଛି ।
(ଖୁସିରେ ଗୀତ ଗାଇବା ଢଙ୍ଗରେ କହି ନାଚିଲେ) ଏତେ ଦିନପରେ ମୋତେ ମିଳିଯାଇଛି । ମୋତେ ମିଳିଯାଇଛଇ ଏତେଦିନ ପରେ, ମିଳିଯାଇଛି ମୋତେ ଏତେଦିନ ପରେ । ଆରେ ତୁମେ ଏମିତି ଚାହିଁ ରହିଛ କ'ଣ ଦୀପଙ୍କର । ଆମ ତିଆରି ସେ ଔଷଧ ଟିକକ ମଣ୍ଡି ଦେହରେ ଠିକ୍ କାମ କରିଛି । ଆମ ଗବେଷଣା ସକ୍‌ସେସ୍‌ଫୁଲ୍ ହେଇଛି ।



Digitized by PPRACHIN, SOA

ଦୀପଙ୍କର : ଏକଥା ସତ ସାର୍ । ଆମର ସେ ଚେରମୂଳ ତିଆରି ଔଷଧ ଠିକ୍ କାମ କରିଛି ?

ବିଭୂ : ଗତ ଦୁଇଦିନ ହେଲା ମଣ୍ଟିକୁ ଖାଇବାକୁ ଦେଇନଥିଲି । ତା ଆଖିରେ ପଟି ବାନ୍ଧି କାଲି ରାତିରେ ସେ ଔଷଧ inject କରି ଦେଇଥିଲି । ମାତ୍ରା ସାମାନ୍ୟ ଅଧିକା ହେବାରୁ ସେ ଶୋଇପଡିଥିଲା । ଏବେ ଦେଖ - ଆଖି ବନ୍ଦ ଥିବା ଅବସ୍ଥାରେ ସେ ଅନ୍ୟ ଘରକୁ ଯାଇ ତା ଖାଦ୍ୟ ଜିନିଷ ଖାଇବାରେ ଲାଗିଛି ।

ଦୀପଙ୍କର : ତା'ମାନେ, ତା'ର ଆଖି ବନ୍ଧା ଥିବା ଅବସ୍ଥାରେ ମଧ କେବଳ ଆମର Medicine ପ୍ରଭାବରେ ସବୁକଥା ଦେଖିପାରୁଛି ? (ଦଣ୍ଡପାଣି ଆସିଛି)

ବିଭୂ : ବିଶ୍ୱାସ ହେଉନି ? ଯାଅ ଦେଖ । ତୁମେ ବି ଯାଅ ଦଣ୍ଡପାଣି ଆମ ମାଙ୍କଡ ମଣ୍ଟିକୁ ଯାଇ ଦେଖ... ଆମର ନୂତନ ଉଦ୍ଭାବିତ ଔଷଧ 'ଦ୍ୱିତୀୟ ଈଶ୍ୱର' କେମିତି କାମ କରୁଛି ।

**(ଦୀପଙ୍କର ଓ ଦଣ୍ଡପାଣି ଗବେଷଣା ଗୃହକୁ ଯାଆନ୍ତି । ଫୋନ୍ ରିଂ ହୁଏ । ବିଭୂପ୍ରସାଦ ରିସିଭର ଉଠାନ୍ତି ।)**

ବିଭୂ : (ରିସିଭର ଧରି) କିଏ...ଆହ୍ଲାଦିନୀ । ଆରେ ତୁମର ଅଥର୍ବ ସାମୀ ହାତରେ ଆଜି ଆଲାଉଦ୍ଦିନର କୁହୁକ ଦୀପ 'ଦ୍ୱିତୀୟ ଈଶ୍ୱର' । ଆଜି ନିଜେ ଆସି ଦେଖିଯାଅ ଆହ୍ଲାଦିନୀ - ତୁମର ସେଇ ଏକଛତ୍ରବାଦୀ ଈଶ୍ୱରଙ୍କ ହାତରୁ - ଐଶ୍ୱରିକ ଶକ୍ତି ଛଡେଇ ଆଣି ତାକୁ ମୁଁ ମଣିଷ ହାତରେ ଟେକି ଦେବାକୁ ଯାଉଛି । ମୁଁ ଆଜି ମଣିଷକୁ କରିଦେଉଛି ଦ୍ୱିତୀୟ ଈଶ୍ୱର - ହାଃ - ହାଃ - ହାଃ...। କିଏ ... ତୁମେ ଆହ୍ଲାଦିନୀ ନୁହଁ । ଡେଜି ? Who is that ଡେଜି ? ଦଣ୍ଡପାଣି ସହିତ କଥା ହେବ । ତୁମକୁ କିଏ କହିଲା ଏ ନମ୍ବରକୁ ଫୋନ୍ କରିବାକୁ । Stop it. (ଫୋନ୍ ରଖିଦିଅନ୍ତି) (ମଞ୍ଚ ଅନ୍ଧକାର ହୁଏ)





Digitized by PPRACHIN, SOA

## ଚତୁର୍ଥ ଦୃଶ୍ୟ

(ସେଇ ବୈଠକ ଗୃହ । ଘର ବାହାରୁ ବାଙ୍କନିଧି, ତାଙ୍କ ପଛରେ ଦଣ୍ଡପାଣିଙ୍କ ପ୍ରବେଶ ।)

ଦଣ୍ଡ : ଶୁଣନ୍ତୁ -ଶୁଣନ୍ତୁ ଆଜ୍ଞା ।

ବାଙ୍କ : କ'ଣ ଶୁଣିବି ।

ଦଣ୍ଡ : କି ମୁସ୍କିଲ - କହିଲି ପରା ଆଜି ଦେଖା ହୋଇପାରିବନି ।

ବାଙ୍କ : ହେଃ... ହୋଇପାରିବନି । ଅପେକ୍ଷା କରି ଦେଖ ହେଇପାରୁଛି କି ନାହିଁ ।

ଦଣ୍ଡ : ମାନେ ?

ବାଙ୍କ : ମାନେ ଆପଣ ଯାଇ ମୋ ନାଁ କୁହନ୍ତୁ । ବାଙ୍କନିଧି ବାବୁ ଆସିଛନ୍ତି । ସେ ନିଶ୍ଚୟ ଦେଖା କରିବେ ।

ଦଣ୍ଡ : ଏବେତ ସାକ୍ଷାତ ସମୟ ନୁହେଁ କହିବି କାହିଁକି । ଚାଲିଲେ - ଆପଣ ସେପଟକୁ ଚାଲିଲେ ।

ବାଙ୍କ : ମୁଁ ସେପଟକୁ ଯିବି ? କେବେ ନୁହେଁ ଆପଣ ବରଂ ଯାଇ ତାଙ୍କୁ ଏଇଠିକି ଡାକନ୍ତୁ ।

ଦଣ୍ଡ : କି ମୁସ୍କିଲ ଏଇଟା ଡାକିବାର time ନୁହେଁ । ସାର୍‌ଙ୍କ mood ଭୀଷଣ ଖରାପ, ଭୀଷଣ ରାଗିଛନ୍ତି । ଏବେ ଦେଖା ହୋଇପାରିବନି - ଆପଣ ଆର ସପ୍ତାହରେ ଆସନ୍ତୁ ।

ବାଙ୍କ : ଆର ସପ୍ତାହରେ କାହିଁକି ?

ଦଣ୍ଡ : ଆପଣଙ୍କର ଭଲ ପାଇଁ କହୁଛି । ବୁଢା ହେଉଛନ୍ତି ଦୁର୍ବାସା - angry old man. ଥରେ ରାଗିଲେ ମୁଣ୍ଡ ଥଣ୍ଡା ହେବାକୁ ଗୋଟେ ସପ୍ତାହ ଲାଗିଯିବ । ସେଇଥିପାଇଁ କହୁଛି ଆର ସପ୍ତାହରେ ଆସନ୍ତୁ ।



Digitized by PPRACHIN, SOA

ବାଙ୍କ : ହୁଁ ଆଉ ସପ୍ତାହରେ ଆସିବି ?
(ହଠାତ୍ ଯାଇ କବାଟ ବାଡେଇବାକୁ ଲାଗିଲେ)

ଦଣ୍ଡ : କି ମୁସ୍କିଲ - ଗଲା - ଗଲା ମୋ ଚାକିରିଟା ଗଲା ।
(ଯାଇ ବାଙ୍କ ବାବୁଙ୍କୁ ଧରିନେଇଛି । କବାଟ ଧଡ୍ କରି ଖୋଲିଯାଇଛି ।)

ବିଭୂ : You - ଦଣ୍ଡପାଣି । ଏସବୁ କ'ଣ ଚାଲିଛି ।

ଦଣ୍ଡ : ଦେଖୁନାହାଁନ୍ତି ସାର୍ - ମୁଁ ମନା କରୁ କରୁ କେମିତି ଦରଜା ଧଡ ଧଡ ବାଡେଇ ଖୋଲି ପକେଇଲେ ।

ବିଭୂ : ସେଥିରେ ତୁମର କ'ଣ ଅସୁବିଧା ହୋଇଗଲା ।

ଦଣ୍ଡ : କି ମୁସ୍କିଲ - ଏଇଟା ସାକ୍ଷାତ ସମୟ ନୁହେଁ ସାର୍ ।

ବିଭୂ Don't talk rubbish ଚିହ୍ନିଛ ସେ କିଏ ?

ଦଣ୍ଡ : କଉ ପାନ ଜର୍ଦ୍ଦା କମ୍ପାନୀର ପ୍ରୋପାଇଟର ହୋଇଥିବେ ।

ବିଭୂ : No. ମୋର ଶଳାକୁ ଶେଷରେ ତୁମେ ଜର୍ଦ୍ଦା କମ୍ପାନୀ ପ୍ରୋପାଇଟର କରିଦେଲ ।

ଦଣ୍ଡ : କି ମୁସ୍କିଲ - ସାର ହେଉଛନ୍ତି ଆପଣଙ୍କ ଶଳା - ମୁଁ ଚିହ୍ନି ନଥିଲି ସାର୍ । ନମସ୍କାର ।

ବିଭୂ : ଚିହ୍ନି ନଥିଲ ଗୋଟେ excuse ନୁହେଁ । ମୋର ବନ୍ଧୁବାନ୍ଧବ - relation ତୁମେ ସବୁ ଚିହ୍ନିବାକୁ ବାଧ୍ୟ ।

ଦଣ୍ଡ : ଏଥର ଚିହ୍ନିବାକୁ ଚେଷ୍ଟା କରିବି ସାର୍ । (ଦଣ୍ଡପାଣି ଚାଲିଯାଆନ୍ତି ।)

ବିଭୂ : ହୁଁ ତୁମେ ହଠାତ୍ କେମିତି ଶାଳକ ମହାଶୟ ।

ବାଙ୍କ : ହଠାତ୍ ନୁହେଁ କାଲି ସଂଧ୍ୟାରେ ଆସିଛି । ଏଠି ଏମିତି କ'ଣ କାମରେ ଲାଗିଯାଇଛ ଯେ ଦୁଇ ଫର୍ଲଙ୍ଗ ଦୂରରେ ଥାଇ ମଧ୍ୟ ଘରକୁ ଯାଇପାରୁନ । ଆସିଛି ଆପଣଙ୍କୁ ଧରି ନେବାକୁ ।

ବିଭୂ : କାହିଁକି ?

ବାଙ୍କ : ମିତାର ବାହାଘର ନେଇ କିଛି ଜରୁରୀ କାମ ଅଛି ।



Digitized by PPRACHIN, SOA

ବିଭୂ : ଏଇଠି କହିଲେ ଚଳିବନି ।

ବାଙ୍କ : ନା - ବୀଣା ଆଉ ଆପଣ ଦୁଇଜଣଙ୍କ ସହ ଆଲୋଚନା ଅଛି ।

ବିଭୂ : ମୁଁ ତ Laboratory ଛାଡି ଯାଇପାରିବିନି - ଗୋଟେ ଜରୁରୀ କାମରେ ଲାଗିଯାଇଛି ।

ବାଙ୍କ : ଜଣେ ବାପା ପାଖରେ ଝିଅ ବାହାଘର ଅପେକ୍ଷା ଏଠିକାର ରିସର୍ଚ୍ଚ କାମଟା ଅଧିକ ଜରୁରୀ ହୋଇଯାଇଛି ।

ବିଭୂ : ନିଶ୍ଚୟ, ମଣିଷ ଜାତିର ବୃହତ୍ତର ସାର୍ଥ ଆଗରେ ଘର ସଂସାର, Personal pleasure ନିହାତି ତୁଚ୍ଛ, ନଗଣ୍ୟ । ସେଥିରେ ଆଶ୍ଚର୍ଯ୍ୟ ହବାରେ କିଛି ନାହିଁ ।

ବାଙ୍କ : ଆଶ୍ଚର୍ଯ୍ୟ ହବାରେ କିଛି ନାହିଁ । ତେବେ ଏଇ ବୁଢା ବୟସରେ ତୁମେ କ'ଣ ଓଲଟେଇ ପକେଇବ ଶୁଣେ ।

ବିଭୂ : ଜାଣିଛ ଯୁଗ ଯୁଗ ଧରି କଠୋର ତପସ୍ୟା, ଧ୍ୟାନ, ଯୋଗ ଦ୍ୱାରା ମୁନି ଋଷିମାନେ ଯାହା ପାଇପାରୁନଥିଲେ - ମୋ ଦ୍ୱାରା ଆବିଷ୍କୃତ ଔଷଧ ଦ୍ୱାରା ସାଧାରଣ ମଣିଷ ତାକୁ ପାଇପାରିବ । ଆମ ଦେଶ ଏଇ ଔଷଧ ଦ୍ୱାରା ଅନ୍ୟ ଦେଶର ଲାଟେଷ୍ଟ ଟେକ୍ନୋଲୋଜି ଜାଣିନେଇ କାମରେ ଲଗାଇ ପାରିବ । ଆମ ଦେଶ ଏକ ଶକ୍ତିଶାଳୀ ଦେଶରେ ପରିଣତ ହେବ ମୋ ଗବେଷଣା ଫଳରେ ।

ବାଙ୍କ : ଓଃ 'ଦ୍ୱିତୀୟ ଈଶ୍ୱର' ଭଉଣୀ ବୀଣା ପାଖରୁ ଶୁଣିଛି । ସତକୁ ସତ ଯଦି ତୁମର ସେଇ ଗୋବରଦିଆ ମୁଣ୍ଡରୁ ଏମିତି କିଛି ବାହାରୁଥାଏ ସେଇଟା ମସ୍ତ ପାଗଳାମି ଛଡା ଆଉକିଛି ନୁହେଁ ।

ବିଭୂ : (ରାଗିଯାଇ) କ'ଣ ! ମଣିଷକୁ ଐଶ୍ୱରୀକ ଶକ୍ତି ଦାନ କରିବା ମୋର ପାଗଳାମୀ ।

ବାଙ୍କ : ଖାଲି ପାଗଳାମୀ ନୁହେଁ ମସ୍ତ ପାଗଳାମୀ । ଯାକୁ ଦାନ କରି ମଣିଷ ଜାତିର ତୁମେ କି ଉପକାର କରିବ ଶୁଣେ ।

ବିଭୂ : ତୁମେ ବହିବେପାରୀ । ଦିଲ୍ଲୀରେ ରହି ବହି କେମିତି ବିକ୍ରୀ ହବ



Digitized by PPRACHIN, SOA

ସେକଥା ବୁଝ । ଏସବୁ ବଡ ବଡ କଥା ବୁଝିବାକୁ ତୁମର ମୁଣ୍ଡ ନାହିଁ ।

ବାଙ୍କ : ତୁମ କଥା ବୁଝେକି ନବୁଝେ ବୀଣା କଥା କିନ୍ତୁ ମୁଁ ବେଶ ବୁଝିପାରୁଛି ।

ବିଭୂ : ବୀଣା, ତୁମ ଗେହ୍ଲା ଭଉଣୀ ଓରଫ ଆହ୍ଲାଦିନୀ କ'ଣ କହୁଥିଲା ?

ବାଙ୍କ : ତୁମର treatment ଦରକାର ।

ବିଭୂ : What ?

ବାଙ୍କ : ତିରିଶ ବର୍ଷ, ମାଷ୍ଟ୍ର ଚାକିରି କରି 'ରିଟାୟାର୍ଡ' ହେଇଛ । ତେଣୁ ବ୍ରେନ୍ ପୁରା କଳଙ୍କି ଧରି ନେଇଛି । ତା'ର oiling ଦରକାର ।

ବିଭୂ : ତୁମେ ମୋତେ ଥଟ୍ଟା କରୁଛ ?

ବାଙ୍କ : ପାଗଳମାନଙ୍କୁ ଥଟ୍ଟା କରିବାର ମୋର ସଉକ ନାହିଁ । ତେବେ ତୁମେ ଯେତେବେଳେ ମୋର ସହପାଠୀ ଆଉ Brother-in-law, ତୁମ ପାଇଁ ମୋର କେତେଟା ଦାୟୀତ୍ୱ ରହିଯାଇଛି । ସେଇଥି ପାଇଁ ଏ ପ୍ରକାର ଏକ ଖିଆଲ ପଛରେ ନଧାଁଇବାକୁ ପରାମର୍ଶ ଦେଉଛି ।

ବିଭୂ : ଥାଉ - ତୁମ ଗେହ୍ଲା ଭଉଣୀର ସେ ପୁରୁଣା ରେକର୍ଡ ମୋତେ ଶୁଣାଇବା ଦରକାର ନାହିଁ, କି ତୁମର ପରାମର୍ଶ ମଧ ଦରକାର ନାହିଁ ।

ବାଙ୍କ : ଦରକାର ଅଛି । ସାଧାରଣ ମଣିଷ ହାତରେ ଐଶ୍ୱରୀକ ଶକ୍ତି ଦାନ କରି - ସୃଷ୍ଟିକର୍ତ୍ତାଙ୍କର ନିୟମକୁ ଅବମାନନା କରି, ତୁମେ କେବେହେଲେ ମଣିଷର ମଙ୍ଗଳ କରିପାରିବନି ।

ବିଭୂ : ମୋ ଔଷଧ ମଣିଷ ସମାଜର ଉପକାରରେ ଆସିବନି ?

ବାଙ୍କ : No - Never, ସାଧାରଣ ମଣିଷ ହାତରେ ଅଧିକ ଶକ୍ତି ଦେଇ ତୁମେ ତାକୁ କରିବ କର୍ମବିହୀନ ଅଳସୁଆ । ଫଳରେ କର୍ମ ଯେ ଜୀବନ ସେକଥା ଆସ୍ତେ ଆସ୍ତେ ଭୁଲିଯାଇ - ସେ ହେବ ପଙ୍ଗୁ, ଅଥର୍ବ ।



Digitized by PPRACHIN, SOA

ବିଭୂ : Shut up. ସେ ନୀତିବାଣୀ ମୋତେ ଶୁଣାଇବା ଦରକାର ନାହିଁ। ତୁମେ ଯାଇପାର - ମୋର ଅନେକ କାମ ବାକି ଅଛି - ହାତରେ ସମୟ କମ୍।

ବାଙ୍କ : ସେଇଥିପାଇଁ ତ ବୀଣା ମୋତେ ପଠେଇଛି। କାମ ଅନେକ ଅଥଚ ହାତରେ ସମୟ ବହୁତ କମ୍।

ବିଭୂ : ମାନେ ?

ବାଙ୍କ : ମାନେ ମୋର ଭାଣିଜୀ ମିତା - ତୁମର ଏକମାତ୍ର କନ୍ୟାର ବିବାହ ବୟସ ଗଡିଯିବାକୁ ଅଳ୍ପ ସମୟ ବାକି ଅଛି। ଅଥଚ ପିତା ହିସାବରେ ତୁମେ ସେ ବିଷୟରେ ଆଦୌ କିଛି କାମ ଆରମ୍ଭ କରିନ।

ବିଭୂ : ମିତାର ବାହାଘର ମୋ ଯୋଗୁଁ ଅଟକି ଯାଇଛି ବୋଲି କହୁଛ।

ବାଙ୍କ : Yes. ତୁମର ଉଦାସୀନତା ପାଇଁ ବୀଣା ଭାଙ୍ଗିପଡିଛି। ଗୋଟେ ଫାଲତୁ କାମରେ ଲାଗି ଘର ସଂସାର କନ୍ୟା ସ୍ତ୍ରୀ ପ୍ରତି ତୁମେ ତୁମର କର୍ତ୍ତବ୍ୟ ଭୁଲିଯାଇଛ। ତୁମର ଅବହେଳା ପାଇଁ ସେ ଦିନରାତି ଲୁହ ଗଡେଇ ଚାଲିଛି।

ବିଭୂ : ଓଃ ସେଇଥିପାଇଁ ଗେହ୍ଲା ଭଉଣୀ ତରଫରୁ ତୁମେ ଓକିଲାତି କରିବାକୁ ଧାଇଁ ଆସିଛ।

ବାଙ୍କ : ହଁ କ'ଣ ଦେଇଛ ତୁମେ ତାକୁ ? କେବେ ତା'ର ମନକଥା ବୁଝିବାକୁ ଚେଷ୍ଟା କରିଛ ? ସାଙ୍ଗରେ ନେଇ କେବେ ଭଲ ଜାଗା ବୁଲେଇ ଆଣିଛ ? ଭଲରେ ମନ୍ଦରେ ନିଜ ତରଫରୁ ତା'ପାଇଁ ଖଣ୍ଡେ ଶାଢୀ କିଣି ଦେଇଛ ? ବରଂ ତୁମ ଭଳି ଗୋଟେ ଅଥର୍ବ ବେକରେ ବାନ୍ଧିଦେଇ ଆମେ ଯେଉଁ ଭୁଲ କରିଛୁ ତା'ର ପ୍ରାୟଶ୍ଚିତ ନାହିଁ।

ବିଭୂ : ହୁଁ ଅଥର୍ବ। ଯାଙ୍କ ଭଉଣୀ ଯେମିତି ଗୋଟେ ମିସ୍ ୟୁନିଭର୍ସ ଯେ ମୋ ଗଳାରେ ବରଣମାଳା ଦେଇ ପ୍ରଳଂବ ଅଶୁଦ୍ଧ କରିଦେଇଛି। ଯେମିତି ତାଡକାମାର୍କା ଚେହେରା, ମୋ ହାତ ଧରି ତରିଯାଇଛି କୁହ।



Digitized by PPRACHIN, SOA

ବାଙ୍କ : ଥାଉ ସେ ଆଲୋଚନା ପାଇଁ ମୋର ସମୟ ନାହିଁ। ମିତା ବାହାଘର ପାଇଁ କେତେ ଟଙ୍କା ରଖିଛ ଶୁଣେ ?

ବିଭୂ : ଅପେକ୍ଷା କର - 'ଦ୍ୱିତୀୟ ଈଶ୍ୱର' ମଣିଷ ଦେହରେ ପରୀକ୍ଷା କରିସାରେ - କୋଟି କୋଟି ଟଙ୍କା ମୋ ପାଦତଳେ ଅଜାଡି ହୋଇପଡିବ।

ବାଙ୍କ : ଟଙ୍କା ପାଇବ ନା ପାଇବ କୋଟି କୋଟି ହୃଦୟର ଅଭିଶାପ। ସେ ପାଗଳାମୀ ଛାଡିଦିଅ। ମୁଁ ଆସିଛି ମିତାର ବାହାଘର ଫାଇନାଲ୍ କରିବାକୁ। ବାପା ହିସାବରେ ତୁମେ କିଛି କରିନପାରିଲେ ମୁଁ ସମସ୍ତ ଖର୍ଚ୍ଚ ବହନ କରିବାକୁ ପ୍ରସ୍ତୁତ ଅଛି।

ବିଭୂ : (ଚିତ୍କାର କରି) Get out - Get out. ବଡଲୋକି ସାଜି ମୋତେ ଦୟା ଦେଖେଇବା ଦରକାର ନାହିଁ। ବାହାରି ଯା...Get out.

ବାଙ୍କ : ଧିରେ, ଭିଣୋଇ ମହାଶୟ ଧିରେ। ବାହାରୁ କିଏ ଶୁଣିଲେ ଲଜ୍ଜିତ ହୋଇପାରନ୍ତି। ମୁଁ ଚାଲିଯାଉଛି ମୋତେ ଏତେ ଗଳା ଫଟେଇ Get out କହିବା ଦରକାର ନାହିଁ। ତୁମେ ଯାହା କହିଲେ ବି ଭାଣିଜୀ ପାଇଁ ମାମୁଁ ହିସାବରେ ମୋର ଯେତିକି କର୍ତ୍ତବ୍ୟ ମୁଁ କରିବି। କିନ୍ତୁ ଗଲାପୂର୍ବରୁ ତୁମର ସେ 'ଦ୍ୱିତୀୟ ଈଶ୍ୱର' ଖିଆଲ ଟି ଛାଡିଦବାକୁ ହାତଯୋଡି କହିଯାଉଛି। ଏତେ ଅନୁରୋଧ ସତ୍ତ୍ୱେ ତୁମ ମୁଣ୍ଡରୁ ଯଦି ସେ ଭୂତ ନ ଓହ୍ଲାଏ ....।

ବିଭୂ : (ବିଗିଡିବାର ଚରମ ସୀମାରେ)Get out I say.

(ବାଙ୍କ ହସି ହସି ଚାଲିଯାଆନ୍ତି। ବିଭୂ ବିରକ୍ତି ଭରା କଣ୍ଠରେ କହିବାକୁ ଲାଗନ୍ତି।) ଶଳା - ମୋ ଝିଅର ବାହାଘର ପାଇଁ ମୋତେ ଟଙ୍କା ଦବ ? ମୋତେ ଦୟା ଦେଖେଇବାକୁ ଆସିଛି। ଦ୍ୱିତୀୟ ଈଶ୍ୱର ବାହାର କରିବା କୁଆଡେ ମୋର ପାଗଳାମୀ। ବର୍ଷ ବର୍ଷ ଧରି କେତେ ସାଧନା - କେତେ କଷ୍ଟ ପରେ ମୁଁ ପାଇବାକୁ ଯାଉଛି। କ'ଣ କହୁଛି ମୋ ମୁଣ୍ଡରେ ଭୂତ ଚଢିଛି। ମଣିଷ ଜାତି ମୋତେ



Digitized by PPRACHIN, SOA

ଅଭିଶାପ ଦେବ । Shut up. ଶଳା ମୋ achivement ଦେଖି ମନ ସାରୁ ଖାଇଲାଭଳି ହଉଛି । ଆବେ ତୁ କି ଟଙ୍କା ଦେବୁ - ଏତେ ଦେଲାବାଲା ? ଦାନୀ କର୍ଣ୍ଣ ଦେଖେଇ ହଉଛୁ । ବାହାଘରକୁ ଖଣ୍ଡେ ସାଇକେଲ ମାଗିଥିଲି - ମିଳୁ ମିଳୁ ଗଲା ୩ ବର୍ଷ । ଯଉ ସାଇକେଲ ତ... ଢିଙ୍କି ଢିଙ୍କି... ହାରମଜାଦା । ଆବେ ତୁ ହଉଛୁ ବହି ବେପାରୀ - ଲାଞ୍ଚ ମିଛ ଦେଇ ବେପାର ଚଳେଇଛୁ - ମୋତେ ଆସି ଉପଦେଶ ଦଉଛୁ । ଶଳା ଦେଖିବୁ ସେଇଠି ତୁ ଦିଲ୍ଲୀରେ ବହି ବିକୁଥିବୁ ମୁଁ ରାଷ୍ଟ୍ରପତିଙ୍କଠୁ ଯାଇ Medal ଆଣିବି । ଦେଖ, କ'ଣ କ'ଣ ଆସି କହିଗଲା - ଆଉଥରେ ଆସିବୁ ତ ଶଳା, ଏ ଲାବ୍ରୋଟାରୀ ମଡେଇ ଦେବିନି । ଶଳା ଧପାବାଜ - ଚୁପ୍ ।
(ହଠାତ୍ ଦୁଇଜଣ ଯୁବକଙ୍କର ପ୍ରବେଶ । ଜଣେ ସାମ୍ବାଦିକ ଆଉଜଣେ ଫଟୋଗ୍ରାଫର । ଅଦ୍ଭୁତ ବେଶଭୂଷା । ଜଣଙ୍କର ନାମ ନନ୍ଦୀ ଆଉଜଣଙ୍କର ଭୃଙ୍ଗୀ ।

ନନ୍ଦୀ : ନମସ୍କାର ସାର୍ ।

ଭୃଙ୍ଗୀ : Good morning Sir.

ବିଭୂ : ଆପଣମାନେ ?

ନନ୍ଦୀ : ଆପଣମାନେ ନୁହେଁ ସାର୍ ତୁମ୍ଭେମାନେ - ରେକଗ୍‌ନାଇଜ୍ କରିପାରୁନାହାଁନ୍ତି ସାର୍ ?

ଭୃଙ୍ଗୀ : ଆମ୍ଭେମାନେ ଆପଣଙ୍କର ପୁରୁଣା student sir.

ନନ୍ଦୀ : ମୁଁ ନନ୍ଦୀ ଓରଫ ନନ୍ଦ କିଶୋର ବଳିୟାର ସିଂ ।

ଭୃଙ୍ଗୀ : ମୁଁ ଭୃଙ୍ଗୀ - ଓରଫ ଭୃଙ୍ଗରାଜ ଉତ୍ତର କବାଟ ସାର୍ ।

ନନ୍ଦୀ : ନନ୍ଦୀ ଭୃଙ୍ଗୀ ସାର୍ ।

ବିଭୂ : ନନ୍ଦୀ ଭୃଙ୍ଗୀ ?

ନନ୍ଦୀ : ଆପଣଙ୍କର କ୍ଲାସର ପଛ ବେଞ୍ଚର student ସାର୍ ।

ଭୃଙ୍ଗୀ : କଲେଜରେ ଆପଣଙ୍କର ସାଇନ୍ସ ଲାବ୍ରୋଟାରୀରୁ Acid ଚୋରି କରି Principal ଙ୍କ ଉପରେ ପକେଇବାକୁ ଚେଷ୍ଟା କରିଥିଲୁ ସାର୍ ।



Digitized by PPRACHIN, SOA

ନନ୍ଦୀ : ହେଲେ ତାଙ୍କ ଉପରେ ନପଡି ତଳେ ଢଳିଯାଇଥିଲା । ଆମେ କିନ୍ତୁ ରଷ୍ଟିକେଟ୍ ହୋଇଥିଲୁ ସାର୍ । ମନେ ପକାନ୍ତୁ ।

ଭୃଙ୍ଗୀ : ଆମେ ସେଇ ମାର୍କାମରା ନନ୍ଦୀ ଭୃଙ୍ଗୀ ସାର୍ ।

ନନ୍ଦୀ : ବର୍ତ୍ତମାନ ବହୁତ ଭଲ ହୋଇଯାଇଛୁ ସାର୍ । ଦୁଇଜଣ ମିଶି ଗୋଟେ ବିଜ୍ଞାନ ପତ୍ରିକା ସଂପାଦନା କରୁଛୁ । ନାଁ ତା'ର ବିଜ୍ଞାନ ବାର୍ତ୍ତା ।

ଭୃଙ୍ଗୀ : ଆମେ ତା'ର ଯୁଗ୍ମ ସଂପାଦକ ସାର୍ ।

ବିଭୂ : ହେଲେ ତୁମେମାନେ ଏଠି କାହିଁକି ?

ନନ୍ଦୀ : ସମ୍ବାଦ ସାର୍ । ଆପଣଙ୍କର ଚାଞ୍ଚଲ୍ୟକର ଉଦ୍ଭାବନ ଦ୍ୱିତୀୟ ଈଶ୍ୱର ର ସମ୍ବାଦ ନେବାକୁ Sir.

ଭୃଙ୍ଗୀ : ଆପଣଙ୍କର ଫଟୋ ଉଠାଇ ଦେଶ ବିଦେଶରେ ପ୍ରଚାର କରିବୁ ସାର୍ ।

ନନ୍ଦୀ : ଆପଣ ଆମର ଗର୍ବ ଆଉ ଗୌରବ ।

ଭୃଙ୍ଗୀ : ଆପଣଙ୍କର ଉଦ୍ଭାବିତ Medicine ଭାରତବର୍ଷର ଗର୍ବ । ଏଇ ଲାବ୍ରୋଟାରୀ ଏ ଦେଶର ଗୌରବ ।

ବିଭୂ : ତୁମେ 'ଦ୍ୱିତୀୟ ଈଶ୍ୱର' ବିଷୟରେ କେମିତି ଜାଣିଲ ?

ନନ୍ଦୀ : ଆମେ ଜାଣିବୁନି ସାର୍ । ଆପଣ ଓଡିଶା ମାଟିର ଜଣେ ଜିନିୟସ୍ ଆମେ ନଜାଣି ବାଟଅଛି ସାର୍ ।

ଭୃଙ୍ଗୀ : ଆପଣଙ୍କର ଛାତ୍ର ହିସାବରେ ଆପଣଙ୍କ ଗୁଣ ପ୍ରଚାର କରିବା ଆମର ପରମ କର୍ତ୍ତବ୍ୟ ସାର୍ ।

ବିଭୂ : ହେଲେ ଦ୍ୱିତୀୟ ଈଶ୍ୱର କଥା ତୁମେ କାହାପାଖରୁ ଜାଣିଲ ?

ନନ୍ଦୀ : ଆଜି phone ରେ ସାର୍ ଆପଣ ଆମର office assistant ମିସ୍ ଡେଜିକୁ କହୁଥିଲେ ।

ବିଭୂ : My God. ସବୁ ବିଭ୍ରାଟ ହୋଇଯାଇଛି ।

ନନ୍ଦୀ : କ'ଣ ସବୁ ବିଭ୍ରାଟ ହେଇଯାଇଛି ସାର୍ । ଆମକୁ କହିଦିଅନ୍ତୁ ସାର୍ । ଆମେ ସାହାଯ୍ୟ କରିବାକୁ ଚେଷ୍ଟା କରିବୁ ।



Digitized by PPRACHIN, SOA

ଭୃଙ୍ଗୀ : ଆମର ବିଜ୍ଞାନ ପତ୍ରିକା ଛପିଆରେ ସାହାଯ୍ୟ କରିବୁ ।

ବିଭୂ : ମୁଁ ସତରେ ଦ୍ୱିତୀୟ ଈଶ୍ୱର ବାହାର କରିପାରିନି ।

ନନ୍ଦୀ : ମିଛ କହୁଛନ୍ତି ସାର୍ - କିଛି ସମୟ ପୂର୍ବରୁ ଆପଣ ନିଜେ ଫୋନ୍‌ରେ...।

ବିଭୂ : ଦେଖ ତୁମେମାନେ ମୋର ପୁରାତନ ଛାତ୍ର । ତୁମକୁ କହିବାକୁ ମୋର ଆପତ୍ତି ନାହିଁ । ପ୍ରକୃତରେ ମୁଁ ଔଷଧକୁ ମଣିଷ ଦେହରେ ଏ ପର୍ଯ୍ୟନ୍ତ ପ୍ରୟୋଗ କରିନି ।

ନନ୍ଦୀ : ଏବେ ନକଲେ ଆସନ୍ତାକାଲି କରିବେ ସାର୍ ।

ଭୃଙ୍ଗୀ ଔଷଧ ଯେତେବେଳେ ବାହାରିଗଲାଣି, ମଣିଷ ଦେହରେ ପରୀକ୍ଷା କରିବାକୁ ଆଉ ବା କେତେ ସମୟ ଲାଗିବ ସାର୍ ।

ନନ୍ଦୀ : ଯେତିକି ବାଟ ଆଗେଇଛନ୍ତି ସେତିକି ଟିକେ ଟିକେ କହିଦିଅନ୍ତୁ ସାର୍ । ଆମେ ରିପୋର୍ଟ କରିଦେବୁ ।

ବିଭୂ : ନା - ନା ସେକଥା ହୋଇପାରିବନି - ତୁମେ ଚାଲିଯାଅ ।

ନନ୍ଦୀ : ସେ କେମିତି କଥା ସାର୍ ଆମକୁ ନିରାଶ କରିବେ ଆମ ମନ ଭାଙ୍ଗି ଯିବ ସାର୍ ।

ଭୃଙ୍ଗୀ : ଦୟା କରନ୍ତୁ ସାର୍ - ଆପଣଙ୍କର ଫଟୋ ଆମେ ପ୍ରଥମେ ପ୍ରକାଶ କରିବୁ ସାର୍ ।

ବିଭୂ : ଓଃ ନୋ - ମୁଁ ସେ ସବୁ ଚାହେଁନା - ତୁମେମାନେ ମୋତେ କ୍ଷମାକର ।

ନନ୍ଦୀ : ଆପଣ କ୍ଷମା ମାଗି ଆମକୁ ଲଜ୍ଜା ଦିଅନ୍ତୁନି ସାର୍ ।

ଭୃଙ୍ଗୀ : ଗୋଟିଏ ମାତ୍ର interview ୫ ମିନିଟ୍‌ର ସାର୍ ତା ସହିତ ଗୋଟିଏ ଫଟୋ ।

ବିଭୂ : ଓଃ ବିରକ୍ତ ନକରି ତୁମେମାନେ ଯାଅ । Please go.

ନନ୍ଦୀ : ସେମିତି କହିଲେ ହବ ସାର୍ ? ଆପଣ ଗୁରୁ ଆମେମାନେ ଛାତ୍ର । ଗୁରୁଙ୍କର ଛାତ୍ରଙ୍କ ପ୍ରତି କିଛି କର୍ତ୍ତବ୍ୟ ଅଛି ସାର୍ ।



Digitized by PPRACHIN, SOA

ଭୃଙ୍ଗୀ : ଏଇ ଛୋଟିଆ interview ଦେଇ ସେ କର୍ତ୍ତବ୍ୟଟା ପାଳନ କରନ୍ତୁ ସାର୍ ।

ବିଭୂ : Stop it. ମୋତେ କ'ଣ ତୁମେମାନେ ପାଗଳ କରିଦେବ ? Please go.

ନନ୍ଦୀ : କିନ୍ତୁ !

ଭୃଙ୍ଗୀ : ଆମର ଆଶା କ'ଣ ଆଶାରେ ରହିଯିବ ସାର୍ ।

ବିଭୂ : ମଣିଷ ଦେହରେ ଏସବୁ ପରୀକ୍ଷା କରି successful ହେଲାପରେ ମୁଁ ତୁମକୁ ଡକେଇ interview ଦେବି । ଏବେ ତୁମେମାନେ ଚାଲିଯାଅ ।

ନନ୍ଦୀ : କାହା ଉପରେ ପ୍ରଥମେ ପ୍ରୟୋଗ କରିବେ ସାର୍ ?

ଭୃଙ୍ଗୀ : ମାନେ ସେ ଭାଗ୍ୟବାନ ଲୋକଟି କିଏ ?

ବିଭୂ : ଓଃ ମୁଁ ଏତେ ଜେରାର ଉତ୍ତର ଦେଇପାରିବିନି । ସମୟ ଆ'ସିଲେ ଏ ସଂକ୍ରାନ୍ତରେ ଆଡଭାଟାଇଜ୍‌ମେଣ୍ଟ ବାହାରିବ । You may go now.

ନନ୍ଦୀ ଆପଣ ରାଗିଯାଉଛନ୍ତି ସାର୍ ।

ଭୃଙ୍ଗୀ : ପୁରାତନ ଛାତ୍ରମାନଙ୍କ ଉପରେ ଏମିତି ରାଗିବାଟା ଠିକ୍ ନୁହେଁ ସାର୍ ।

ବିଭୂ : ସେଲକା - ସେଲକା ।

(ଭିତରୁ କୁକୁର ଭୁକିବାର ଶବ୍ଦ ଶୁଣାଯାଏ । ନନ୍ଦୀ ଭୃଙ୍ଗୀ ଭୟଭୀତ ହୋଇ ପଳେଇ ଯାଆନ୍ତି । ପର ମୁହୂର୍ତ୍ତରେ ଫେରିଆସି ବାହାର ଦରଜା ପରଦା ପଛପାଖରୁ ଜଣେ ମୁହଁ ଦେଖାଇ କ୍ୟାମେରାରେ ଫଟୋ ଉଠାଇବା ପାଇଁ ଅନ୍ୟ ଜଣେ ନମସ୍କାର ମାରିବା ଢଙ୍ଗରେ freeze ହୋଇ ରହନ୍ତି । କ୍ୟାମେରା flash ଜଳି ଉଠେ ।

(ଅନ୍ଧାର)





Digitized by PPRACHIN, SOA

## ପଞ୍ଚମ ଦୃଶ୍ୟ

(ପୂର୍ବ ବର୍ଣ୍ଣିତ ବୈଠକ ଘର ସେଇ ବୈଠକ ଘରେ ଆସବାବର କିଛିଟା ପରିବର୍ତ୍ତନ କରାଯାଇଛି । ଟେବୁଲ୍ ଚେୟାର କାଢି ନିଆଯାଇ ସେଇ ସ୍ଥାନରେ ଦୁଇଟି ଚେୟାର ଓ ତା ସାମନାରେ ଗୋଟିଏ stand ରେ Vibrator ଲାଇଟ୍ ରଖାଯାଇ ମଣିଷ ଦେହରେ ପ୍ରଥମ କରି medicine ପ୍ରୟୋଗ କରାଯିବାର ବ୍ୟବସ୍ଥା କରାଚାଲିଛି । ଏସବୁ କରିଚାଲିଛନ୍ତି ଦୀପଙ୍କର ଓ ଦଣ୍ଡପାଣି । ବୈଠକ ଗୃହର ଅନ୍ୟ ପଟରେ ପରୀକ୍ଷାରେ ଭାଗ ନେବାକୁ ଆସିଥିବା ପ୍ରାର୍ଥୀମାନଙ୍କୁ ଅଧ୍ୟାପକ ବିଭୂପ୍ରସାଦ କଥାବାର୍ତ୍ତା ଚଳେଇଛନ୍ତି । ପରୀକ୍ଷାରେ ଭାଗ ନେବାକୁ ଅଛନ୍ତି ରବି, ଗୋଟିଏ ବାର ବର୍ଷର ପିଲା, ପୋଲିସ ଅଫିସର ପ୍ରକାଶ । ଜଗଦୀଶ ବାବୁ, ନେତା ନେତ୍ରାନନ୍ଦ ବାବୁ, ଦଣ୍ଡପାଣି, ଦୀପକ ଆଉ ଘରୋଇ ଚାକର ଅଲେଖ ।)

ବିଭୂ : ଦେଖନ୍ତୁ ଆପଣମାନଙ୍କର ସୌଭାଗ୍ୟ ଯେ, ଏତେ ଲୋକଙ୍କ ଭିତରୁ ଆପଣମାନଙ୍କୁ ଏ ପରୀକ୍ଷା ପାଇଁ ବଛା ଯାଇଛି । ଆମର ଏ ପରୀକ୍ଷାରେ ଭୟଭୀତ ହେବାରେ କିଛି ନାହିଁ । ଅନ୍ୟ injection ଭଳି ଏଇଟା injection ଆକାରରେ ଦିଆଯିବ । କିଛି ସମୟ ପାଇଁ ଏକ ସତନ୍ତ୍ର ଆଲୋକ ସାମନାରେ ବସେଇ ଦିଆଯିବ । ବାସ Medicine react କରିବାକୁ ଆରମ୍ଭ କଲେ ଆପଣଙ୍କ ମସ୍ତିଷ୍କରେ ଏକ ଅଲୌକିକ ଶକ୍ତି ଜାଗ୍ରତ ହେବ । ଆପଣ ଯେଉଁ ସ୍ଥାନକୁ ଚାହିଁବେ ସେଠିକାର ଦୃଶ୍ୟ ଦେଖିପାରିବେ ।

ରବି : ମୋ ବାପା ଆମେରିକାରେ ଜଣେ ବିଦେଶୀ ମହିଳା ସହିତ ରହିଯାଇଛନ୍ତି । ଆମ ଘରକୁ ଗତ ପାଞ୍ଚ ବର୍ଷ ହେଲା ଆସିନାହାଁନ୍ତି । ମୁଁ ଏଇଠି ରହି ତାଙ୍କୁ ଦେଖିପାରିବି ?



Digitized by PPRACHIN, SOA

ବିଭୂ : Yes ରବି । ତୁମେ ନିଶ୍ଚୟ ଦେଖିପାରିବ । ତେବେ ଆଜିର ପରୀକ୍ଷା ପାଇଁ ଏତେ ଦୂର ସ୍ଥାନ ଅପେକ୍ଷା ତୁମେ ନିକଟରେ କୌଣସି ସ୍ଥାନ ଦେଖିବାକୁ ସ୍ଥିର କରିବା ଭଲ ।

ରବି : ଠିକ୍ ଅଛି । ମୋ ସାଙ୍ଗମାନେ ଆଜି ପିକ୍‌ନିକ୍ କରିବାକୁ କପିଳାସ ଯାଇଛନ୍ତି । ସେମାନଙ୍କୁ ମୁଁ ଦେଖିବାକୁ ଚେଷ୍ଟା କରିବି ।

ବିଭୂ : Very good. ତୁମେ ତା'ହେଲେ ତୁମ ସାଙ୍ଗମାନଙ୍କୁ ଦେଖିବ ।

ପ୍ରକାଶ : ମୁଁ ହେଉଛି ସାର ପ୍ରକାଶ ଫିଂ । ଏଇ ଥାନାର ପୋଲିସ ଅଫିସର । ବହୁତ କଷ୍ଟକରି ମଧ୍ୟ ଆମେ ଗୋଟିଏ ଡକାୟତ ଦଳକୁ ଧରିବାକୁ ସଫଳ ହେଇପାରୁନୁ । ସେମାନେ କିନ୍ତୁ ଏଇଠୁ ୩୦ କି.ମି. ଦୂର ଅନନ୍ତପୁର ଜଙ୍ଗଲ ଭିତରେ ରହୁଛନ୍ତି । ମୁଁ ତାଙ୍କର ଠିକଣା ଠାବ କରିବାକୁ ଚାହେଁ ।

ବିଭୂ : ଠିକ୍ ଅଛି ଆପଣଙ୍କୁ ପ୍ରଥମେ Medicine ଦେବାକୁ ବ୍ୟବସ୍ଥା କରାଯିବ ।

ଜଗଦୀଶ : ନେହିଁ ସାହେବ । ହମେକୋ ପହଲେ ଦେବ । ହମାରା ଏକ ପାନ ଜର୍ଦ୍ଦା ଫ୍ୟାକ୍‌ଟ୍ରି ଅଛି । ଲେକିନ ହମାରା ଜର୍ଦ୍ଦାକୋ - ଡୁପ୍ଲିକେଟ୍ କରି ଏକ ବଦମାସ ଲାଭ ଉଠେଇ ନଉଛି । ହମ ଆଜ୍ ଉସକୋ ଧରିବ ଅଉର ପୋଲିସରେ ଦେବ । ଇସଲିଏ ହମ ପହିଲେ ନେବ ।

ନେତ୍ରାନନ୍ଦ : ନା' ସାର୍ । ମୋର ବହୁତ କାମ ରହିଛି । ମୋ ପୁଅ ସିଆଡେ ପଞ୍ଚାୟତ election ରେ ଠିଆ ହେଇଛି । ଆଜି election । ମୋତେ ପାଞ୍ଚଟା ପୂର୍ବରୁ ଯିବାକୁ ହେବ ।

ବିଭୂ : ଠିକ୍ ଅଛି - ଆପଣମାନେ ଏଇ ଫର୍ମ ପୁରଣ କରି ଯାହା ଯାହା ଦେଖିବାକୁ ଚାହୁଁଛନ୍ତି ଲେଖିଦିଅନ୍ତୁ । ପରେ ଯାହା ଦେଖିବେ ତାକୁ record କରନ୍ତୁ । ପଛରେ ଆମେ ସବୁ ଘଟଣାର ସତ୍ୟାସତ୍ୟ ପରୀକ୍ଷା କରିପାରିବା ।

ଦଣ୍ଡ : ସାର୍ - ଅଲେଖ ଆଉ ମୋତେ ମଧ୍ୟ ପରୀକ୍ଷାରେ ଭାଗନେବାକୁ ଦୀପଙ୍କର ବାବୁ କହିଛନ୍ତି । କିଛି ଅସିବିଧା ହେବନି ?



Digitized by PPRACHIN, SOA

ବିଭୂ : ନା' ତୁମେମାନେ ଭାଗ ନେଇପାରିବ ।

ଅଲେଖ : ଆଛା, ମୁଁ ଅନେକ ଦିନ ହେଲା ଗାଁକୁ ଯାଇନି, ଏଇଠି ରହି ମୋ ବୁଢୀ ମା'କୁ ଦେଖିପାରିବି ?

ଦଣ୍ଡ : ମୁଁ ଆଉ ତେଜି ଆସନ୍ତା ମାସରେ court marriage କରିବୁ ବୋଲି ସ୍ଥିର କରିଛୁ ସାର୍ । ଆଜି ଦିନରେ ତେଜି କ'ଣ କ'ଣ କରୁଛି ସେ ସବୁ ଦେଖି ତାକୁ ଗୋଟେ ସରପ୍ରାଇଜ୍ ଦେବାକୁ ଚାହୁଁଛି ସାର୍ ।

ବିଭୂ : ଠିକ୍ ଅଛି, ଆପଣମାନେ ଯିଏ ଯାହା ଚାହୁଁଛନ୍ତି ଦେଖନ୍ତୁ । OK my best wishes to you all. ମୁଁ ଯାଇ Medicine ପ୍ରସ୍ତୁତ କରେ । ଦୀପଙ୍କର ତୁମେ କାମ ଶେଷ କରି ଆସ...।

(ବିଭୂ ଲାବ୍ରୋଟାରୀକୁ ଚାଲିଗଲେ ।)

ଦୀପଙ୍କର : Yes Sir. ଆଛା ଆପଣମାନଙ୍କୁ କହି ଦେଉଛି Experiment ଦୃଷ୍ଟିରୁ ପ୍ରତ୍ୟେକଙ୍କୁ ଅଲଗା ଅଲଗା ମାତ୍ରାର ଔଷଧ ଦିଆଯିବ । ପ୍ରଥମେ କିଛିଟା ନିଦ ନିଦ ଲାଗିବ ସେଥିପାଇଁ ଯେମିତି ବ୍ୟସ୍ତ ହେବେନି । ମୁଁ ଆସୁଛି - ଦଣ୍ଡପାଣି ବାବୁ ଏ ଫର୍ମ ଗୁଡାକରେ ଏମାନଙ୍କର ଡାଟା ନେଇ ପୂରଣ କରନ୍ତୁ ।

(ଦୀପଙ୍କର ଲାବ୍ରୋଟାରୀକୁ ଚାଲିଗଲେ । ହଠାତ୍ ଭିତରୁ କୁକୁର ଭୁକି ଉଠିଲା । ଯନ୍ତ୍ର ସଂଗୀତର ତାଳେ ତାଳେ ଯେମିତି ଏକ ଗମ୍ଭୀର ପରିବେଶ ସୃଷ୍ଟି ହେଲା ।)

ଅଲେଖ : ମୋତେ ବଡ ଭୟ ଲାଗିଲାଣି ସେକ୍ରେଟାରୀ ବାବୁ ।

ଦଣ୍ଡ : ରହ ବ୍ୟସ୍ତ ହଅନି । ମଙ୍ଗଳମୟ ଈଶ୍ୱରଙ୍କୁ ଧ୍ୟାନ କର ।

ଅଲେଖ : ହେ ମା ତାରିଣୀ - ତୁ ରକ୍ଷା କରିବୁ ଲୋ ମା'....।

ଜଗଦୀଶ : ହମକୋ ଭି ମଦତ୍ କରିବୁ ମା । ଶାଳା ଡୁପ୍ଲିକେଟର କୁ ଧରିନେଇ ପାରିଲେ ରୂପାର ମକୁଟ୍ ଲଗାଇବ ।

ନେତ୍ରାନନ୍ଦ : ଘବରାଓ ମତ କିଛି ହବନି । ଔଷଧ ନେବା ପୂର୍ବରୁ ଏତେ ଛାନିଆ କାହିଁକି ?



Digitized by PPRACHIN, SOA

ପ୍ରକାଶ : ଓଃ ସମସ୍ତେ ଚୁପ ରୁହନ୍ତୁ ।

ନେତ୍ରାନନ୍ଦ : ତୁମ କଥା ଅନୁସାରେ ଚୁପ୍ ରହିବୁ କାହିଁକି ? ତୁମେ ଏମିତି କିଏ କି ?

ପ୍ରକାଶ : Shut up. ସାମନାରେ କ'ଣ ଲେଖାଯାଇଛି ଦେଖାଯାଉନି । 'ନୀରବତା ରକ୍ଷା କରନ୍ତୁ' ।

ଦୀପଙ୍କର : (ପ୍ରବେଶ) Please. ଦୟାକରି ସମସ୍ତେ ଚୁପ୍ ରୁହନ୍ତୁ ।

ନେତ୍ରାନନ୍ଦ : ଦେଖନ୍ତୁ ମୋତେ ଟିକିଏ first preference ଦିଅନ୍ତୁ । ଅନେକ ଗୁଡାଏ ଟଙ୍କା ଖର୍ଚ୍ଚ କରି ଦେଇ ଆସିଛି । ସିଆଡେ ଭୋଟ ଦିଆ ଚାଲିଛି । ପାଞ୍ଚଟା ପୂର୍ବରୁ ବୁଥ୍‌ମାନଙ୍କରେ ଘେରେ ବୁଲି ଆସିବାକୁ ହେବ ।

ଦୀପକ : ଠିକ୍ ଅଛି, ଆପଣ ଏଇ ଚୌକିରେ ବସନ୍ତୁ ।
(ନେତ୍ରାନନ୍ଦ ଯାଇ ଚୌକିରେ ବସି ପଡିଲେ । ତାଙ୍କ ସାମନାରେ ଦୀପଙ୍କର ଗୋଟିଏ ଆଲୋକର ଷ୍ଟାଣ୍ଡ ନେଇ ଜଳାଇ ଦିଅନ୍ତି । ଯନ୍ତ୍ର ସଂଗୀତର ଗମ୍ଭୀରତା ସହିତ ଅଧ୍ୟାପକ ବିଭୂପ୍ରସାଦ ଗୋଟିଏ ଅପେକ୍ଷାକୃତ ବଡ ସିରିଞ୍ଜ ଧରି ପ୍ରବେଶ କରନ୍ତି ।)

ନେତ୍ରାନନ୍ଦ : ଦେଖନ୍ତୁ ଏତେ ବଡ ମୋଟା ଛୁଞ୍ଚିରେ ମୁଁ ନେଇପାରିବନି ।

ବିଭୂ : ରୁହନ୍ତୁ ସେମିତି ପାଟି କରନ୍ତୁନି ।

ନେତ୍ରାନନ୍ଦ : (ଚିତ୍କାର କରି) ନାହିଁ - ନାହିଁ ସେ କଥା ହେଇପାରିବନି ।

ବିଭୂ : ପାଟି କରନ୍ତୁନି ଏମିତି ମିଛରେ ଚିତ୍କାର କଲେ ଅନ୍ୟମାନେ ଭୟଭୀତ ହୋଇପାରନ୍ତି । ଦଣ୍ଡପାଣି ।

ଦଣ୍ଡ : ସାର୍ ।

ବିଭୂ : ବାହାରକୁ ଯିବାର ଦରଜା ସବୁ ବନ୍ଦ କରିଦିଅ ।
(ଦଣ୍ଡପାଣି ଦରଜା ସବୁ ବନ୍ଦ କରିବାକୁ ଚାଲିଗଲେ ।)

ନେତ୍ରାନନ୍ଦ : ଏସବୁ କ'ଣ ଚାଲିଛି ? ମୁଁ ପୋଲିସରେ ରିପୋର୍ଟ କରିବି ।
(ସମସ୍ତେ ମିଶି ନେତ୍ରାନନ୍ଦ କୁ ଧରି ନିଅନ୍ତି - ବିଭୂପ୍ରସାଦ



Digitized by PPRACHIN, SOA

injection ଦିଅନ୍ତି । ନେତ୍ରାନନ୍ଦ ମୁହଁକୁ ବିକୃତ କରି ଆସ୍ତେ ଆସ୍ତେ ନିସ୍ତେଜ ହୁଅନ୍ତି ।)

ଦୀପକ : କୌଣସି reaction ହେବା କଥା ନୁହେଁ ସାର୍ । ଏମିତି କାହିଁକି ହେଲା ।

ବିଭୂ : ସେ କିଛି ନୁହେଁ । ଅତ୍ୟନ୍ତ ନର୍ଭସ ହୋଇ ସେ ସେମିତି ହୋଇଛନ୍ତି । ତାଙ୍କୁ ନେଇ ସୋଫା ଉପରେ ବସେଇ ଦିଅ ।

(ନେତ୍ରାନନ୍ଦଙ୍କୁ ନେଇ ସୋଫା ଉପରେ ବସେଇ ଦିଆଗଲା ।)

ପ୍ରକାଶ : ବାଃ, ବହୁତ ଲମ୍ବା ଲମ୍ବା ଭାଷଣ ଦେଉଥିଲା । ସାମାନ୍ୟ ଇଞ୍ଜେକ୍ସନ୍ ଦେଖି ଛାନିଆ । ଦଅନ୍ତୁ ମୁଁ ଠିଆ ହୋଇ ନେଇପାରିବି ।

ବିଭୂ : No, Please take your seat.

**(ପ୍ରକାଶ ବସିଗଲେ । ଆଲୋକ ଦେବା ସହିତ injection ମଧ୍ୟ ଦିଆଗଲା । ପ୍ରକାଶ 'ଆଃ' ବୋଲି ଚିତ୍କାର କରି ନିସ୍ତେଜ ହୁଅନ୍ତି । ତାଙ୍କୁ ସୋଫା ଉପରେ ନେଇ ବସେଇ ଦିଆଯାଏ । ଜଗଦୀଶ ଅତ୍ୟଧିକ ଭୟଭୀତ ହୋଇ ଥରିବାକୁ ଆରମ୍ଭ କରନ୍ତି ।)**

ଜଗଦୀଶ : ମେହରବାନି କରି ହମକୋ ଛାଡିଦେବ ସାର୍ । ହମାରା କୁଛ ଦରକାର ନେହିଁ ।

ବିଭୂ : ନା ସେମିତି କହିଲେ ଚଳିବ । ତୁମ ପାନ ଜର୍ଦ୍ଦାକୁ କିଏ duplicate କରୁଛି ଜାଣିବନି ?

ଜଗଦୀଶ : ଯୋ କରୁଛି କରୁ ସାହେବ । ଜିତନା ରୁପିୟା ଲବା କଥା ଲେଇ ଯାଆନ୍ତୁ । ପରନ୍ତୁ ମୁଝେ ଛୋଡ୍ ଦିଜିଏ । (ଗୋଡ ଧରି ନେଇଛି ।)

ବିଭୂ : ଆରେ ବାବୁ କିଛି ଅସୁବିଧା ହବନି - ମିଛରେ କାହିଁକି ଡରୁଛନ୍ତି ।

ଜଗଦୀଶ : ମୁଝେ ବଚାଇଏ ସାହେବ । (କାନ୍ଦି ଉଠିଛି)

ଦୀପକ : ସାର୍ ଜଗଦୀଶ ବାବୁ ବରଂ କିଛି ସମୟ ରହିଯାଆନ୍ତୁ । ସେ ଅତ୍ୟଧିକ ନର୍ଭସ ହୋଇଯାଇଛନ୍ତି ।



Digitized by PPRACHIN, SOA

ଜଗଦୀଶ : ହଁ ସାହେବ । ଆପନ ଠିକ୍ କହିଛି । ନେହିଁ ତୋ ମେରା ହାର୍ଟ ଫେଲ୍ କରିବ ।

ବିଭୂ : ଠିକ୍ ଅଛି, ଆପଣ ସେଇଠି ବସିରହନ୍ତୁ ।
(ଜଗଦୀଶ ଯାଇ ଗୋଟେ ସୋଫା ଉପରେ ବସି ରହିଲେ ଏବଂ ଆଖି ବନ୍ଦ କରି ମନେ ମନେ ଭଗବାନଙ୍କୁ ଡାକିବାରେ ଲାଗିଲେ ।)

ବିଭୂ : Next ?

ରବି : ମୋ ପାଳି ସାର୍ ।

ବିଭୂ : ବାଃ smart boy...bravo, bravo.
(ରବି ବସିଯାଏ ତାଙ୍କୁ injection ଦିଆଯାଏ । ସେ କେବଳ ମାତ୍ର ଇସ୍ ଶବ୍ଦ କରି ଆପେ ଆପେ ଉଠି ସୋଫା ଉପରକୁ ଚାଲିଯାଏ ।)
Thats like a good boy. (ଅଲେଖ ପ୍ରବେଶ କରିଛି)

ଦୀପକ : ସାର୍। ଦଣ୍ଡପାଣି ଆଉ ଅଲେଖ ଏମାନେ ଆମର ଲୋକ। ଏଇମାନଙ୍କ ଠାରୁ result ଜାଣିସାରିଲା ପରେ ଦେଲେ କେମିତି ହୁଅନ୍ତା ।

ବିଭୂ : କେମିତି ହୁଅନ୍ତା ଗୋଟେ excuse ନୁହେଁ । ତୁମେ ମଧ୍ୟ ଆମର ଏ ଔଷଧର କାମ ଉପରେ ସନ୍ଦେହ କରୁଛ ଦେଖୁଛି ।

ଦୀପକ : ନା' ସାର୍ - ମୁଁ କହୁଥିଲି ।

ବିଭୂ : Shut up ମୋ ସହିତ ଆଉ ଯୁକ୍ତି କରନି । ଆମେ ଏଇ ଦୁଇଜଣଙ୍କୁ injection ଦେଇ ସମସ୍ତଙ୍କର reaction ନୋଟ୍ କରିବା - ଅଲେଖ ଏଠିକି ଆସ ।

ଅଲେଖ : ମା ମୋତେ ଗାଳି ଦେବେ ଆଜ୍ଞା, ତାଙ୍କୁ ଟିକିଏ ପଚାରି ଆସେ ।

ବିଭୂ : ତୁ ଯେମିତି ମୂର୍ଖ - ତୋ ମା ବି ସେମିତି । ଏଇଠି ଆସି ବସ । ତୁମେବି ଦଣ୍ଡପାଣି ଏଠି ଆସି ବସିଯାଅ ।
(ଅଲେଖ ଓ ଦଣ୍ଡପାଣି ଦୁଇଟି ଚୌକିରେ ବସି ପଡନ୍ତି। ବିଭୂପ୍ରସାଦ ଦୁଇଜଣଙ୍କୁ injection ଦିଅନ୍ତି । ଦୀପଙ୍କର ସେ ଆଲୋକ fix କରନ୍ତି । ଅଲେଖ ଓ ଦଣ୍ଡପାଣି ଦୁଇଜଣଯାକ ଆଖିବନ୍ଦ କରି ସେ ଚୌକିରେ ବସି ରୁହନ୍ତି ।)



Digitized by PPRACHIN, SOA

ଦୀପଙ୍କର ଏଥର ତୁମର ସେ Note ବହି ଆଣି ପ୍ରତ୍ୟେକଙ୍କର reaction note କର । (ବିଭୁ ଲାବ୍‌କୁ ଯାଆନ୍ତି)

**(ହଠାତ୍ ନେତ୍ରାନନ୍ଦ ତାଙ୍କ ବସିବା ସ୍ଥାନରୁ ତଳକୁ ଗଡ଼ିପଡନ୍ତି । ଦୀପଙ୍କର ତାଙ୍କ ପାଖକୁ ଧାଇଁ ଯାଏ ଓ ତାଙ୍କର ନାଡିର ଗତି, ଛାତିର ସ୍ପନ୍ଦନ ଜାଣିବାକୁ ଚେଷ୍ଟା କରେ । ଅନ୍ୟମାନଙ୍କର ବିଭିନ୍ନ ପ୍ରକାର reaction ହୁଏ । କିଏ ଥରିବାକୁ ଲାଗେ ତ କାହାର ଦେହ ଷ୍ଟିଫ୍ ହେଇଯାଏ । କିଏ ଘଣ୍ଟାର ପେଣ୍ଡୁଲମ୍ ଭଳି ମୁଣ୍ଡକୁ ହଲାଇବାକୁ ଲାଗେ ।)**

ଦୀପକ : ନେତ୍ରାନନ୍ଦ ବାବୁଙ୍କ ଦେହ ପୁରା ଥଣ୍ଡା ସାର୍ । (ନାଡି ଦେଖି) My God. (ବିଭୂ ଆସନ୍ତି)

ବିଭୂ : କ'ଣ ହେଲା ?

ଦୀପକ : Pulse rate ବହୁତ କମ୍ ସାର୍ ।

ବିଭୂ : No. No ଏମିତି ହୋଇପାରେନା । (ନିଜେ ଦେଖିବାକୁ ଚେଷ୍ଟା କରିଛନ୍ତି । ଦୀପକ, ପ୍ରକାଶ, ଦଣ୍ଡପାଣି ସମସ୍ତଙ୍କ ଦେହରେ ହାତ ମାରି ।)

ଦୀପକ : ସାର୍ - ଏମାନେ ସମସ୍ତଙ୍କର ଅବସ୍ଥା ଏକା ସାର୍ ସମସ୍ତଙ୍କର ଦେହ କୋଲାପସ୍ ହେବାକୁ ଯାଉଛି ଆଉ heart beat ବି ଶୁଣାଯାଉନି । (ଛାତିରେ ମୁଣ୍ଡ ଲଗେଇ ପରୀକ୍ଷା କରିବାକୁ ଲାଗିଲେ ।)

ଜଗଦୀଶ : (ଥର ଥର କଣ୍ଠରେ) ହେ ଭଗବାନ - ମୁତେ ବଞ୍ଚାଦୋ ଭଗବାନ । ମୁଝେ କ୍ରିପା କରୋ ।

ବିଭୂ : ଚୁପ୍, ପାଟି କରନି ।

ଜଗଦୀଶ : ମୁଝେ ଛୋଡ ଦିଜିଏ ବାବୁଜୀ (କାନ୍ଦି) ମୁଝେ ଛୋଡ ଦିଜିଏ ।

ବିଭୂ : ବେଶୀ ପାଟିତୁଣ୍ଡ ନକରି ସେଠି ବସ । ନହେଲେ ତୁମରି ଏଇ ଅବସ୍ଥା କରିଦେବି ।

ଦୀପକ : ଏସବୁ କ'ଣ ଘଟିଯାଉଛି ସାର୍ - ଆମର ଡୋଜ୍ ନିଶ୍ଚୟ over ହୋଇଯାଇଛି ।



Digitized by PPRACHIN, SOA

ବିଭୂ : ଠିଆ ହୋଇ ରହିଲ କାହିଁକି । ଯାଅ ଆଣ୍ଟିଡୋଜ୍ ଟା ନେଇଆସ । ସେଇଟା inject କରି ଏମାନଙ୍କୁ normal କରିବାକୁ ହବ - ଯାଅ ।

ଦୀପକ : ମୋତେ ବଡ ଭୟ ଲାଗିଲାଣି ସାର୍ - ଏକାବେଳେକେ ଏତେ ଲୋକଙ୍କୁ injection ଦେବାଟା ଠିକ୍ ହେଇନି ।

ବିଭୂ : ଓଃ ମୋତେ ବିରକ୍ତ କରନା କହୁଛି । ଯାଅ lab ରୁ ଆଣ୍ଟିଡୋଜ୍ ଟା ନେଇଆସ - ଯାଅ । (ଦୀପଙ୍କର ଚାଲିଯାଏ । ବିଭୂ ପୋ:ଇ: ପାଖକୁ ଯାଇ ପରୀକ୍ଷା କରି) My God. ନିଶ୍ୱାସ ପ୍ରଶ୍ୱାସ ବି ବନ୍ଦ । ପ୍ରକାଶ ପ୍ରକାଶ...।

(ବିଭୂ ପ୍ରତ୍ୟେକ ଲୋକ ପାଖକୁ ଯାଇ ପରୀକ୍ଷା କରିଛନ୍ତି । ସମସ୍ତେ ଆସ୍ତେ ଆସ୍ତେ ନିସ୍ତେଜ ହେଲାଭଳି ଅଭିନୟ କରିଛନ୍ତି । କିନ୍ତୁ ଦଣ୍ଡପାଣିର ଦେହ ସତେ ଯେମିତି ଷ୍ଟିପ୍ ହୋଇଯାଇଛି ହାତକୁ ଉଠେଇଲେ ଟେକି ହୋଇ ରହୁଛି । ଠିକ୍ ଗୋଟିଏ ଶବର ହାତ ଭଳି ।) ଦୀପକ ଆସି ଆଣ୍ଟିଡୋଜର ଶିଶି ଧରି ଠିଆହେଲା ।

ବିଭୂ : Oh God. ଆରେ ଠିଆହୋଇ ରହିଛ କ'ଣ ? ସେ ସିରିଞ୍ଜ ଗୁଡାକରେ ତାକୁ load କର ।

(ଦୀପକ load କରିବାକୁ ଲାଗିଲେ)

ବିଭୂ : Quick - Quick ଦୀପଙ୍କର Quick (ଚିତ୍କାର କରିଛନ୍ତି । ସେ ଚିତ୍କାରରେ ଶିଶିଟି ଦୀପକ ହାତରୁ ତଳକୁ ଖସି ଔଷଧ ଢଳିଯାଇଛି ।)

ବିଭୂ : (ଦୀପକକୁ ଥାପଡ ମାରି) you idiot ଏସବୁ କ'ଣ କଲ । ମୋତେ ପାଗଳ କରିଦେବ ତୁମେ । ଏମିତି ବୋକାଙ୍କ ଭଳି ଠିଆ ହୋଇ ରହିଲ କା'ଣ । ଯାଅ ଦେଖ ଆଉ ଗୋଟେ ଥାଇପାରେ ।

(ଦୀପକ lab ଭିତରକୁ ଚାଲିଯାଏ)

ମୁଁ ଏସବୁ କ'ଣ କଲି ଭଗବାନ । ଦୀପଙ୍କର Quick. ଏଇ ଅବସ୍ଥାରେ ଡେରି କରିବା ମାନେ ଫାଶି ଖୁଣ୍ଟରେ ଝୁଲିବା ....।



Digitized by PPRACHIN, SOA

ଦୀପକ : (ପ୍ରବେଶ) ପାଉନି ସାର୍ - କୋଉଠି ସେ ବଟଲଟା ଅଛି ଜାଣିପାରୁନି ।

ବିଭୂ : Ten percent concentration ର ସେ chemical ଟା ସେଇ ଆଲମିରା ଭିତରେ ଅଛି । ଜଲଦି ।

(ଦୀପକ ପୁଣି ଚାଲିଯାଇଛି । ବିଭୂ ପାଗଳଙ୍କ ଭଳି ଏପଟ ସେପଟ ହୋଇଛନ୍ତି । ଦୀପକ ଆସିଛି ହାତରେ ଦୁଇଟି ଶିଶି ।)

ବିଭୂ : (ଶିଶି ଦେଖି) ମୁଁ ତୁମକୁ ten percent concentration ମାଗୁଛି ତୁମେ five percent concentration ର ନେଇଆସିଛ ।

ଦୀପକ : Ten percent ପାଉନି ସାର୍ five percent ରୁ ଦି'ଟା ନେଇଆସିଛି । ଏଥିରେ ହବନି ସାର୍ ।

ବିଭୂ : କେମିତି ହୋଇଯିବ । Idiot ୨୦ ବର୍ଷର ଝିଅ ବାହାହେବା ବଦଳରେ ୨ଟା ଦଶ ବର୍ଷର ଝିଅ ବାହାହେଲେ ଚଳିବ ?

ଦୀପଙ୍କର : ନାଇଁ ସାର୍ ।

ବିଭୂ : ଆରେ ବୋକାଙ୍କ ଭଳି ଠିଆ ହୋଇ ରହିଲ କ'ଣ ? ସେଇ ଦି'ଟା ବୋତଲକୁ ଏକାଠି କରି spirit lamp ରେ ଗରମ କର ।

ଜଗଦୀଶ : (କାନ୍ଦି, ଆସି ପୁଣି ଗୋଡ ଧରିଛି) ମୁଝେ ଛୋଡ ଦିଜିଏ ବାବୁଜୀ...। (ବିଭୂ ପାଖ ଘରୁ ଗୋଟେ ନିକୋପ୍ଲାଷ୍ଟ ଆଣି ଜଗଦୀଶ ମୁହଁରେ ମାରିଦିଅନ୍ତି । ସେ ଗଁ ଗଁ ଶବ୍ଦ କରେ ।)

ବିଭୂ : (ବିରକ୍ତରେ) ଓଃ କାହିଁକି ମୋତେ ବିରକ୍ତ କରୁଛ ତୁମେ । ଚାଲ - ଚାଲ, ସେ ଘରକୁ ଚାଲ ତୁମକୁ ବନ୍ଦ କରି ନ ରଖିଲେ ହବନି ।

**(ଜଗଦୀଶକୁ ଠେଲି ଠେଲି ନେଇ ଗୋଟିଏ ଘରେ ବନ୍ଦ କରିଦେଲେ । ଫୋନ୍ ରିଂ ହେଲା - ଆସି ରିସିଭର ଧରିବେ ନା ନାହିଁ ସ୍ଥିର କରି ନପାରି ଉଠାଇ ଧରିଲେ...।)**

ବିଭୂ : କିଏ ? ଥାନାରୁ କହୁଛନ୍ତି ? କାହାକୁ ? ପୋଲିସ ଅଫିସର ପ୍ରକାଶ



Digitized by PPRACHIN, SOA

ଙ୍ ? ସେ ଏଠିକି ଆସିନାହାଁନ୍ତି । ଆରେ ବାବୁ ଥରେ କହିଲି ସେ ଆସିନାହାଁନ୍ତି ।

(ରିସିଭର ରଖି ଦେଇଛନ୍ତି । ଦୀପଙ୍କର ପ୍ରବେଶ କରିଛି ।)

ଦୀପଙ୍କର : କ'ଣ ହେଲା ସାର୍ ? ଏଟାକୁ ଗରମ କରି ନେଇଆସିଲି । ସିରିଞ୍ଜରେ ଲୋଡ କରିବି ।

ବିଭୂ : ସେ ସବୁ କଥା ପରେ କରିବ ଦୀପଙ୍କର । ଥାନାର Officer in-charge ଏଠିକି ବର୍ତ୍ତମାନ ଆସିଯାଇପାରନ୍ତି । ତା ପୂର୍ବରୁ ଏମାନଙ୍କୁ ବିଶେଷତ ପ୍ରକାଶକୁ ଆମର ଷ୍ଟୋର ରୁମରେ ନେଇ ଲୁଚାଇ ଦେବାକୁ ପଡିବ ।

ଦୀପଙ୍କର : ଆଉ ଆମର ଏଇ ଆଣ୍ଟିଡୋଇ୍ ଗୁଡାକ ।

ବିଭୂ : ଆରେ ମୁଁ ଯାହା କହୁଛି ସେ କଥା ପ୍ରଥମେ କର । ଆସ ଭିତର ରୁମଟା ସଜାଡି ଦେବା । (ବିଭୂ ଓ ଦୀପକ ଚାଲିଯାଆନ୍ତି ।)

ନେତ୍ରାନନ୍ଦ : ଓଃ ଓଃ (ଦୀପଙ୍କର ପ୍ରବେଶ)

ଦୀପକ : ନେତ୍ରାନନ୍ଦ ବାବୁଙ୍କ sense ଫେରିଛି ସାର୍ । (ବିଭୂପ୍ରସାଦ ଆସନ୍ତି)

ବିଭୂ : ନେତ୍ରାନନ୍ଦ ବାବୁ ... ନେତ୍ରାନନ୍ଦ ବାବୁ ।

ନେତ୍ରା : Don't disturb. ପାଟି କରନ୍ତୁନି ।

ବିଭୂ : ମୁଁ ବିଭୂପ୍ରସାଦ କହୁଛି । ଆଖି ଖୋଲନ୍ତୁ - ମୋତେ ଦେଖନ୍ତୁ । (ନେତ୍ରାନନ୍ଦ ବିଭୂ ଆଡକୁ ଧ୍ୟାନ ନଦେଇ)

ନେତ୍ରା : ଶଳା - ମୋ ସହିତ ପୁଣି ବେଇମାନି । ମୁଁ ତୁମମାନଙ୍କୁ ଦେଖିନେବି । (ବିଭୂ ନେତ୍ରାନନ୍ଦଙ୍କୁ ହଲେଇ ଦେଇ) (ଆଖି ଖୋଲି) ମୁଁ ଏଠି, ମୁଁ ତ election booth ରେ ଥିଲି । ଏଠିକି କେମିତି ଆସିଲି ।

ବିଭୂ : ନା' ଏ ଜାଗାକୁ ଚିହ୍ନିବାକୁ ଚେଷ୍ଟା କର ନେତ୍ରାନନ୍ଦ । ତୁମେ ବର୍ତ୍ତମାନ ଏଇଠି ମୋ ଲାବ୍ରୋଟାରୀ ସାମନା ରୁମ୍‌ରେ ।



Digitized by PPRACHIN, SOA

ନେତ୍ରା : ମୁଁ ସେମାନଙ୍କୁ କେବେ ଛାଡିବିନି ସାର୍। ସେ ଗାଁରେ ନିଆଁ ଲଗେଇ ଦେବି।

ଦୀପକ : ମାନେ ?

ନେତ୍ରା : ମୋ ପୁଅ ସରପଞ୍ଚ ପାଇଁ ଠିଆ ହେଇଛି। କାଲି ରାତିରେ ବଉଦପୁର ଗାଁରେ ମୋ ପୁଅକୁ ଭୋଟ ଦେବାକୁ ୫୦ ହଜାର ଟଙ୍କା ବାଣ୍ଟି ଦେଇଛି । ଅଥଚ ସେମାନେ ବର୍ତ୍ତମାନ ମୋ ପୁଅର ବିରୋଧି ଚିହ୍ନରେ ଭୋଟ୍ ବାଡେଇ ଚାଲିଛନ୍ତି। ବଉଦପୁରିଆଙ୍କୁ ବମ୍ ପକେଇ ଉଡେଇ ଦେବି।

ବିଭୂ : କ'ଣ ସବୁ ଗପିଚାଲିଛ ନେତ୍ରାନନ୍ଦ।

ନେତ୍ରା : ଆଜ୍ଞା, ଆଖି ବନ୍ଦ କଲାମାତ୍ରେ ମୁଁ ବଉଦପୁର ଗାଁର ସେ ଭୋଟ କେନ୍ଦ୍ର ଦେଖିପାରୁଛି ସାର୍। (ଆଖି ବନ୍ଦ କରି) ହେଇ - ସେମାନେ ସବୁ ଧାଡିବାନ୍ଧି ବୁଥ୍ ଭିତରକୁ ଯାଉଛନ୍ତି। ହେଇ ମୋ ବିରୁଦ୍ଧରେ ଭୋଟ ଦେଉଛନ୍ତି। (ଆଖିଖୋଲି) ମୋତେ ଦୟାକରି ଛାଡି ଦିଅନ୍ତୁ ସାର୍। ମୁଁ ବର୍ତ୍ତମାନ ବଉଦପୁର ଚାଲିଯିବି।

ବିଭୂ : ନା ନା ଦ୍ୱିତୀୟ ଈଶ୍ୱର ର ପ୍ରଭାବ ଥିଲା ପର୍ଯ୍ୟନ୍ତ ତୁମେ କୁଆଡେ ଯାଇ ପାରିବନି । ସେଇଠି ସେ ଘରେ ବସନ୍ତୁ । ଆସ୍ତେ ଆସ୍ତେ ଆପଣ Normal ହୋଇଯିବେ । ସେ ଘରେ ସତନ୍ତ୍ର ବ୍ୟବସ୍ଥା କରାଯାଇଛି।

(ବିଭୂ ଓ ଦୀପକ ନେତ୍ରାନନ୍ଦକୁ ଭିତରକୁ ନେଇ ଛାଡି ଆସନ୍ତି।)

ରବି : (ଉଠିପଡି) ମୋତେ ଗୋଟେ କଲମ କାଗଜ ମିଳିପାରିବ ସାର୍ ?

ବିଭୂ : କଲମ କାଗଜ କାହିଁକି ?

ରବି : ଦରକାର ଅଛି ସାର୍ - ଦରକାର ଅଛି।

ବିଭୂ : କ'ଣ ଦରକାର ଅଛି ?

ରବି : ନହେଲେ ମୋତେ ଏଠୁ ଛାଡି ଦିଅନ୍ତୁ ସାର୍।

ବିଭୂ : No - କଲମ କାଗଜ କ'ଣ କରିବ କୁହ ?

ରବି : (ବସିପଡି ଆଖି ବନ୍ଦ କରି) ଆମର ମିଶ୍ର ସାର୍ ବାର୍ଷିକ ପରୀକ୍ଷା



Digitized by PPRACHIN, SOA

ପାଇଁ Question paper ତିଆରି କରୁଛନ୍ତି ସାର୍ - ମୁଁ ଟିକିଏ ଟିପିନେବି ।

ବିଭୂ : My God. ତୁମେ ତୁମର ବାପାଙ୍କୁ ଦେଖିବା କଥା କହୁଥିଲ ।

ରବି : ପଢାପଢି କରିପାରିନି ସାର୍ - କଲମ କାଗଜ ଦିଅନ୍ତୁ । ନହେଲେ ଫେଲ୍ ହୋଇଯିବି ।

ବିଭୂ : ନା - ତୁମେ ସେ କଥା କରିପାରିବନି ।

ରବି : ପାଟି କରନ୍ତୁ ନି ସାର୍ - ମୁଁ ଟିକିଏ ପଢିନିଏ । ଆରେ ଏଇ କ'ଣ ମିଶ୍ର ସାର୍ ତାଙ୍କର tution ପିଲାମାନଙ୍କୁ Annual ପରୀକ୍ଷାର question ପେପର ଡାକି ଦେଉଛନ୍ତି । ଠିକ୍ ଅଛି, ମୁଁ ସେମାନଙ୍କଠୁ ପାଇଯିବି ।

ବିଭୂ : (ଦୀପକ କୁ ଦେଖି) ୟାକୁ ବି ନେଇଯାଅ । ଦୀପକ ସେ ଘରେ ବସେଇଦିଅ । (ଦୀପକ ରବିକୁ ଭିତରକୁ ନେଇଯାଇଛି ।)

ପ୍ରକାଶ : (ହଠାତ୍ ଚିତ୍କାର କରି) You bastard ମୁଁ ତୋତେ ଗୁଳି କରିଦେବି । କେବେ ଛାଡିବିନି ।

(ପ୍ରକାଶର ଚିତ୍କାର ଶୁଣି ବିଭୂ ପ୍ରସାଦ ଓ ଦୀପକ ତାଙ୍କ ପାଖକୁ ଯାଇଛନ୍ତି ।)

ବିଭୂ : କାହିଁକି ପାଟି କରୁଛ ପ୍ରକାଶ ? ତୁମର କ'ଣ ହେଇଛି ? ତୁମେ ଡକାୟତମାନଙ୍କର ଆତ୍ମାସ୍ଥଳି ଦେଖିବା କଥା ।

ପ୍ରକାଶ : ନା' ସେ ସବୁ ମୋର ଆଉ ଦେଖିବା ଦରକାର ନାହିଁ । ମୁଁ ଶ୍ରୀପଦ ଦାସକୁ ପ୍ରଥମେ ଶିକ୍ଷା ଦେଲା ପରେ ଅନ୍ୟକଥା । ସେ ଗୋଟେ ପରମ ସଇତାନ ।

ବିଭୂ : ଶ୍ରୀପଦ ଦାସ ? ସେ କିଏ ?

ପ୍ରକାଶ : ସେ ହେଉଛି ଆଉ ଗୋଟେ ପୋଲିସ ଅଫିସର ଆମରି ଥାନାରେ କାମ କରୁଛି । ହେଇ ଦେଖନ୍ତୁ (ଆଖି ବନ୍ଦ କରି) S.P. ଙ୍କ କ୍ୱାଟରକୁ ଯାଇ ମୋ ବିରୁଦ୍ଧରେ S.P. ଙ୍କ ସାମନାରେ ଖଟମିଛ ଲଗେଇ କହିଚାଲିଛି । ଏ ଟାଉନ୍‌ରେ ଯେତେ ସବୁ ଡକାୟତି



Digitized by PPRACHIN, SOA

ହେଉଛି ସେଥିପାଇଁ ମୁଁ ଦାୟୀ ବୋଲି କହୁଛି । ଡକାୟତଙ୍କ ସହିତ ମୋର କୁଆଡେ ସଂପର୍କ ଅଛି ।

ବିଭୂ : ନା' ନା' ଏସବୁ କିଛି ନଦେଖି ବରଂ ଡକାୟତମାନଙ୍କ ରହିବା ଜାଗା ଠାବ କର ।

ପ୍ରକାଶ : ନା' ମୋତେ ଛାଡି ଦିଅନ୍ତୁ ସାର୍ । ସେ ଶ୍ରୀପଦଟାକୁ ମୁଁ ଆଜି ଗୁଳି କରିଦେବି (ଆଖି ବନ୍ଦ କରି)

ବିଭୂ : ଦୀପଙ୍କର ପ୍ରକାଶବାବୁଙ୍କୁ ଟିକିଏ ଧରିଲ । ସେପଟେ ନେଇ ବସେଇବା । (ପ୍ରକାଶକୁ ଭିତରକୁ ଧରି ନେଇଯାଆନ୍ତି ।)

(ଦଣ୍ଡପାଣି - ପ୍ରାୟ କାନ୍ଦ କାନ୍ଦ ଅବସ୍ଥା । ବିଭୂ ଓ ଦୀପକ ଆସନ୍ତି ।)

ଦଣ୍ଡ : ମୋ ଦେହରୁ ସେ ଔଷଧ କାଢି ନିଅନ୍ତୁ ସାର୍... କାଢି ନିଅନ୍ତୁ - ମୁଁ ଆଉ ଦେଖିପାରିବିନି ।

ଦୀପକ : କ'ଣ ହେଲା ଦଣ୍ଡପାଣି ବାବୁ ।

ଦଣ୍ଡପାଣି : ମୁଁ ଆଉ ସହି ପାରୁନି ସାର୍ - ଆଖି ବନ୍ଦ କଲାମାନେ ସେଇ ଦୃଶ୍ୟ (କାନ୍ଦି) please ମୋ ଦେହରୁ 'ଦ୍ୱିତୀୟ ଈଶ୍ୱର' ଔଷଧର କ୍ରିୟା ବନ୍ଦ କରନ୍ତୁ ସାର୍ ।

ବିଭୂ : କ'ଣ ହେଲା ଆରେ ତୁମେ ଏମିତି କ'ଣ ଦେଖୁଛ ? ଏତେ କାନ୍ଦ କାହିଁକି ?

ଦଣ୍ଡ : ଡେଜି ସାର୍ । ଯାହାକୁ ମୁଁ ଆସନ୍ତା ଜାନୁୟାରୀରେ ବାହାହବା କଥା - ସେ ମୋ ସହିତ ବିଶ୍ୱାସଘାତକତା କରିଛି । ମୋର ଭଲପାଇବା ଭିତରେ ଗରଳ ଢାଳିଦେଇଛି ।

ବିଭୂ : Shut up. କ'ଣ ଦେଖୁଛ କୁହ । ତୁମେ ଡେଜିକୁ ଦେଖିପାରୁଛ ଯଦି କୁହ ।

ଦଣ୍ଡ : ହଁ, ସେ ବର୍ତ୍ତମାନ Hotel Blue Star ରେ ଆଉ ଜଣଙ୍କର Bed Partner ସାର୍ । ନା' ନା.. ମୁଁ ଏସବୁ ଆଉ ସହିପାରିବିନି ସାର୍ । ଏ ଦୃଶ୍ୟ ମୋ ଆଖି ଆଗରୁ ହଟେଇ ଦିଅନ୍ତୁ । (କାନ୍ଦି) ଡେଜି ଅନ୍ୟଜଣଙ୍କର ଶଯ୍ୟା ସଙ୍ଗୀନି....।



Digitized by PPRACHIN, SOA

ବିଭୂ : ଦୀପଙ୍କର ଯାଙ୍କୁ ବି ନେଇଯାଅ । ସେଠି ସେ chamber ରେ ବସାଅ । ଦୀପଙ୍କର ନିଅ...ଯାଙ୍କୁ ।
(ଦୀପକ ନେଇଯାଇଛି ଦଣ୍ଡପାଣିଙ୍କୁ । ପରେ ପରେ ପୁଣି ଆସିଛି ।)

ବିଭୂ : ସବୁ ଓଲଟ ପାଟଲ ହେଇଗଲା ଦୀପଙ୍କର । ଏଗୁଡାକ ସମସ୍ତେ ନିଜ ନିଜର ସ୍ୱାର୍ଥ ପାଇଁ...। My God ଏମାନେ ଔଷଧ ନେବାପୂର୍ବରୁ ଯାହା ଯାହା ଦେଖିବାକୁ ଚାହୁଁଥିଲେ ସେ କଥା ନଦେଖି...ନିଜର interest ଅନୁସାରେ... ।

ଦୀପକ : ଆମର ଔଷଧ କିନ୍ତୁ କାମ କରିଛି ସାର୍ ଆମେ successful ହୋଇଛେ ।

ଅଲେଖ : ମୁଁ ସବୁ ଦେଖି ପାରିଲି ସାର୍ - ଗାଁରେ ମୋ ବୁଢୀ ମା'କୁ ଦେଖିପାରିଲି । ସେ ବର୍ତ୍ତମାନ ଜଣଙ୍କୁ ପାଖରେ ବସେଇ ମୋ ପାଖକୁ ଚିଠି ଲେଖୁଛି ।

ବିଭୂ : ତୁ ସତରେ ଏକଥା କହୁଛୁ ଅଲେଖ ।

ଅଲେଖ : (ଆଖି ବନ୍ଦ କରି) ହେଇ ଦେଖନ୍ତୁ ସାର୍ - ମୋ ବୁଢୀ ମା' । ଆମ ଗାଁର ଭଗିଆ ଭାଇ । ଯେଉଁ ଚିଠିଟା ମୋ ନାଁରେ ଲେଖିଛି, ତାକୁ ପଢି ବୁଢିମାକୁ ଶୁଣାଉଛି । ହେଇ ଭଗିଆ ଭାଇର ଛୋଟ ପୁଅ ଆସି ତା କୋଳରେ ବସିଲା । ମୁଁ ସବୁ ଦେଖିପାରୁଛି ସାର୍ - ହେଇ ଆମ ଗାଁର ମନ୍ଦିର - ତା ପାଖରେ କୀର୍ତ୍ତନ ଚାଲିଛି - ହରିବୋଲ ହରିବୋଲ...(ତାଳି ମାରିଛି)

ଦୀପକ : ଅଲେଖ ପ୍ରକୃତରେ ସବୁ ଦେଖିପାରିଛି ସାର୍ । ତା' ଜରିଆରେ ଆମେ ପରୀକ୍ଷାଟା କରିନେବା ।

ବିଭୂ : Right. ତୁମେ ତା'ହେଲେ ଆମର ପୂର୍ବ plan ମୁତାବକ ସେ ଘରକୁ ଚାଲିଯାଅ । List ଅନୁସାରେ ସବୁକଥା ଗୋଟି ଗୋଟି କରି କରଯାଅ ।

ଦୀପକ : (ଲିଷ୍ଟ ବାହାରକରି) ଏଇ ଲିଷ୍ଟ ଅନୁସାରେ ମୁଁ ସବୁ କରିଯିବି ସାର୍ ଆପଣ observation କରନ୍ତୁ ।



Digitized by PPRACHIN, SOA

ବିଭୂ : ଅଲେଖ ।

ଅଲେଖ : ସାର୍ ।

ବିଭୂ : ସେ ତାଳି ବନ୍ଦ କର । ଆଖି ଖୋଲ । କହ ତୁ ସବୁ ଜାଗା ଦେଖିପାରୁଛୁ ?

ଅଲେଖ : ହଁ ସାର୍ ଯୋଉଠିକି କହିବେ ଦେଖି କହି ଦେବି ।

ବିଭୂ : ଦେଖ - ଦୀପକ ବାବୁ ବର୍ତ୍ତମାନ ଏଇଠୁ ଏଇ ରୁମ୍‌ରୁ ଚାଲିଯିବେ ତାଙ୍କୁ ଦେଖିବାକୁ ଚେଷ୍ଟା କର । ଆଉ ସେ ଯାହା କରୁଛନ୍ତି କହିବାକୁ . ଚେଷ୍ଟା କର ।

ଅଲେଖ : ସବୁ କହିପାରିବି ସାର୍ ।

(ଦୀପଙ୍କରକୁ ଇସାରା ଦିଆଯାଏ ସେ ବାହାରକୁ ଚାଲିଯାଏ ।)

ଅଲେଖ : (ଆଖି ବନ୍ଦ କର) ହେଇ ସାର୍ - ଦୀପଙ୍କର ବାବୁ ଯାଉଛନ୍ତି । ହେଇଟି ଆମର ଏଇ ଘର ସାମନା ରାସ୍ତା ଦେଇ ସେ ଯାଉଛନ୍ତି । ହେଇ ସେପଟ ବଗିଚା ଭିତରେ ପଶିଲେ । ହେଇ ପକେଟରୁ ଗୋଟିଏ ଚାବି ବାହାର କରି ବଗିଚା ଭିତରେ ଥିବା ସେଇ ଘରର ତାଲା ଖୋଲିଲେ । ହେଇ, କବାଟ ଖୋଲିଲେ ଘରର light ଜଳେଇଲେ ସାର୍ ।

ବିଭୂ : ଦେଖ୍ ଠିକ୍ ଭାବରେ ଦେଖି କହ ।

ଅଲେଖ : ସେ ଘରେ ଗୋଟେ ଆଲମିରା ଖୋଲିଲେ । ଆଲମିରା ଭିତରୁ ଖଣ୍ଡେ ଚକ୍ ବାହାର କଲେ ସାର୍ ।

ବିଭୂ : (ଉତ୍ସାହିତ ହୋଇ) My God. ସବୁ ଠିକ୍ ଅଛି - ତା'ପରେ ।

ଅଲେଖ : କାନ୍ଥରେ କଳାପଟା ଉପରେ ସେ ଚକ୍‌ରେ ଲେଖୁଛନ୍ତି ସାର୍ ।

ବିଭୂ : କ'ଣ ଲେଖୁଛନ୍ତି ପଢ଼ିବାକୁ ଚେଷ୍ଟା କର ।

ଅଲେଖ : ତା ୨୯-୧୦-୮୭ । ଆଜି ଦିନ ହେଉଛି ଏକ ସ୍ମରଣୀୟ ଦିନ । ଏଇ ଦିନଟିରେ 'ଦ୍ୱିତୀୟ ଈଶ୍ୱର' ପ୍ରଥମ କରି ମଣିଷ ଦେହରେ ପ୍ରୟୋଗ କରାଗଲା । ଏହି ଦିନକୁ ମାନବ ସମାଜ ମନେ ରଖିବ ।

ବିଭୂ : (ଅଲେଖକୁ କୁଣ୍ଢେଇ ଧରି) (ଅତ୍ୟଧିକ ଖୁସିରେ) ଆଉ ଦରକାର



Digitized by PPRACHIN, SOA

ନାହିଁ ଅଲେଖ । ମୁଁ ପାଇଯାଇଛି । ମୁଁ ମଣିଷକୁ ଦ୍ୱିତୀୟ ଈଶ୍ୱର କରିଦେଇଛି । ତୁ ଯେମିତି କହିଲୁ ମୁଁ ଦୀପଙ୍କରକୁ ସେ ପ୍ରକାର କରିବାକୁ ନିର୍ଦ୍ଦେଶ ଦେଇଥିଲି । ହେ ଭଗବାନ ... ତୁମର ଅସୀମ ଦୟା (ଖୁସିରେ) । ଦୀପଙ୍କର - ଦୀପଙ୍କର ତୁମେ ଚାଲିଆସ ଦୀପଙ୍କର । ଆମେ ଆମ ଉଦ୍ଭାବନରେ sucessful ହୋଇଛେ । ବିଂଶ ଶତାବ୍ଦୀର ଇତିହାସରେ ଆମର ନାଁକୁ ସ୍ୱର୍ଣ୍ଣାକ୍ଷରରେ ଲେଖିଦେଇଛେ । (ବିଭୂ ପ୍ରସାଦ ଖୁସିରେ 'କାନ୍ଦି' ଉଠିଛନ୍ତି)(ଦୀପଙ୍କର ଆସିଛି) ତୁମେ ଯାହା ସେ ଘରେ ଥାଇ ଲେଖିଛ ଅଲେଖ ସବୁ ପଢିନେଇଛି ଦୀପଙ୍କର । ଆମେ ମଣିଷକୁ 'ଦ୍ୱିତୀୟ ଈଶ୍ୱର' କରିଦେଇଛେ ।

ଦୀପକ : (ମୁହଁ ତଳକୁ କରି ଠିଆ ହୋଇ ରହେ)

ବିଭୂ : ଆରେ ତୁମେ ଏମିତି ମୁହଁ ଶୁଖେଇ ଦେଇଛ କାହିଁକି ? ତୁମେ ମୋର ସହକର୍ମୀ ଏ ଖୁସିରେ ତୁମର ରାଜଭାଗ ଅଛି ।

ଦୀପକ : ଆମ ଉଦ୍ଭାବନରେ ଆମେ ସଫଳ ହେଇଛେ ସାର୍ । କିନ୍ତୁ ମଣିଷ କ'ଣ ଯାକୁ ଭଲ କାମରେ ଲଗେଇବ ?

ବିଭୂ : ମାନେ ?

ଦୀପକ : ଆମେ ଏ 'ଦ୍ୱିତୀୟ ଈଶ୍ୱର' ରସାୟନକୁ ନେତ୍ରାନନ୍ଦ ବାବୁ, ପ୍ରକାଶ ବାବୁ ଆଉ ରବି ଦେହରେ ପ୍ରୟୋଗ କରିଥିଲେ । କିନ୍ତୁ ଅଲେଖ ଯେମିତି ଦେଖିପାରିଲା ସେମାନେ କ'ଣ ସେମିତି ଦେଖିପାରିଲେ ? ସେମାନେ ନିଜ ନିଜର ସ୍ୱାର୍ଥ ହାସଲ ପାଇଁ ଦୃଶ୍ୟ ଦେଖି ଚାଲିଲେ । ଏ ଔଷଧ ଯେତେବେଳେ ସାଧାରଣ ଲୋକଙ୍କ ହାତରେ ପଡିବ, ତାକୁ ସେ ମିସ୍‌ଇଉଜ୍ କରିବ ସାର୍ । ସମସ୍ତେ ନିଜର ଲୋଭ, ଲାଳସାକୁ ଚରିତାର୍ଥ କରିବା ପାଇଁ ଯାକୁ ବ୍ୟବହାର କରିବେ । ସବୁ ବିଭ୍ରାଟ ହେଇଯିବ ସାର୍ ।

ବିଭୂ : ଏଁ, ଏମିତି ହେବ ?

ଦୀପକ : ଆପଣ ଚିନ୍ତା କରନ୍ତୁ ସାର୍ । ଇଏ ଏକ ପ୍ରକାର ଐଶ୍ୱରିକ ଶକ୍ତି ।



Digitized by PPRACHIN, SOA

ଯାହାପାଖରେ ଅର୍ଥ ବେଶୀ - ଯାହାପାଖରେ ଶକ୍ତି ବେଶୀ, ସେ ଏହାକୁ ନେଇ ବ୍ୟବସାୟ କରିବସିବ । ଭାବନ୍ତୁ ସାର୍ - ସାଧାରଣ ମଣିଷଟିଏ ଯେତେବେଳେ କୌଣସି ଉପାୟରେ ଗୋଟିଏ ସାମାନ୍ୟ ମିରାକଲ୍ ଦେଖାଇବାର ଶକ୍ତି ହାସଲ କରୁଛି, ସଂଗେ ସଂଗେ ନିଜକୁ ଭଗବାନଙ୍କର ଅବତାର କହି ଲକ୍ଷ ଲକ୍ଷ ଲୋକଙ୍କୁ ଚେଲା ବନେଇ ଶୋଷଣ କରିଚାଲିଛି । ଏ.ସି., କାର - ନିଜର ସ୍ୱତନ୍ତ୍ର ବିମାନ କରି ମହାଆରାମରେ ଜୀବନ କଟେଇ, ଈଶ୍ୱରଙ୍କ ନାମରେ ଲୋକଙ୍କୁ ଭୁଲେଇ ଚାଲିଛି । ଲୋକ ବି ହଜାର ହଜାର ସଂଖ୍ୟାରେ ଭଗବାନ କହି ତା' ଠକାମିକୁ ମାନି ନେଉଛନ୍ତି ।

ବିଭୂ : ହଁ, ତୁମେ ଠିକ୍ କହୁଛ ଦୀପଙ୍କର । ଏ ଦ୍ୱିତୀୟ ଈଶ୍ୱର ସାର୍ଥାନ୍ଧ ମଣିଷ ହାତକୁ ଟେକିଦେବା ଠିକ୍ ହବନି ।

ଅଲେଖ : ମୁଁ ଏଇଠି ବସି ମା'ଙ୍କୁ - ମାନେ ଆପଣଙ୍କର ସ୍ତ୍ରୀଙ୍କୁ ଦେଖିପାରୁଛି ସାର୍ । ଆପଣଙ୍କ ଡ୍ରଇଁରୁମ୍‌ରେ ମିତା ଅପା, ମା, ଆପଣଙ୍କର ଶଳାବାବୁମାନେ ବାଙ୍ଗନିଧି ବାବୁ ସମସ୍ତେ ବସିଛନ୍ତି ସାର୍ ।

ବିଭୂ : ତୁମେ ଯାଅତ ଦୀପଙ୍କର ଦେଖିଆସିବ ସେମାନେ ଅଛନ୍ତି କି ନାହିଁ । (ଦୀପକ ଯିବାକୁ ବାହାରିଛି) ରୁହ - ତା' ପାଖରୁ ସମସ୍ତ ବିବରଣୀ ଶୁଣିସାରି ପରେ ଯିବ ।

ଅଲେଖ : ହେଇ ଗୋଟେ ଧଳା କାର୍ ଆସିଲା - ଆପଣଙ୍କ ଘର ଆଗରେ ରହିଲା ସାର୍ ।

ବିଭୂ : କାର ଆସିଲା ? ପୁଣି ମୋ ଘରକୁ ?

ଅଲେଖ : ହେଇ, କାରରୁ ଜଣେ ଗୋରା ସାହେବ ଓହ୍ଲେଇଲେ । ଆପଣଙ୍କ ଶଳାବାବୁ ତାଙ୍କୁ ପାଛୋଟି ନେଲେ । ସେ ସାହେବ ଗୋଟେ ବିରାଟ ଆଟାଚି ଦେଲେ । ଶଳାବାବୁ ତାକୁ ଖୋଲିଲେ । ବାବାରେ...।

ବିଭୂ : କ'ଣ ହେଲା ?

ଅଲେଖ : ଟଙ୍କା ଭର୍ତ୍ତି ସାର - ବିଡା ବିଡା ନୋଟ୍ । କେତେ ହେବ କେଜାଣି ସେ ଆଟାଚି ଭିତରେ ଭର୍ତ୍ତି ହେଇ ରହିଛି ।



Digitized by PPRACHIN, SOA

ବିଭୂ : ସେଇଠୁ ।

ଅଲେଖ : ସେ ଟଙ୍କାନେଇ ଆପଣଙ୍କ ଶଳାବାବୁ ଆଉ ମା' ଆପଣଙ୍କ Bed room କୁ ଗଲେ । ମା' ଚାବି ନେଇ ସେ ଘର ଆଲମିରା ଖୋଲିଲେ । ଗୋଟେ ଲାଲ୍ ରଙ୍ଗର ଫାଇଲ୍ ବାହାର କରି ଶଳାବାବୁଙ୍କୁ ଦେଲେ । ଶଳାବାବୁ ତାକୁ ନେଇ ସେ ସାହେବଙ୍କୁ ଦେଲେ । ସେ ସାହେବ ବଡ ଖୁସି ହୋଇ ଶଳାବାବୁଙ୍କ ସହିତ ହ୍ୟାଣ୍ଡସେକ୍ କଲେ । ସାହେବ ସେ ଫାଇଲ୍ ନେଇ କାରରେ ବସିଲେ । କାର ଚାଲିଲା ସାର୍ ।

ବିଭୂ : କି ରଙ୍ଗର ଫାଇଲ କହିଲୁ ଅଲେଖ ?

ଅଲେଖ : ଲାଲ୍ ମଲାଟର ବଡ ଫାଇଲ ସାର୍ ।

ବିଭୂ : ତା'ମାନେ ମୋର 'ଦ୍ୱିତୀୟ ଈଶ୍ୱର' ର formula. My God. ମୋ ସ୍ତ୍ରୀ ଆଉ ଶଳା ମିଶି ମୋର ଦ୍ୱିତୀୟ ଈଶ୍ୱର ଫରମୁଲା ବିକ୍ରି କରିଦେଇଛନ୍ତି ।

ଅଲେଖ : ସେ କାର୍ ଚାଲିଛି ସାର୍ - ଖୁବ୍ ଯୋରରେ ଚାଲିଛି ।

ବିଭୂ : ସେ କାର୍‌ର ନମ୍ବର ପଢିବାକୁ ଚେଷ୍ଟା କର ଅଲେଖ ।

ଅଲେଖ : ମୁଁ ଇଂଗ୍ରାଜୀ ଅକ୍ଷର ପଢିପାରେନି ସାର୍ । ଧଳା ରଙ୍ଗର ଗୋଟେ ବଡ କାର୍ ସାର୍ । ଖୁବ୍ ଯୋରରେ ଚାଲିଛି ସାର୍ ।

ବିଭୂ : ତା'ମାନେ ମୋ ରିସର୍ଚ୍ଚ ର ସବୁ କାଗଜପତ୍ର ଚାଲିଯାଇଛି । ମୋର ଭୁଲ ମୁଁ ବୁଝିପାରିଲା ବେଳକୁ ମୋ ଫର୍ମୁଲାକୁ ଆଉ ଜଣେ ମାରି ନେଇଛି । ତା'ମାନେ ଦ୍ୱିତୀୟ ଈଶ୍ୱର ବ୍ୟବସାୟିକ ଭିତ୍ତିରେ ସାରା ଦୁନିଆ ବଜାରରେ ବିକ୍ରୀ ହୋଇଯିବ । ମୁଁ ଏକଥା ଚାହେଁନି ଭଗବାନ । ମୁଁ ତାକୁ ନଷ୍ଟ କରିଦେବାକୁ ଚାହେଁ । ଦ୍ୱିତୀୟ ଈଶ୍ୱର ମଣିଷ ଜାତି ପାଇଁ ଏକ ଅଭିଶାପ । ମୁଁ ତାକୁ ପୋଡି ଜାଳି ନଷ୍ଟ କରିଦେବାକୁ ଚାହେଁ । ଭଗବାନ ଏସବୁ କ'ଣ ଘଟିଗଲା ।

**(ମୁଣ୍ଡ ବାଡେଇବାରେ ଲାଗିଛନ୍ତି – ପଶିଆସିଛନ୍ତି ବାଙ୍କନିଧି)**

ବିଭୂ : (ବାଙ୍କନିଧିଙ୍କୁ) ବିଶ୍ୱାସଘାତକ - ସ୍କାଉଣ୍ଡ୍ରାଲ୍ । ତୁ ଏସବୁ କ'ଣ



Digitized by PPRACHIN, SOA

କଲୁ ଚଣ୍ଡାଳ । ମୋ ଭୁଲର ପ୍ରାୟଶ୍ଚିତ କରିବାକୁ ଗଲାବେଳକୁ ଗୋଟେ ବିଦେଶୀ ଦଲାଲ ହାତରେ ମଣିଷ ଜାତିର ମାନ ଇଜ୍ଜତକୁ ବିକ୍ରି କରିଦେଲୁ । ଜାଣୁ ସେ ଦ୍ୱିତୀୟ ଈଶ୍ୱର ଫରମୁଲା ନେଇ ସେ କ'ଣ କରିବ ?

ବାଙ୍କ : ସେ ଯାହା କରୁ ବା ନକରୁ ମୋ ଭାଣିଜୀର ବାହାଘର ଟା କିନ୍ତୁ ବଡ ଧୁମ୍ ଧାମ୍‌ରେ ହେଇପାରିବ । ଯେତିକି ଟଙ୍କା ମିଳିଛି ତୁମେମାନେ ବାକି ଜୀବନଟାକୁ ମହାଆରାମରେ କଟେଇ ଦେଇପାରିବ ।

ବିଭୂ : Don't talk rubbish. ଅନ୍ୟ କେହି ତୋତେ କ୍ଷମା ଦେଉବା ନଦେଉ ମୁଁ ତୋତେ କେବେ ଛାଡିବିନି । I will kill you scoundrel.

(ବିଭୂ ପ୍ରସାଦ ବାଙ୍କନିଧିଙ୍କ ତଣ୍ଟି ଚିପିଧରନ୍ତି । ଦୀପଙ୍କର ଦଣ୍ଡପାଣି ଆସି ଛଡେଇ ନିଅନ୍ତି ।)

ବାଙ୍କ : ଏତେ ଉତ୍ୟକ୍ତ ହୁଅନି ଭିଣୋଇ ମହାଶୟ । ତୁମ 'ଦ୍ୱିତୀୟ ଈଶ୍ୱର' ଫର୍ମୁଲାର ସମସ୍ତ ପେପର କେହି ନେଇଯାଇନି । ମୋ ପାଖରେ ମହଜୁଦ୍ ଅଛି । (ବାହାରକୁ ଯାଇ ଗୋଟିଏ ଲାଲ ରଙ୍ଗର ଫାଇଲ ନେଇ ଆସନ୍ତି ।) ଏଇ ନିଅ ତୁମ ଦ୍ୱିତୀୟ ଈଶ୍ୱର ଫରମୁଲା ।

ବିଭୂ : (ଫାଇଲ୍ ଦେଖି) ମାନେ...ଏଇ ଫାଇଲ ବିକ୍ରି ହେଇନି ।

ବାଙ୍କ : ନା' । ଏମିତି ବୋକାଙ୍କ ଭଳି ଚାହିଁ ରହିଛ କ'ଣ । ଏ ଅଲେଖ ଇଞ୍ଜେକ୍ସନ୍ ନେବାପରେ ଯାହା କହିଛି ସବୁ ମିଛ ।

ବିଭୂ : What do you say. ଅଲେଖ ଏସବୁ ମନରୁ ଗଢି କହିଛି ।

ବାଙ୍କ : (ହସି) ଖାଲି ଅଲେଖ କାହିଁକି, ଦଣ୍ଡପାଣି, ନେତ୍ରାନନ୍ଦ ବାବୁ, ପ୍ରକାଶ, ରବି, ସମସ୍ତେ ମୋ ନିର୍ଦ୍ଦେଶରେ ଅଭିନୟ କରିଛନ୍ତି । ଏମିତିକି ମାରଓ୍ୱାଡି ଭଦ୍ରଲୋକ ମଧ୍ୟ । ଏଥିପାଇଁ ଏମାନଙ୍କୁ ନେଇ ମୁଁ ଅନେକ ଦିନହେଲା ଟଙ୍କା ଖର୍ଚ୍ଚ କରି ରିହରସାଲ୍ ଚଳାଇଥିଲି ।

ବିଭୂ : କିନ୍ତୁ ମୋ ଔଷଧ... ମୋ ଇଞ୍ଜେକ୍ସନ୍... ?

ବାଙ୍କ : ତୁମ ମୁଣ୍ଡରୁ ଦ୍ୱିତୀୟ ଈଶ୍ୱର ଭୁତକୁ ଓହ୍ଲେଇ ଦବାପାଇଁ ଗତ



Digitized by PPRACHIN, SOA

ରାତିରେ ସେ ଔଷଧକୁ ନଷ୍ଟ କରି ତା ସ୍ଥାନରେ ରଙ୍ଗିନ୍ ସାଲାଇନ୍ ପାଣି ଭର୍ତ୍ତି କରାଯାଇଥିଲା । ମୋର ଆଉ ଦୀପଙ୍କର ର plan ଅନୁଯାୟୀ ସମସ୍ତେ କେବଳ ଅଭିନୟ କଲେ । ଯାହାହଉ ତୁମେ ତୁମର ଭୁଲ ବୁଝିପାରିଛ ମୁଁ ସେଥିପାଇଁ ଖୁସି । **(ପାଖ ରୁମ୍‌ରୁ ସମସ୍ତେ ଚାଲିଆସି ମୁହଁ ପୋତି ଠିଆ ହୋଇଯାଆନ୍ତି ।)**

ବିଭୂ : ବାଙ୍କନିଧି ମୁଁ ତୁମକୁ କେମିତି କୃତଜ୍ଞତା ଜଣାଇବ ବୁଝିପାରୁନି । ମୁଁ ମସ୍ତବଡ ଭୁଲ କରିବାକୁ ଯାଉଥିଲି । ତୁମେ ମୋର ଆଖି ଖୋଲିଦେଇଛ । ପ୍ରକୃତରେ ଦ୍ୱିତୀୟ ଈଶ୍ୱର ମଣିଷ ଜାତି ପାଇଁ ଅଭିଶାପ ହୋଇଥାନ୍ତା । ତୁମେ ମୋତେ ରକ୍ଷା କରିଦେଇଛ । ଈଶ୍ୱରଙ୍କର ସୃଷ୍ଟି ସୁନ୍ଦର ଏବଂ ଶାଶ୍ୱତ । ତାଙ୍କର ନିୟମ ଶୃଙ୍ଖଳିତ । ଏଇ ସ୍ୱାର୍ଥାନ୍ଧ ମଣିଷ ଐଶ୍ୱରିକ ଶକ୍ତି ହାସଲ କରି ଦ୍ୱିତୀୟ ଈଶ୍ୱର ସାଜିଲେ, ଏ ସୃଷ୍ଟି ହେବ ବିଭ୍ରାଟ - କଦର୍ଯ୍ୟ - ଅସୁନ୍ଦର - ଧ୍ୱଂସମୁଖୀ । ଈଶ୍ୱରଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବା ଅର୍ଥ ଏ ସୃଷ୍ଟି ପାଇଁ ଅଭିଶାପ । ଚାଲ ସମସ୍ତେ ମିଶି ସେ ମହାନ ସତ୍ତାର ଗୁଣଗାନ କରିବା....। (ସମସ୍ତେ ବିଭୂଙ୍କ ସହିତ କୁହନ୍ତି)

ସମସ୍ତେ : ହେ ଈଶ୍ୱର ତୁମେ ସତ୍ୟ, ତୁମେ ଶିବ, ତୁମେ ସୁନ୍ଦର । ମଣିଷ ପାଇଁ ତୁମର ପ୍ରେମ, ତୁମର କରୁଣା ଯଥେଷ୍ଟ - ଆଉ କିଛି ନୁହେଁ । **(ବିଭୂ ସେ ଦ୍ୱିତୀୟ ଈଶ୍ୱର ଫାଇଲ୍‌କୁ ନେଇ ଜାଳିବାକୁ ଲାଗନ୍ତି । ଦୂରରୁ ଗୋଟିଏ ପ୍ରାର୍ଥନା ଭାସିଆସେ...। "ସତ୍ୟଂ ଶିବଂ ଅନନ୍ତଂ ବ୍ରହ୍ମ୍...")**

(ଅନ୍ଧାର)





Digitized by PPRACHIN, SOA

'ଦ୍ୱିତୀୟ ଈଶ୍ୱର' ନାଟକ ମଞ୍ଚସ୍ଥ ହେବା ଅବସରରେ ଓ ଦୂରଦର୍ଶନ ରେକର୍ଡିଂରେ କଳାପରିଷଦ, ଢେଙ୍କାନାଳର ଭାଗ ନେଇଥିବା ଶିଳ୍ପୀମାନେ ।

| ଚରିତ୍ର | | ଶିଳ୍ପୀମାନଙ୍କ ନାମ |
|---|---|---|
| ବିଭୁ ପ୍ରସାଦ | : | ଶଶିକାନ୍ତ ପାଣି |
| ବାଙ୍କନିଧି | : | କିଶୋର ରାଉତ |
| ଦଣ୍ଡପାଣି | : | ଶତ୍ରୁଘ୍ନ ମାଟି |
| ଦୀପଙ୍କର | : | ବିଭୂତି ଭୂଷଣ ନନ୍ଦ |
| ଅଲେଖ | : | ଶ୍ରୀକାନ୍ତ ମିଶ୍ର |
| ଜଗଦୀଶ | : | ଇନ୍ଦ୍ରମଣି ବେହେରା |
| ନେତ୍ରାନନ୍ଦ | : | ବିଷ୍ଣୁଚରଣ ମହାରଣା |
| ପୋ:ଇ:ପ୍ରକାଶ | : | ଚନ୍ଦ୍ରଶେଖର ମିଶ୍ର |
| ବିଦେଶୀ | : | ରାମାନନ୍ଦ ଆଚାର୍ଯ୍ୟ |
| ଭାଷାନ୍ତରକ ଯୋଗେଶ | : | ପ୍ରଶାନ୍ତ କୁମାର ସାହୁ |
| ରବି | : | ସୁଶାନ୍ତ କୁମାର ସାହୁ (ବାବୁନା) |
| ନନ୍ଦୀ | : | ଅରବିନ୍ଦ ସାହୁ |
| ଭୃଙ୍ଗୀ | : | ବିଚ୍ଛନ୍ଦ ମହାପାତ୍ର |
| *ମିତା | : | ମନଶ୍ରୀ ମଧୁସ୍ମିତା |

**ମଞ୍ଚ ଅନ୍ତରାଳେ**

| | | |
|---|---|---|
| ମଞ୍ଚ ସଜ୍ଜା | : | ଘନଶ୍ୟାମ ମହାରଣା |
| ମଞ୍ଚ ପରିଚାଳନା | : | ସୁରେନ୍ଦ୍ର ମିଶ୍ର, ମାନସ ରାଉତ |
| ସଂଗୀତ | : | ଶ୍ରୀ ପ୍ରଶାନ୍ତ ଓ ଶ୍ରୀ ପ୍ରଭାତ(ମଣ୍ଟୁ ଓ ପୁଣ୍ଟୁ) |
| ସହନିର୍ଦ୍ଦେଶନା | : | ଶତ୍ରୁଘ୍ନ ମାଟି |
| **ରଚନା ଓ ନିର୍ଦ୍ଦେଶନା** | : | **ଦିଲ୍ଲୀଶ୍ୱର ମହାରଣା** |

('*' ତାରକା ଚିହ୍ନିତ ଚରିତ୍ରଟି ଏ ପୁସ୍ତକରୁ ବାଦ ଦିଆଯାଇଛି)



Digitized by PPRACHIN, SOA

# ଆସନ୍ନ ପ୍ରଳୟ

(ମନୋରଞ୍ଜନଧର୍ମୀ ପ୍ରଚଣ୍ଡ ହାସ୍ୟରସର ନାଟକ)

'ଆହ୍ଲାବାଦ ନାଟ୍ୟସଂଘ ଆୟୋଜିତ ନିଖିଳ
ଭାରତ କ୍ଷୁଦ୍ରନାଟକ ପ୍ରତିଯୋଗିତା ୧୯୯୩ ରେ
ତିନି ଗୋଟି ଶ୍ରେଷ୍ଠ ପୁରସ୍କାରପ୍ରାପ୍ତ
ଏବଂ ଉତ୍କଳ ଯୁବ ସାଂସ୍କୃତିକ ସଂଘ ଓ କଳାବିକାଶ
କେନ୍ଦ୍ର, କଟକ ଆୟୋଜିତ ଅଖିଳ ଭାରତ
ବହୁଭାଷୀ ନାଟକ ପ୍ରତିଯୋଗିତା ୧୯୯୩ ରେ
ଶ୍ରେଷ୍ଠ ଓଡ଼ିଆ ନାଟକ ଭାବେ ପୁରସ୍କୃତ ।'

ନାଟ୍ୟକାର :
ଶ୍ରୀ ଦିଲ୍ଲୀଶ୍ୱର ମହାରଣା



Digitized by PPRACHIN, SOA

# ଆସନ୍ନ ପ୍ରଳୟ

## ଚରିତ୍ର ଲିପି

କ୍ଷିତମାତା

ଅପ

ତେଜ

ମରୁତ

ବ୍ୟୋମ

ଧର୍ମରାଜ

ଚିତ୍ରଗୁପ୍ତ

ବନ୍ଧୁଆ

ବୁଦ୍ଧିମାନ

ଶୂଳପାଣି

ଦଣ୍ଡପାଣି

ମୂଷିଦନ୍ତ

ଘୋଷକ

ଅଭିନୟ ସମୟ ଅବଧି ଏକ ଘଣ୍ଟା ଚାଳିଶ ମିନିଟ୍



Digitized by PPRACHIN, SOA

# ଆସନ୍ନ ପ୍ରଳୟ

## ପ୍ରସ୍ତାବନା

(ଅନ୍ଧକାର ଭିତରୁ ଘୋଷଣାଟି ଶୁଣାଯାଉଛି -ତଥାପି ମଞ୍ଚର ସାମନା ପରଦା ଖୋଲାଯାଇ ନାହିଁ)

ଘୋଷଣା : ସୃଷ୍ଟି ଅନୁପମ, ଜଡ, କୀଟ, ପତଙ୍ଗ, ପଶୁପକ୍ଷୀ ପ୍ରତ୍ୟେକ ନିଜସ୍ୱ ସୌନ୍ଦର୍ଯ୍ୟରେ ଅତୁଳନୀୟ । ମଉକା, ଜଳ, ଅଗ୍ନି, ବାୟୁ ଓ ଆକାଶ ଉପରେ ସମସ୍ତ ଜୀବଜଗତର ସମାନ ଅଧିକାର ଥିଲେ ମଧ - ବୁଦ୍ଧି ଜ୍ଞାନର ଅଧିକାରୀ ମନୁଷ୍ୟ ଉପରେ, ଏ ସବୁର ଭାରସାମ୍ୟ ରକ୍ଷା କରିବାର ଦାୟିତ୍ୱ ସମସ୍ତଙ୍କ ଠାରୁ ଅଧିକ । କିନ୍ତୁ ଆଜି ସାର୍ଥାନ୍ଧ ମଣିଷ ନିଜ ସୁଖ ସୁବିଧା ପାଇଁ ଅନ୍ୟ ସମସ୍ତ ଜୀବଜଗତ ତଥା ମାଟି, ପାଣି, ପବନ, ଅଗ୍ନି, ଆକାଶ ଉପରେ ଅକଥନୀୟ ଅତ୍ୟାଚାର ଚଳାଇ ସୃଷ୍ଟିକୁ ବିକୃତ ତଥା ଧ୍ୱଂସ କରିବାରେ ଲାଗି ପଡିଛି । ଫଳରେ ମଣିଷ ଆଜି ମଣିଷ ସ୍ତରରୁ ଓହ୍ଲାଇ ଆସି ସର୍ବଗ୍ରାସୀ ରାକ୍ଷାସ ପାଲଟି ଯାଇଛି । ଏ ରାକ୍ଷାସ କବଳରୁ ଏ ସୃଷ୍ଟିକୁ ନ ବଞ୍ଚାଇଲେ ପ୍ରଳୟ ଆସନ୍ନ ହୋଇ ଆସୁଛି । ଏହି ପରିପ୍ରେକ୍ଷୀରେ ନାଟକ 'ଆସନ୍ନ ପ୍ରଳୟ'.....।

**(ଅନ୍ତରାଳରୁ ଶବ୍ଦ ବ୍ରହ୍ମଙ୍କ କଣ୍ଠ - ଓଁକାର ଶୁଣାଯାଏ । ମଞ୍ଚରୁ ପରଦା ଅପସରି ଯାଏ ।)**



Digitized by PPRACHIN, SOA

# ପ୍ରାରମ୍ଭ

(ମଞ୍ଚ ଆଲୋକିତ ହୋଇଛି । ମଞ୍ଚର ପଶ୍ଚାତଭାଗ ସାଇକ୍ଲୋରୋମାରେ(ଧଳା ପରଦା) ଏକ ଆଲୋକର ବୃତ୍ତ । ମଞ୍ଚର ମଧ୍ୟ ଭାଗରେ ସାଇକ୍ଲୋରୋମାର ଅଳ୍ପ ଦୂରରେ ଗୋଟିଏ ପ୍ଲାଟଫର୍ମ । ପ୍ଲାଟଫର୍ମ ପଛଭାଗରୁ କ୍ଷିତ୍, ଅପ, ତେଜ, ମରୁତ, ବ୍ୟୋମ ଆସି - ପ୍ଲାଟଫର୍ମ ଉପରେ ଠିଆହୋଇ ମଞ୍ଚ ଭିତରକୁ ପ୍ରବେଶ କରିବେ । ତେଣୁ ସେମାନେ ପ୍ଲାଟଫର୍ମ ପଛରେ ଲୁଚି ରହିବେ ।

ଓଁକାର ଧ୍ୱନିର କଂପନ ଭିତରୁ ପ୍ରଥମେ ସୃଷ୍ଟି ହେବେ ବ୍ୟୋମ । ତାଙ୍କ ଦେହର ପୋଷାକ ଶ୍ୱେତ । ସେ ପ୍ଲାଟଫର୍ମ ପଛରୁ ଧିରେ ଧିରେ ଉଠି ପ୍ଲାଟଫର୍ମ ଉପରକୁ ଆସିବ । ଓଁକାର ଶବ୍ଦ କ୍ଷୀଣ ହୋଇ ଆସିବ । ବ୍ୟୋମର ପଶ୍ଚାତ ଭାଗ ଆଲୋକିତ ହେବ କିନ୍ତୁ ସାମନାରୁ ମୁହଁ ଠିକ୍ ଦେଖା ଯାଉ ନଥିବ । ଶବ୍ଦ ବ୍ରହ୍ମଙ୍କ କଣ୍ଠ ଅନ୍ତରାଳର ଗୁରୁଗମ୍ଭିର ସ୍ୱରରେ ଶୁଣାଯିବ)

ଶବ୍ଦ : (ଅନ୍ତରାଳରୁ ଶବ୍ଦ ବ୍ରହ୍ମଙ୍କ କଂଠ) ତୁମେ ?

ବ୍ୟୋମ : ବ୍ୟୋମ, ହେ ପରମପିତା ! ବ୍ୟୋମ ଆପଣଙ୍କୁ ପ୍ରଣାମ ଜଣାଉଛି ।

ଶବ୍ଦ : ହେ ବ୍ୟୋମ ! ତୁମ ଦ୍ୱାରା ଏକ ମହାନ କାର୍ଯ୍ୟ ସାଧିତ ହେବ । ତେଣୁ ତୁମକୁ ମୁଁ ସୃଷ୍ଟି କରିଛି । ତୁମେ ମୋର ପ୍ରଥମ ସନ୍ତାନ । ତୁମକୁ ମୁଁ ବିଶାଳ ବପୁ ପ୍ରଦାନ କରୁଛି । ତୁମେ ସାରା ବ୍ରହ୍ମାଣ୍ଡରେ ପ୍ରସାରିତ ହୋଇଯାଅ ।

(ବ୍ୟୋମ ପ୍ଲାଟଫର୍ମରୁ ଓହ୍ଲାଇବାକୁ ଆରମ୍ଭ କରେ । ମଞ୍ଚ ଆସ୍ତେ ଆସ୍ତେ ଆଲୋକିତ ହୁଏ । ସଂଗୀତର ତାଳେ ତାଳେ ସେ ମଞ୍ଚ



Digitized by PPRACHIN, SOA

ସାରା ନୃତ୍ୟ ଭଙ୍ଗିରେ ଘୁରି ଘୁରି ଗୋଟିଏ ସ୍ଥାନରେ ସ୍ଥିର ହୋଇଯାଏ ।)

ବ୍ୟୋମ : ସାରା ବ୍ରହ୍ମାଣ୍ଡ ପ୍ରସାରିତ ହୋଇଗଲି ପ୍ରଭୁ । ଏଥର ଆଦେଶ କରନ୍ତୁ ।

ଶବ୍ଦ : ତୁମେ ସ୍ଥିର ରୁହ । ମୋର ସତ୍ତା ଶବ୍ଦ ରୂପରେ ତୁମରି ଅଙ୍ଗରେ ବିରାଜମାନ କରିବ । ଏକ ଅନାହତ ଶବ୍ଦ ବ୍ୟତୀତ ସ୍ପର୍ଶ, ରୂପ, ରଂଗ, ଗନ୍ଧ ତୁମର କିଛି ରହିବନି । ସଦା ସର୍ବଦା ତୁମେ ସ୍ଥିର ଅଚଞ୍ଚଳ ରହିବ ।

ବ୍ୟୋମ : (ନମସ୍କାର କରି) ପ୍ରଭୁ ।

**(ବ୍ୟୋମ ଗୋଟିଏ ଆଲୋକ ବୃତ୍ତରେ ଠିଆ ହେବ । ଅନ୍ୟ ସମସ୍ତ ମଞ୍ଚ ଅନ୍ଧକାର ହେବ । ଠିକ ପୂର୍ବ ଭଳି - ଓଁକାର ଶବ୍ଦ କ୍ରମେ ତୀବ୍ରତର ହେବ । ବ୍ୟୋମ ଯେଉଁ ସ୍ଥାନରୁ ବାହାରିଥିଲା - ମରୁତ ସେଇ ସ୍ଥାନରୁ ଆଲୋକର ବଳୟ ଭିତରୁ ବାହାରି ଆସିବ । ସେ ଆବିର୍ଭାବ ହେବା ପୂର୍ବରୁ ପ୍ରବଳ ପବନ ହେବାର ଶବ୍ଦ ସହିତ ମରୁତର ଈଷତ ନୀଳ ପୋଷାକ ଉଡୁଥିବ । ସେ ଯେମିତି ଉଡି ଉଡି ଆସିଲା ଭଳି ଅଭିନୟ କରିବ)**

ମରୁତ : ଆପଣଙ୍କ ସନ୍ତାନ ମରୁତ ଆପଣଙ୍କୁ ପ୍ରଣାମ ଜଣାଇ, ଆଦେଶକୁ ଅପେକ୍ଷା କରୁଛି ପ୍ରଭୁ ।

ଶବ୍ଦ : ହେ ମରୁତ - ତୁମକୁ ମୁଁ ଶବ୍ଦ ଓ ସ୍ପର୍ଶ ଦୁଇଟି ଗୁଣ ଦାନ କରୁଛି । ତୁମେ ବ୍ୟୋମ ସହିତ ବାସ କର ।

ମରୁତ : ବ୍ୟୋମ ଭଳି ମୋତେ ବିଶାଳ ତନୁ ଦାନ କରନ୍ତୁ ପ୍ରଭୁ ।

ଶବ୍ଦ : ତୁମେ ସ୍ୱଭାବତଃ ଅସ୍ଥିର ! ଚିତ୍ତ ତୁମର ଅତି ଚଞ୍ଚଳ । ତୁମକୁ ଏତେ ବ୍ୟାପ୍ତ କରାଯାଇ ପାରେନା । ତୁମେ ବ୍ୟୋମ ସହିତ ଯେତେ ସ୍ଥାନ ପରିବ୍ୟାପ୍ତ ହୋଇ ରହିପାରିବ ରୁହ ।

**(ସଂଗୀତର ତାଳେ ତାଳେ ମରୁତ ସାରାମଞ୍ଚ ଘୁରି ଘୁରି ଗୋଟିଏ କୋଣରେ ସ୍ଥିର ହୁଏ । ପୂର୍ବ ଭଳି ସାରା ମଞ୍ଚ ପୁଣି**



Digitized by PPRACHIN, SOA

**ଓଁକାର ଶବ୍ଦରେ ପୁରି ଉଠେ । ପରେ ପରେ ଆର୍ବିଭାବ ହୁଏ ଅଗ୍ନି ବା ତେଜ । ତାଙ୍କର ରଂଗ ଲାଲ । ଆର୍ବିଭାବ ପୂର୍ବରୁ ଭୟଙ୍କର ଶବ୍ଦ ହୁଏ ।)**

ତେଜ : ତେଜ ତା'ର ପ୍ରଣାମ ଜଣାଇ ଆଦେଶକୁ ଅପେକ୍ଷା କରୁଛି ପ୍ରଭୁ ।

ଶବ୍ଦ : ହେ ତେଜ ! ତୁମକୁ ମୁଁ ଶବ୍ଦ, ସ୍ପର୍ଶ, ରୂପ ଏ ତିନୋଟି ଗୁଣ ଦେଉଛି । ତୁମେ ସମସ୍ତଙ୍କ ଗର୍ଭରେ ଅଗ୍ନି ରୂପରେ ବାସକର ।

**(ତେଜ ନିଆଁର ଶିଖା ଉପରକୁ ଉଠିଲା ଭଳି ଭଙ୍ଗୀ କରି ଘୁରିବାରେ ଲାଗେ ଓ ପରେ ଗୋଟିଏ କୋଣରେ ସ୍ଥିର ହୋଇ ରୁହେ । ତା'ପରେ ଆବିର୍ଭାବ ହୁଏ ଅପ୍ । ଯେମିତି ଜଣାଯାଏ କେହି ଜଣେ ଗଭୀର ଜଳ ମଧ୍ୟରୁ ବାହାରି ଆସୁଛି ।)**

ଅପ୍ : ମୁଁ ଅପ୍ । ମୋର ପ୍ରଣାମ ଗ୍ରହଣ କରନ୍ତୁ ପ୍ରଭୁ ।

ଶବ୍ଦ : ତୁମକୁ ମୁଁ ଶବ୍ଦ ସ୍ପର୍ଶ ରୂପ ରଙ୍ଗ ଏଇ ଚାରିଗୋଟି ଗୁଣ ଦାନ କରୁଅଛି । ତୁମେ ଜଗତର ମଙ୍ଗଳକାରୀ ଭାବରେ କଠିନ ତରଳ ଶୂନ୍ୟ ଯେ କୌଣସି ରୂପ ନେଇପାରିବ । ତୁମେ ଏଇ ତିନି ରୂପରେ ପରିବ୍ୟାପ୍ତ ହୁଅ ।

**(ପୂର୍ବଭଳି ଅପ୍ ପରିବ୍ୟାପ୍ତ ହୋଇ ଗୋଟିଏ ସ୍ଥାନରେ ସ୍ଥିର ହୁଏ । ପରେ ପରେ ସେ ଆଲୋକ ବଳୟ ଭିତରୁ ସୃଷ୍ଟି ହୁଏ କ୍ଷିତି ମାତା...)**

କ୍ଷିତ୍ : ହେ ପରମପିତା, କ୍ଷିତ୍ ଆପଣଙ୍କୁ ତା'ର ପ୍ରଣାମ ଜଣାଉଛି । ମୋ ଦ୍ୱାରା କି କି ସେବା ହୋଇପାରିବ ଆଦେଶ କରନ୍ତୁ ପ୍ରଭୁ ।

ଶବ୍ଦ : ମୁଁ ତୁମକୁ ଶବ୍ଦ, ସ୍ପର୍ଶ, ରୂପ, ଗନ୍ଧ, ରସ ସବୁକିଛି ଦାନ କରୁଛି ।

କ୍ଷିତ୍ : ମୁଁ ଧନ୍ୟ ହେଲି ପ୍ରଭୁ ।

ଶବ୍ଦ : ମୁଁ ଅନ୍ୟକୁ ଗୋଟିଏ ଦୁଇଟି ଗୁଣ ଦାନ କଲାବେଳେ, ତୁମକୁ ସମସ୍ତ ଗୁଣ ଦାନ କରିଛି । ତା ଅର୍ଥ ଅନ୍ୟମାନଙ୍କ ଅପେକ୍ଷା - ତୁମ ଠାରୁ ମୁଁ ଅଧିକ ସେବା ଆଶା କରୁଛି ।



Digitized by PPRACHIN, SOA

କ୍ଷିତ୍ : ସେ ହେଉଛି ମୋର ଗୌରବ ପ୍ରଭୁ। ଆଦେଶ କରନ୍ତୁ, ମୋତେ କ'ଣ କରିବାକୁ ପଡିବ।

ଶବ୍ଦ : କ୍ଷିତ୍, ଅପ୍, ତେଜ୍, ମରୁତ, ବ୍ୟୋମ - ତୁମେମାନେ ପଞ୍ଚଭୂତ। ତୁମେମାନେ ଏକାଠି ମିଶି ଜୀବଜଗତ ସୃଷ୍ଟି କର। ସେ ଜୀବଜଗତ କ୍ଷିତିମାତାଙ୍କ କୋଳରେ ଆଶ୍ରୟ ନେବେ। କାଳବିଳମ୍ବ ନକରି ତୁମେମାନେ ତୁମ କାର୍ଯ୍ୟରେ ଲାଗିଯାଅ।

(ପ୍ରଥମେ ଶଙ୍ଖଧ୍ୱନି ହୁଏ। କ୍ଷିତ୍, ଅପ୍, ତେଜ୍, ମରୁତ, ବ୍ୟୋମ ମଞ୍ଚର କେନ୍ଦ୍ର ବିନ୍ଦୁରେ ଏକତ୍ର ହୁଅନ୍ତି। ସଙ୍ଗୀତ ମୂର୍ଚ୍ଛନା ସହିତ ପ୍ରଥମେ କ୍ଷିତିମାତା ନୃତ୍ୟ କରିବାରେ ଲାଗନ୍ତି। ତାଙ୍କ ସହିତ ଅନ୍ୟମାନେ ଯୋଗ ଦିଅନ୍ତି।

ଶିକ୍ଷୀମାନେ ଅଭିନୟ କରିଆରେ ପ୍ରଥମେ ଛୋଟ ଏକ ଶୈବାଳ, ଛୋଟ ଗଛ ଓ ମହାଦ୍ରୁମ ସୃଷ୍ଟି କରନ୍ତି। ସମୁଦ୍ରର ତରଙ୍ଗ ତା ଭିତରେ ସାମୁଦ୍ରିକ ଜୀବ, ସେମାନଙ୍କର ଚଳ ପ୍ରଚଳ ଇତ୍ୟାଦି ଅଭିନୟ କରନ୍ତି।

ପରେ ପକ୍ଷୀ, ପଶୁ, ମାଙ୍କଡ ଇତ୍ୟାଦି ଓ ଶେଷରେ ମଣିଷର ଜନ୍ମ। ତାକୁ ଦେଖି ଅନ୍ୟ ଜୀବଜନ୍ତୁ ଭୟଭୀତ ହେବା - ଇତ୍ୟାଦି ମାନବର କ୍ରମ ବିକାଶ ଅଭିନୀତ ହେବ। ଆଦି ମାନବର ପଶୁ ଶିକାର, ଚାଷ କରିବା, ଯାନ୍ତ୍ରିକ ସଭ୍ୟତାର ବିକାଶ, ପରିଶେଷରେ ଭୂପୃଷ୍ଠରୁ ମହାଶୂନ୍ୟକୁ ରକେଟ ପ୍ରେରଣ ଦୃଶ୍ୟ କ୍ରମାନ୍ୱୟ ଭାବେ ଅଭିନୀତ ହେବ। ଶିକ୍ଷୀମାନଙ୍କର ଐକିକ ବା ସମଷ୍ଟିଗତ ଅଙ୍ଗ ବିନ୍ୟାସ ବା କୋରିଓଗ୍ରାଫି ଦ୍ୱାରା ସାଙ୍କେତିକ ଭାବରେ ଉପସ୍ଥାପିତ ହେବ। ଭୂପୃଷ୍ଠରୁ ରକେଟ ଛାଡିବା ସମୟରେ ଅନ୍ତରାଳରୁ ଓଲଟା ଗଣତି ବା କାଉଣ୍ଟ ଡାଉନ୍ ଆରମ୍ଭ ହେବ। ରକେଟ ଶୂନ୍ୟକୁ ଉଠିଯିବା ଅବସ୍ଥାରେ ସ୍ଥିର ରହି ମଞ୍ଚ ଅନ୍ଧାର ହେବ।)





Digitized by PPRACHIN, SOA

# ଗତି

(ଅନ୍ତରାଳରୁ ଘୋଷଣା ସହିତ ମଞ୍ଚ ଆଲୋକିତ ହୁଏ । ଦେଖାଯାଏ ଧର୍ମରାଜ ଯମଙ୍କର ଦରବାର । ପୂର୍ବର ସେଇ ପ୍ଲାଟଫର୍ମ ଉପରେ ଏକ ସୁସଜ୍ଜିତ ସିଂହାସନ । ମଞ୍ଚର ଗୋଟିଏ ପାଖରେ ଚିତ୍ରଗୁପ୍ତ ଗୋଟିଏ ସଜ୍ଜିତ ତପ୍ତପୋଷ ଉପରେ ବସି ରହିବା ଅବସ୍ଥାରେ ଶୋଇ ପଡିଛନ୍ତି । ତାଙ୍କ ସାମନାରେ ଗୋଟିଏ ଛୋଟ ଟୁଲ ଉପରେ ଏକ ବିରାଟ ପାଞ୍ଜି ଯେଉଁଥିରେ ଜନ୍ମ ମୃତ୍ୟୁର ହିସାବ ରହିଛି । ପାଞ୍ଜିର ମଲାଟରେ ସୁନା ଜରିର କାମ । ପାଖରେ ଗୋଟିଏ ସୁନାର ଦୁଆତ । ଗୋଟିଏ ବିରାଟ ପର କଲମ । ଗୋଟିଏ ହାତ ବାଡିଆ ପିତଳର କଲିଂ ବେଲ୍ । ମଞ୍ଚର ପଶ୍ଚାତ ଭାଗରେ ଆକାଶ ମେଘ ଖଣ୍ଡରେ ପୂର୍ଣ୍ଣ । ସର୍ଗର ପରିକଳ୍ପନା ପାଇଁ ମଞ୍ଚର ତଳଭାଗ ଧୂଆଁରେ ଆଚ୍ଛାଦିତ କରାଯାଇପାରେ ।)

ଘୋଷଣା : ବୀରଶ୍ରୀ ମହିଷ ପତି, କ୍ଷିତିପତି କ୍ଷିତିଶ୍ୱର, ଅର୍ଦ୍ଧଶତ ଷଷ୍ଠକୋଟୀ ଜୀବଗଣ ମୁକ୍ତେଶ୍ୱର, କାଳାନ୍ତକ କାଳେଶ୍ୱର, ଜନ୍ମ ମୃତ୍ୟୁ, ପାପପୁଣ୍ୟ ଯମଦଣ୍ଡ ନିରୁପଣେଶ୍ୱର, ନର ସୁର ରାକ୍ଷାସ ଅଧୀଶ୍ୱର, ଶ୍ରୀ ଶ୍ରୀ ଶ୍ରୀ ମହା ମହିମ ଧର୍ମରାଜ, ଧର୍ମ ସିଂହାସନକୁ ବିଜେ କରୁଛନ୍ତି ହୋ ........ ।

(ଧର୍ମରାଜ ତାଙ୍କର ଗୋଦର ଗୋଡକୁ କୌଣସି ଉପାୟରେ ଘୋଷାରି ଘୋଷାରି ଆସି ପହଞ୍ଚି ଯାଆନ୍ତି । ଦରବାର କାର୍ଯ୍ୟ ଆରମ୍ଭ ନ ହେଉଣୁ ଚିତ୍ରଗୁପ୍ତ ଶୋଇ ପଡିଥିବାର ଦେଖି ଟିକିଏ ହସି ଦିଅନ୍ତି । ହାତରେ ତାଙ୍କର ମର୍ତ୍ତ୍ୟରୁ ଆଣିଥିବା Sanskrit to English ଦୋ ଭାଷୀ ବହି)

ଧର୍ମ : ଚିତ୍ରଗୁପ୍ତ - ଚିତ୍ରଗୁପ୍ତ - ମହାମନ୍ତ୍ରୀ ଚିତ୍ରଗୁପ୍ତ ।

(ତଥାପି ଚିତ୍ରଗୁପ୍ତଙ୍କର ନିଦ ଭାଙ୍ଗେନି । ସେ ସାମାନ୍ୟ ମାତ୍ର ଚାହିଁ ଦେଇ ପୁଣି ଶୋଇ ଯାଆନ୍ତି ।)



Digitized by PPRACHIN, SOA

ଧର୍ମ : ଜଣାଯାଉଛି ବିଚରାର କାଲି ରାତିରେ ଭଲ ନିଦ ହୋଇନି । (ପାଖକୁ ଯାଇ) ବେଟା ଚିତ୍ରଗୁପ୍ତ । (ଅପେକ୍ଷାକୃତ ଚଢ଼ା ଗଳାରେ) ଆବେ ଅକାଳ କୁଷ୍ମାଣ୍ଡ ଚିତ୍ରଗୁପ୍ତ । (ହାତରେ ଧରିଥିବା ବହିରେ ଆଘାତ କରି) ଚିତୁ ........ ।

ଚିତୁ : (ଚମକି ପଡି) ପ୍ରଭୁ ........ ।

ଧର୍ମ : (ତାଚ୍ଛଲ୍ୟ କରି) ପ୍ରଭୁ .... ଏଇଟା ଶୋଇବା ଜାଗା ?

ଚିତୁ : ଭୁଲ ହୋଇଯାଇଛି ପ୍ରଭୁ ।

ଧର୍ମ : ଦରବାର ଆରମ୍ଭ ନ ହେଉଣୁ ତୋର ଭୁଲ ହେଇଯାଉଛି ।

ଚିତୁ : ବୃଦ୍ଧାବସ୍ଥା - ଆଖିଟା ସାମାନ୍ୟ ଲାଗିଯାଇଥିଲା ପ୍ରଭୁ ।

ଧର୍ମ : ବୃଦ୍ଧାବସ୍ଥା - ହୁଁ । ଯଦି କାମକୁ ପାରୁନୁ ଭଲାଂଟିୟରଲି ରିଟାୟାରମେଣ୍ଟ ନେଉନୁ କାହିଁକି ?

ଚିତୁ ଏଇ ଥରକମାତ୍ର ଏକ୍ସକ୍ୟୁଜ୍ କରିଦିଅନ୍ତୁ ପ୍ରଭୁ । ଆଉ କେବେ ଭୁଲ ହେବନି ।

ଧର୍ମ : ଏଇ ଥରକ ପାଇଁ ମାଫ୍ କରିଦେଉଛି । ପୁଣି କେବେ ଏମିତି ଅବସ୍ଥାରେ ଦେଖିଲେ ରିଟ୍ରେଞ୍ଚ କରିଦେବି କହୁଛି ।

**(ଧର୍ମ ଯାଇ ସିଂହାସନରେ ବସିବାକୁ ଚାହୁଁଥିଲେ - କିନ୍ତୁ ତାଙ୍କର ଗୋଦର ଗୋଡଟି ହଠାତ୍ ସିଂହାସନରେ ବାଜି ଯିବାରୁ ସେ ଯନ୍ତ୍ରଣାରେ ଛଟପଟ ହୋଇ ଉଠିଲେ ।)**

ଧର୍ମ : ଓଃ ବୋଉଲୋ ...... ମରିଗଲି ।

ଚିତୁ : କ'ଣ ହେଲା ପ୍ରଭୁ ?

ଧର୍ମ : ଓଃ ଗୋଡଟା - ମାନେ ଏଇ ଅଦରବା ଗୋଡଟା ଏଇଠି ବାଜିଗଲା ।

ଚିତୁ : ଅଶ୍ୱୀନି କୁମାରଙ୍କୁ ଖବର ଦେବି ପ୍ରଭୁ ?

ଧର୍ମ : ଧୁ-ତ୍.. । ସେଇଟା କ'ଣ କବିବ । ମିଛରେ ଏଇ ସର୍ଗପୁରରେ କବିରାଜ ବୋଲାଉଛି । ଏଇ ଗୋଡଟା ପାଇଁ ଏତେ ଔଷଧ ଦେଲା, ପଥ୍ୟ ବତେଇଲା - କିଛି କମିଲା ? ସେଟାକୁ କିଛି ମାଲୁମ୍ ନାହିଁ ।



Digitized by PPRACHIN, SOA

କେତେ ଖଣ୍ଡ ଆଜି କେସ୍ ଅଛି - ଡାକ । ଆଜି ହାଇକମାଣ୍ଡ ଗୋଟେ ମିଟିଂ ଡକେଇଛନ୍ତି । ଯିବାକୁ ପଡିବ । ଦେଖିଲୁ କାହାର କାହାର କେସ୍ ଅଛି ।

ଚିତ୍ରୁ : (ପାଞ୍ଜି ଖୋଲି) ଦେଖୁଛି ଆଜ୍ଞା, ଧର୍ମାବ୍ଦ ଇନ୍ଦ୍ର ସମ୍ବତ୍ସର ମକରମାସ ହସ୍ତା ନକ୍ଷତ୍ର ଦ୍ୱାଦଶୀ ତିଥି - ଭାରତ ଦେଶେ - ଓଡିଶା ପ୍ରଦେଶେ - ଶ୍ରୀଳଶ୍ରୀ (ଗୋଟିଏ ବିରାଟ ଜବକାଚ ବାହାର କରି ଦେଖନ୍ତି) ଭାରତ ଦେଶେ - ଓଡିଶା ପ୍ରଦେଶେ ଶ୍ରୀଳ ଶ୍ରୀ ବନ୍ଧୁଆ ଜେନା - ବାପା ରଘୁପତି ଜେନା, ମୁକାମ - ବାବନା ପାଟଣା, ଥାନା - ବାଟମାରଣା, ରାତ୍ରି ଷୋଳଘଡି ସମୟେ ଅତ୍ୟଧିକ ମଦ୍ୟପାନାନ୍ତେ ମୃତ୍ୟୁ ଯୋଗ ପ୍ରାପ୍ତି .... ।

ଧର୍ମ : ଠିକ୍ ଅଛି ଆସାମୀ ଶ୍ରୀ ବନ୍ଧୁଆ ଜେନାଙ୍କୁ ଦରବାରରେ ପେଷ କରାଯାଉ ।

ଚିତ୍ରୁ : ଦୂତ ...... ଦୂତ ...... (ଚିତ୍କାର କରି) ଦୂତ ...... ।

ଧର୍ମ : ହଇଓ ଚିତ୍ରଗୁପ୍ତ ଏମିତି ଚିତ୍କାର କରୁଛ କାହିଁକି । ମର୍ତ୍ତ୍ୟରୁ ଯେଉଁ କଲିଂବେଲ୍ ଆଣିଛ ସେଇଟା ବଜାଉନା କାହିଁକି ?

ଚିତ୍ରୁ : (କଲିଂବେଲ୍ ବଜାଇ) ଦୂତ - ଦୂତ ।

ଧର୍ମ : ଗଲା - ସବୁ ଗଲା ।

ଚିତ୍ରୁ : ପ୍ରଭୁ ।

ଧର୍ମ : Shut up । କହିଲା ପ୍ରଭୁ । ସାମାନ୍ୟ ଗୋଟେ ଦିଟା ଦୂତକୁ ସମ୍ଭାଳି ପାରୁନ, ଏ ସଂସାର ଚଳିବ କେମିତି ।

ଚିତ୍ରୁ : ଆଜ୍ଞା ଏଠି ଯେଉଁ ଚାରି ଜଣଙ୍କର ଡିଉଟି କରିବା କଥା ସେମାନେ ଦରବାରକୁ ଆସୁନାହାଁନ୍ତି ।

ଧର୍ମ : ଆସୁନାହାଁନ୍ତି......। ତାଙ୍କୁ explanation ମାଗି ଫାଇଲ ପୁଟ୍ଅପ୍ କରୁନା କାହିଁକି ? ଚାରି ଚାରିଟା ଲୋକ ଆସୁନାହାଁନ୍ତି - ତୁମେ ନୀରବରେ ବସି ରହିଛ ?



Digitized by PPRACHIN, SOA

ଚିତ୍ରୁ : ଆଜ୍ଞା ତାଙ୍କୁ ଆପଣ ଅଲଗା କାମରେ ଲଗେଇଛନ୍ତି । ସେଇଥିପାଇଁ ମୁଁ କିଛି କରିପାରୁନି ।

ଧର୍ମ : ମୁଁ ତାଙ୍କୁ କାମରେ ଲଗେଇଛି ମାନେ ?

ଚିତ୍ରୁ : ଆଜ୍ଞା ଚାରିଟା ଯାକ ଆପଣଙ୍କ ରେସିଡେନ୍ସରେ । ଜଣେ ରୋଷେଇ, ଜଣେ marketing, ଜଣେ ବଗିଚାରେ ତ ଜଣଙ୍କୁ ମା orderly କରି ରଖିଛନ୍ତି । ଏଇ ଦି ଜଣଙ୍କୁ ନର୍କ ସେକ୍ସନରୁ ଅଣା ହୋଇଛି ।

ଧର୍ମ : ମା, ଜଣଙ୍କୁ ଅଡର୍ଲି କରି ରଖିଛନ୍ତି । ଆଛା ତାହେଲେ ଚାରିଟାଯାକ ସେପଟେ ରହିଯାଉଛନ୍ତି । ତା'ହେଲେ ନିଜେ ଡାକିବାକୁ ପଡିବ..... ହଉ ଡାକ ତାହେଲେ ।

ଚିତ୍ରୁ : ରେସିଡେନ୍ସରୁ କାମ ସାରି ଦି' ଜଣ ଏବେ ଏଠିକି ଆସିବା କଥା ଆଜି ଟିକିଏ କେମିତି ଡେରି ହୋଇଯାଇଛି ।

(ହଠାତ୍ ଗୋଟିଏ ରକେଟ୍ ଯିବାର ଶବ୍ଦ ସହିତ ଧୂଆଁ ଦେଖାଯାଏ ......)

ଧର୍ମ : କ'ଣ ହେଲା - ଏ ପ୍ରଚଣ୍ଡ ଶବ୍ଦ କୁଆଡୁ ଆସୁଛି ? ଆରେ ବାବାରେ କି ବିଷାକ୍ତ ଧୂଆଁ - ଶ୍ୱାସରୁଦ୍ଧ ହୋଇଯାଉଛି - (କାଶି) କ'ଣ ଏଇଟା (କାଶି ଉଠିବା) ?

ଚିତ୍ରୁ : ମଣିଷ ତିଆରି ରକେଟ୍ ଆଜ୍ଞା, ମଣିଷ ସ୍ୱର୍ଗପୁର ଉପରେ ନିଜର ଅଧିକାର ସାବ୍ୟସ୍ତ କରିବାକୁ ଚାହୁଁଛି । (କାଶି ଉଠିବା)

ଧର୍ମ : ମାନେ ?

ଚିତ୍ରୁ : ମଣିଷ ଆଜି ପୃଥିବୀର ପାଣି, ପବନ, ଆକାଶ, ମୃତ୍ତିକା ସବୁକୁ ନିଜର ସର୍ବଗ୍ରାସି ଲୋଭର ଶିକାର କରିସାରିଛି ପ୍ରଭୁ । ସମସ୍ତଙ୍କୁ ନିଜର ସୁଖ ସୁବିଧା ପାଇଁ ଅପବ୍ୟବହାର କରିଚାଲିଛି । ଶେଷରେ ମହାକାଶ ଅଧିକାର କରିବା ପାଇଁ ରକେଟ୍ ଜରିଆରେ ପ୍ରୟାସ କରୁଛି ।

ଧର୍ମ : ରକେଟ୍ ? ଆରେ ଏଇଟା ମାନବ, ଦେବତା ନା ରାକ୍ଷାସ ?

ଚିତ୍ରୁ : ଏ କୌଣସି ଜୀବ ନୁହେଁ ପ୍ରଭୁ - ଏକ ଯାନ୍ତ୍ରୀକ ଯାନ - ଯାକୁ



Digitized by PPRACHIN, SOA

ବ୍ୟବହାର କରି ମଣିଷ ଚନ୍ଦ୍ର ମଙ୍ଗଳରୁ ଖଣ୍ଡେ ଖଣ୍ଡେ ଅକ୍ତିୟାର କରି ନେଲାଣି ।

ଧର୍ମ : କିନ୍ତୁ ମହାକାଶର ଦେବତା ବ୍ୟୋମ, ଏସବୁ ସହ୍ୟ କରିଛନ୍ତି କିପରି ?

ଚିତ୍ରୁ : ଖାଲି ବ୍ୟୋମ ସହ୍ୟ କରିନାହାଁନ୍ତି ପ୍ରଭୁ ଜଳ ଦେବତା ବରୁଣ, ପବନ ଦେବତା ବାୟୁ, ପୃଥିବୀ ମାତା ସମସ୍ତେ ମଣିଷକୁ ଭୟକରି ନୀରବରେ ସବୁ ଅତ୍ୟାଚାର ସହି ଯାଉଛନ୍ତି ।

ଧର୍ମ : କିନ୍ତୁ କାହିଁକି ? ସେମାନେ ମଣିଷକୁ ଭୟକରିବେ କାହିଁକି ?

ଚିତ୍ରୁ : ରାବଣକୁ ଏ ଦେବତାମାନେ ଭୟ କରି ଯେମିତି ଦାସ ହୋଇ ରହିଥିଲେ ପ୍ରଭୁ, ସେମିତି ମଣିଷ ଆଜି ମହାରାବଣ ପାଲଟିଛି ।

ଧର୍ମ : କିଏ ? କିଏ ସେ ଦେବତା ମଣିଷମାନଙ୍କୁ ବର ଦେଲା, ମୁଁ ତାକୁ ଶାସ୍ତି ଦେବି ।

ଚିତ୍ରୁ : ଶାନ୍ତ ହୁଅନ୍ତୁ ପ୍ରଭୁ ।

ଧର୍ମ : କ'ଣ କହୁଛ ତୁମେ - ଶାନ୍ତ ହେବି । ସାମାନ୍ୟ ମାନବ ଶିଶୁ ଆଜି ସ୍ୱର୍ଗର ଶାନ୍ତି ନଷ୍ଟ କରିବାକୁ ବସିଲାଣି, ମୁଁ ଚୁପ ହୋଇ ବସି ରହିବି । କୁହ କିଏ ତାଙ୍କୁ ବର ଦେଇଛି ।

ଚିତ୍ରୁ : ବର ...... କି ବର ପ୍ରଭୁ ?

ଧର୍ମ : Non sense - ବର ମାନେ ବୁଝିପାରୁନୁ । ଦେଖୁଛି ଯେତିକି ବୁଢା ହୋଇଯାଉଛୁ ସେତିକି ବୋକା ହେଇଯାଉଛୁ ।

ଚିତ୍ରୁ : ବୋକା ହୋଇଯାଉନି ପ୍ରଭୁ । ଗୋଟିଏ post ରେ ବିନା ପ୍ରମୋସନ୍‌ରେ ଏତେ ଦିନ କାମ କରି କରି bore ହୋଇଯାଉଛି ।

ଧର୍ମ : ତା ବୋଲି ବର ଶବ୍ଦଟା ବୁଝିପାରିବୁନି ।

ଚିତ୍ରୁ : ବରମାନେ ବୁଝିଛି ଯେ ପ୍ରଭୁ, ହେଲେ କିଏ ବର ଦେଇଛି, ଆପଣ କାହିଁକି ଶାସ୍ତି ଦେବେ, ଏ କଥାର head and tail କିଛି ବୁଝିପାରୁନି ।

ଧର୍ମ : ଆଗରୁ ତୋତେ ଭଲେଣ୍ଟିୟାରଲି ରିଟାୟାରମେଣ୍ଟ କଥା କହୁଥିଲି,



Digitized by PPRACHIN, SOA

ଏବେ ଦେଖୁଛି ତୋତେ କଂପଲ୍‌ସରି ରିଟାୟାରମେଣ୍ଟ ନ ଦେଲେ ଚଳିବନି ।

ଚିତ୍ରୁ : ଏ ଅଧମକୁ ଏତେବଡ ଦଣ୍ଡ କାହିଁକି ପ୍ରଭୁ ! duty ରେ କେବେ ଖିଲାପ କରିନି କି ରାତିସାରା କାମ କରି over time ଡିମାଣ୍ଡ କରିନି । ଯେତେଯାହା ହେଲେ ମଧ୍ୟ କୌଣସି union ରେ ଯୋଗ ଦେଇନି । ଦୟାକରି ଏ ଦାସକୁ ଆପଣଙ୍କ କଥାର ମର୍ମ ମାନେ seed କୁ ଧରେଇ ଦିଅନ୍ତୁ ।

ଧର୍ମ : (ବୁଝେଇବା ଢଙ୍ଗରେ) ଆରେ ବାବୁ ! ମର୍ତ୍ତ୍ୟର ମାନବମାନେ ଯେଉଁ ଜ୍ୟାକେଟ୍ ତିଆରି କରି ସ୍ୱର୍ଗକୁ ଛାଡୁଛନ୍ତି ।

ଚିତ୍ରୁ : ଜ୍ୟାକେଟ୍ ନୁହେଁ ପ୍ରଭୁ ରକେଟ୍ କୁହନ୍ତୁ ରକେଟ୍ ।

ଧର୍ମ : ହେଲାହେ - ଜ୍ୟାକେଟ୍ କୁହ କି ରକେଟ୍ କୁହ ଏକା କଥା ।

ଚିତ୍ରୁ : ଏକା କଥା ନୁହେଁ ପ୍ରଭୁ - ଜ୍ୟାକେଟ୍ ଏକ ପରିଧାନ କିନ୍ତୁ ରକେଟ୍ ଏକ ଦ୍ରୁତଗାମୀ ଯାନ ।

ଧର୍ମ ହେଲା - ରକେଟ୍ ଏକ ଦ୍ରୁତଗାମୀ ଯାନ । ହେଲେ ମଣିଷ କାହା ବଳରେ ଏସବୁ ବାହାର କରୁଛି । ଆମ ବ୍ରହ୍ମା,ଶିବ, ଇନ୍ଦ୍ର କିଏ ନିଶ୍ଚୟ ବର ଦେଇଥିବ । ନହେଲେ ମଣିଷ ଏ ଯାନକୁ ପାଇଲା କେଉଁଠୁ ?

ଚିତ୍ରୁ : ବ୍ରହ୍ମା, ଶିବ ଏମାନଙ୍କୁ ଜବତ କରାଯାଇଛି ପ୍ରଭୁ । ସେମାନେ ଆଉ ବର ଫର ଦେଇ ପାରିବେନି ।

ଧର୍ମ : ମାନେ ?

ଚିତ୍ରୁ : ଆଗ କାଳରେ ଯୋଉ ମଣିଷ ଟିକିଏ ତପସ୍ୟା କରିଦେଲା ଏଇ ବ୍ରହ୍ମା ଶିବ କିଛି ନବୁଝି ନସୁଝି ଭୁଟ୍ କରି ବରଟିଏମାନ ଦେଇଦେଲେ । ଫଳରେ ସେମାନେ ଅଧିକ ଶକ୍ତିଶାଳୀ ହୋଇ ସ୍ୱର୍ଗପୁର ଆକ୍ରମଣ କରି ଇନ୍ଦ୍ର ବରୁଣ ପବନଙ୍କୁ ନେଇ ଖଟେଇଲେ । ଏମିତି ହଇରାଣ କରିବାକୁ ଆମର high command କୁ ଆସ



Digitized by PPRACHIN, SOA

ବାରମ୍ବାର interfere କରିବାକୁ ପଡିଲା । ସେଇଥିପାଇଁ ବିଷ୍ଣୁ ବିଗିଡି ଏମାନଙ୍କୁ ମନା କରି ଦେଇଛନ୍ତି । ବ୍ରହ୍ମା, ଶିବ, ଇନ୍ଦ୍ର, ବରୁଣ ସବୁ ଦେବତାଙ୍କ ଠିପି ବନ୍ଦ । ଆଉ ସେମାନେ ବର ଦେଇ ପାରିବେନି ।

ଧର୍ମ : ତାହେଲେ ମଣିଷ କେମିତି ଏତେ ବଳିୟାନ ହୋଇ ସର୍ଗପୁରକୁ ଆକ୍ରମଣ କରୁଛି ?

ଚିତ୍ରୁ : ମଣିଷ ନିଜ ବୁଦ୍ଧି ଓ ଅଧ୍ୟବସାୟ ବଳରେ ମହା କୌଶଳୀ ଆଉ ବୁଦ୍ଧିମାନ ହୋଇଛି ପ୍ରଭୁ । ଦେବତାଙ୍କ ବର ପାଇଁ ବର୍ଷ ବର୍ଷ ଅପେକ୍ଷା ନକରି ବରଂ ବର୍ଷ ବର୍ଷ ପରୀକ୍ଷା ନିରୀକ୍ଷା ଚଳେଇ ସେ ଆଜି ପ୍ରକାଣ୍ଡ ଶକ୍ତିର ଅଧିକାରୀ ।

ଧର୍ମ : ସତେ !

ଚିତ୍ରୁ : ଆପଣତ ମର୍ତ୍ତ୍ୟକୁ ଆଉ ଯାଉନାହାଁନ୍ତି । ହେଲେ ମର୍ତ୍ତ୍ୟରେ କ'ଣ ଯେ ସବୁ ପରିବର୍ତ୍ତନ ହେଲାଣି ନ ଦେଖିଲେ କ'ଣ ଜାଣିପାରିବେ ?

ଧର୍ମ : ଏଥର ନିଶ୍ଚୟ ଯିବି । ହେଲେ ତୁ ବାରମ୍ବାର ମର୍ତ୍ତ୍ୟକୁ ଯାଇ English ଗୁଡାକ ରସଗୋଲା ଭଳି ଚୋବେଇ ପକଉଛୁ, ମୁଁ ସେଇଟା ପାରୁନି ।

ଚିତ୍ରୁ : ଆପଣ ମୋ ପାଖରୁ ଶୁଣି ଶୁଣି ଯେତିକି କହୁଛନ୍ତି ଯଥେଷ୍ଟ ପ୍ରଭୁ । ସେ ଦୋଭାଷି ବହି ଖଣ୍ଡକ sanskrit to english ଦେଇଥିଲି । ସେଇଟା ମଝିରେ ମଝିରେ ପଢାପଢି କରନ୍ତୁ ।

ଧର୍ମ : ସେଇଟା ପଢୁଛି କ'ଣ, ପୁରା ଘୋଷି ଦେଲିଣି । ଶୁଣିବୁ ARROW ଆରୋ - ମାନେ ଶାୟକ । B-A-T ବ୍ୟାଟ ମାନେ ଗଦା ।

ଚିତ୍ରୁ : (ହସି ଉଠିଛି)

ଧର୍ମ : ଭୁଲ ହୋଇଗଲା କିରେ ଚିତ୍ରୁ । CAT ମାନେ ମାର୍ଜାର ।

ଚିତ୍ରୁ : (ଜୋରରେ ହସି) କ୍ୟାଟ୍ ମାନେ ମାର୍ଜାର ଠିକ୍ ଅଛି ପ୍ରଭୁ ହେଲେ ବ୍ୟାଟ୍ ମାନେ ଗଦା ବୋଲି କିଏ କହିଲା ।

ଧର୍ମ : ଆରେ କହିବ କିଏ । ବ୍ୟାଟ୍ ଲେଖାହୋଇ ତା ପାଖରେ ଗୋଟେ ଗଦା ଭଳି ଚିତ୍ର ଅଙ୍କା ହୋଇଛି । (ବହିଟି ଖୋଲି ଦେଖେଇ ଦିଅନ୍ତି)



Digitized by PPRACHIN, SOA

ଚିତ୍ରୁ : ସେଇଟା ଗଦା ନୁହେଁ ଆଜ୍ଞା, ମର୍ତ୍ତ୍ୟରେ ଗୋଟେ ଖେଳ ହୁଏ । କ୍ରିକେଟ, ସେଇ କ୍ରିକେଟ୍ ଖେଳର ବ୍ୟାଟ୍ ।

ଧର୍ମ : କିରିକେଟ୍ - ସିଏ ପୁଣି କି ଖେଳ ?

ଚିତ୍ରୁ : ଆଜ୍ଞା ଗୋଟେ ଛୋଟ ବଲ୍ ମାନେ କନ୍ଦୁକକୁ ଜଣେ ଗଦା ରୂପକ ବ୍ୟାଟରେ ବାଡେଇ ଧାଇଁବ, ଆଉ ଏଗାର ଜଣ ସେଟାକୁ ଗୋଟେଇବାକୁ ଧାଇଁବେ ।

ଧର୍ମ : ହୁଁ ଇଏ ପୁଣି ଗୋଟେ ଖେଳ । ଆମ ସର୍ଗରେ ଯେଉଁ ପୁଆବାଡି ଖେଳ ହୁଏ, ସେମିତି ହୋଇଥିବ ଆଉ କ'ଣ । ହଉ କ'ଣ ହେଲା ସେ ବନ୍ଧୁଆ ଜେନା, ତାକୁ ଡାକିଲୁ । ଗପରେ ଗପରେ ବହୁତ ସମୟ ହୋଇ ଗଲାଣି ।

ଚିତ୍ରୁ : ଡାକୁଛି ପ୍ରଭୁ । ଦୂତ ଆସିଗଲାଣି ଆଜ୍ଞା । ଆରେ ଡାକ ଆତ୍ମା ନଂ ୪୧୯ ବନ୍ଧୁଆ ଜେନାକୁ ଡାକ୍ ।

**(ଅନ୍ତରାଳରୁ ଦୂତ କଣ୍ଠରେ ଶୁଣାଗଲା ବନ୍ଧୁଆ ଜେନା - ହାଜର ହେ - ଆତ୍ମା ନଂ ୪୧୯ ବନ୍ଧୁଆ ଜେନା ହାଜର ହେ ......)**

ଧର୍ମ : କ'ଣ ହେଲା - ବନ୍ଧୁଆ ଜେନା କାହିଁକି ଆସୁନି ।

ଚିତ୍ରୁ : (ଉଠିଯାଇ ଭିତରକୁ ଗଲେ) କ'ଣ ହେଲା କିରେ - ବନ୍ଧୁଆ ଜେନାକୁ ଡକାଯାଉଛି ପରା ?

ଦୂତ : (ଅନ୍ତରାଳରେ) ଶୋଇ ପଡିଛି ଆଜ୍ଞା ।

ଚିତ୍ରୁ : (ଭିତରୁ) ସେମିତି ନେଇଆସ । (ପ୍ରବେଶ) ବନ୍ଧୁଆ ଜେନା - ଶୋଇ ପଡିଛି ପ୍ରଭୁ ।

**(ଦୂତ ଶୂଳପାଣି ଓ ଦଣ୍ଡପାଣି ବନ୍ଧୁଆ ଜେନାକୁ ଶୋଇବା ଅବସ୍ଥାରେ ଚଳେଇ ଚଳେଇ ନେଇ ଆସନ୍ତି । ବନ୍ଧୁଆର ଆଖି ବନ୍ଦ । ପଡିଯିବାର ସମ୍ଭାବନା ଥିବାରୁ ଦୂତମାନେ ତାକୁ କୌଣସି ଉପାୟରେ ସମ୍ଭାଳି ଠିଆ ହୁଅନ୍ତି ।)**



Digitized by PPRACHIN, SOA

ଧର୍ମ : କ'ଣ ହେଲା କିରେ ଏଟା କାହିଁକି ଆଖି ବନ୍ଦ କରିଛି ?

ଶୂଳପାଣି : ଆଜ୍ଞା ପେଟେ ମହୁଲି ପିଇ ରାତିରେ ଶୋଇଥିଲା । ସେଇ ଶୋଇବା ଅବସ୍ଥାରେ ତାର ପ୍ରାଣବାୟୁ ଚାଲିଯାଇଛି ।

ଧର୍ମ : ସେଠି ମର୍ତ୍ତ୍ୟରେ ସିନା ଲୋକ ଜାଣିବାକୁ ପ୍ରାଣ ଚାଲିଗଲା - ଏଠି ଆଖି ଖୋଲୁନି କାହିଁକି ?

ଶୂଳପାଣି : ତା'ର ନିଶା ଛାଡିନି ହଜୁର । ଆମୋନିଆ ମିଶା ମହୁଲି ପିଇଛି ।

ଧର୍ମ : ମାନେ ?

ଚିତ୍ରୁ : ଆଜ୍ଞା ଆମର ସୋମରସ ଭଳି ମର୍ତ୍ତ୍ୟବାସୀମାନେ ମହୁଲ ଦେହରୁ ଏକ ପ୍ରକାର ମଦ ତିଆରି କରୁଛନ୍ତି । ସେଇ ମଦ ଆମୋନିଆ ନାମକ ଏକ ସାର ଦିଆଯାଇ ପ୍ରସ୍ତୁତ କରାଯାଉଛି । ତା'ର ନିଶା ବଡ଼ ଜୋର୍ ପ୍ରଭୁ ।

ଧର୍ମ : ପୁଅକୁ ତାହେଲେ ଗୋଲାପି ନିଶା ହୋଇଛି । ପାଣି ବାଲ୍ଟିଏ ଆଣି ତା ମୁହଁରେ ମାରିଲୁ ।

**(ଜଣେ ଦୂତ ଭିତରକୁ ଚାଲିଯାଏ । ଅନ୍ୟ ଦୂତ ବନ୍ଧୁଆକୁ ସମ୍ଭାଳି ଧରୁ ଧରୁ ତା'ର ଟୋପିଟି ଖସି ପଡେ । ବନ୍ଧୁଆକୁ ଧରିଥିବା ଅବସ୍ଥାରେ ଟୋପିଟି ଉଠାଇବା ପାଇଁ ଚେଷ୍ଟା କରେ । କିନ୍ତୁ ବନ୍ଧୁଆ ପଡିଯିବା ଭଳି ଅଭିନୟ କରିବାରୁ ସେ ବାଧ ହୋଇ ଟୋପି ଆଶା ଛାଡିଦିଏ । ଦୂତ ପାଣି ଆଣି ବନ୍ଧୁଆ ମୁହଁରେ ମାରେ । ବନ୍ଧୁଆ ଆଖି ଖୋଲି ନିଦ ମଳ ମଳ ଆଖିରେ ଚାହିଁବାକୁ ଲାଗେ ।)**

ଧର୍ମ : ହଁ, ଏତେ ବେଳେ ପୁଅର ହୋସ୍ ଆସିଲା ।

ଚିତ୍ରୁ : ଆସିବନି ପ୍ରଭୁ ନିଶ୍ଚୟ ଆସିବ, ବେଟା ଯିବ କୁଆଡେ । (ପୁଣି ବନ୍ଧୁଆର ଆଖି ବନ୍ଦ) ପୁଣି ହୋସ୍ ଚାଲିଗଲା (ବନ୍ଧୁଆ ପାଖକୁ ଯାଇ) ବନ୍ଧୁଆ ଜେନା, ହେ ବନ୍ଧୁଆ - ଆରେ ହେ ବନ୍ଧୁଆ ଜେନା ।



Digitized by PPRACHIN, SOA

ଧର୍ମ : ଏଇଟାକୁ ଏମିତି ପାରି ହବନି ଚିତ୍ରୁ । ସେପଟୁ ସେ ଅହି ନର୍କରୁ ତତଲା ତେଲ କଡେଇରୁ ଚଟୁଏ ଆଣି ତା ମୁହଁରେ ମାରିଦେ ଦେଖିବୁ ବାଟକୁ ଆସିଯିବ ।

ଚିତ୍ରୁ : ତାକୁ ସେମିତି ଠିଆ କରେଇ ଦେଇ ଯାଅ ।

**(ଦୂତମାନେ ବନ୍ଧୁଆକୁ ଛାଡିଦେଇ ଯିବାକୁ ବାହାରି ପଡନ୍ତି । ବନ୍ଧୁଆ ଗଛ କାଟିଲା ଭଳି ପଡିଯିବା ପୂର୍ବରୁ ଧମ୍ପାଳି ଧରନ୍ତି । ଏଇ ଅବସ୍ଥାରେ ଦୂତର ହାତ ବନ୍ଧୁଆ କାଖରେ ବାଜିଯାଏ । ବନ୍ଧୁଆ ଖିଲି ଖିଲି ହସି ଉଠେ । ଧର୍ମ, ଚିତ୍ରଗୁପ୍ତ ଦୂତ ସମସ୍ତେ ହୋହୋ ହୋଇ ହସି ଉଠନ୍ତି ।)**

ଧର୍ମ : ଆରେ ଏଇଟାକୁ ନିଦରୁ ଉଠେଇବା ସୂତ୍ରଟା ତା କାଖରେ ଅଛି ।

ବନ୍ଧୁଆ : ଆପଣମାନେ କିଏ ? ମୋତେ ଏଠିକି କାହିଁକି ଧରି ଆଣିଛନ୍ତି ?

ଚିତ୍ରୁ : କାମ ଅଛି, ସେଥିପାଇଁ ଧରାହୋଇ ଆସିଛ । ଥୟଧରି ସେଇଠି ସେମିତି ଠିଆ ହୋଇ ରୁହ ।

ବନ୍ଧୁଆ : ମୁଁ ଏଠି ଥୟଧରି ରହି ପାରିବିନି । ମୁଣ୍ଡ ଉପରେ election । ମୋ ହାତରେ ବହୁତ କାମ । ଆପଣମାନେ କିଏ ମୋତେ କାହିଁକି ଏଠିକି ଧରି ଆଣିଛନ୍ତି କହନ୍ତୁ ।

ଧର୍ମ : ଦୂତ ମୂଷିଦନ୍ତ, ବେଟା ଦେହରେ ଟିକିଏ ହାତ ଲଗେଇଲୁ ଦେଖି (ଦୂତ ଲାଜରେ ମୁହଁ ତଳକୁ କରିଛି ।)

ଧର୍ମ : ଆବେ ଲଗା ହାତ କହୁଛି ।

**(ଦୂତ ବନ୍ଧୁଆ କାଖରେ ହାତ ଦେବାକୁ ଯାଏ । ହାତ ମାରୁ ମାରୁ ବନ୍ଧୁଆ ଖିଲି ଖିଲି ହୋଇ ହସି ଉଠେ । ଅନ୍ୟମାନେ ହସି ଉଠନ୍ତି ।)**

ବନ୍ଧୁଆ : ମୁଁ ଚିତ୍କାର କରିବି କହି ଦେଉଛି । **ସ୍ପଷ୍ଟ** ଦିବାଲୋକରେ ଜଣେ ହରିଜନ ଉପରେ ଅତ୍ୟାଚାର । Assembly କମ୍ପେଇ ଦେବି କହୁଛି ।



Digitized by PPRACHIN, SOA

ଧର୍ମ : କ'ଣଟା କମ୍ପେଇ ଦେବ ବୋଲି କହୁଛି କିରେ ଚିତ୍ତୁ ।

ଚିତ୍ତୁ : ଆଜ୍ଞା ବେଟାର ହୋସ ନାହିଁ । ସେ ଭାବୁଛି ଏଇଟା ମର୍ତ୍ତ୍ୟ । ରାଜନୀତି କରୁଥିଲା ତ, ମନ୍ତ୍ରୀମଣ୍ଡଳ ଆସେମ୍ଲି କଥା ମନେ ପଡ଼ିଯାଉଛି ।

ବନ୍ଧୁଆ : ହେଇ ଚୁପ୍ । ଏଇଟା ସେଇଟା କ'ଣ କହିବାରେ ଲାଗିଛି । ତୁମେମାନେ ଶିଷ୍ଟାଚାର ଜାଣିନା । ମୋତେ ଚିହ୍ନିଛ ? ମୋର କାଟ୍ତି କେତେ ଜାଣିଛ ? ମୋ ହାତରେ ଦୁଇ ଲକ୍ଷ ଭୋଟର । ମୁଁ ହେଉଛି ଦଳିତ ହରିଜନ ସଂଘର ସଭାପତି ।

ଧର୍ମ : ହରିଜନ ? ଆରେ ତୁ କିଛି ବୁଝୁଛି ଚିତ୍ତୁ ?

ଚିତ୍ତୁ : ମର୍ତ୍ତ୍ୟର ଏକ ଜାତି ପ୍ରଭୁ । ସେ ଜାତିର ସଭାପତି ।

ଧର୍ମ : ହରିଜନ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୁଦ୍ର ଏସବୁ ପୁରୁଣା କାଳିଆ ଜାତି କଥା ଶୁଣିଛି । ତେବେ ହରିଜନ, ଶିବଜନ, ବିଷ୍ଣୁଜନ, ମହେଶ୍ୱରଜନ ବାଃ ଖୁବ୍ ସୁନ୍ଦର ବ୍ୟବସ୍ଥା ଦେଖୁଛି ।

ବନ୍ଧୁଆ : ହେ ବାବୁ । ମୋ ସହିତ ଥଟ୍ଟା କରିବନି କହି ଦେଉଛି । ଆଉ ଥରେ ଯଦି ମୋ ଜାତି ବିଷୟରେ ପାଟି ଫିଟେଇବ ଏଇଠୁ ସାଙ୍ଗେ ସାଙ୍ଗେ ଯାଇ ମୁଖ୍ୟମନ୍ତ୍ରୀ ପାଖକୁ ଫୋନ୍ କରିଦେବି । ହରିଜନ ଯଦି ପାଟିରେ କହିପାରୁନ ସିଡ୍ୟୁଲ କାଷ୍ଟ କୁହ ।

ଧର୍ମ : ଚିତ୍ତୁ । ଆରେ ଟିକିଏ ବୁଝେଇ ଦେ । ସେ କ'ଣ କହୁଛି ।

ଚିତ୍ତୁ : ହରିଜନମାନଙ୍କୁ ସରକାର ଇଂରାଜୀରେ ସିଡ୍ୟୁଲ କାଷ୍ଟ କହିଥାନ୍ତି । ଏମାନେ ବହୁ ପୁରା କାଳରୁ ଅନ୍ୟମାନଙ୍କ ଦ୍ୱାରା ଦଳିତ ନିଷ୍ପେସିତ ହୋଇ ଚଳି ଆସୁଛନ୍ତି । ତେଣୁ ଏମାନଙ୍କୁ ସାହାଯ୍ୟ କରିବା ପାଇଁ ସବୁ କ୍ଷେତ୍ରରେ ଅଗ୍ରାଧିକାର ଦିଆଯାଉଛି ।

ଧର୍ମ : ବାଃ, ଅତି ଚମତ୍କାର ଉପାୟ ଦେଖୁଛି । ଯାହା ହେଉ ଏତେ ଦିନପରେ ସୁବର୍ଣ୍ଣମାନଙ୍କ ଶୋଷଣରୁ ଟିକିଏ ମୁକ୍ତ ପାଇ ପାରିବେ ।



Digitized by PPRACHIN, SOA

ଚିତ୍ରୁ : ଆଜ୍ଞା ଯିଏ ସରକାର ଗଢିଲା - ଏମାନଙ୍କୁ ସାହାଯ୍ୟ କରିବାକୁ ବାଧ୍ୟ । ଏମାନଙ୍କୁ ହାତରେ ନ ରଖିଲେ ଆସନ ଟଳମଳ ହୋଇଯିବ ଆଜ୍ଞା ।

ଧର୍ମ : ଓଃହୋ - ବେଟା ସେଇଥିପାଇଁ ମନ୍ତ୍ରୀ ଆସେମ୍ବ୍ଲି କଥା କହି କମ୍ପଉଛି ।

ବନ୍ଧୁଆ : ମୋର ବାରଣ ସତ୍ତ୍ୱେ ଭଦ୍ର ଭାବରେ କଥା କହିପାରୁନ । ତୁମେମାନେ କିଏ ?

ଚିତ୍ରୁ : ବାପା ବନ୍ଧୁଆ ଜେନା - ତୋ ସମ୍ମୁଖରେ ଯାହାଙ୍କୁ ଦେଖୁଛୁ ସେ ହେଉଛନ୍ତି ଧର୍ମରାଜ - କାଳାନ୍ତକ ଯମ, ଆଉ ମୁଁ ତାଙ୍କର ମହାମନ୍ତ୍ରୀ ଚିତ୍ରଗୁପ୍ତ, ବୁଝିଲୁ ।

ବନ୍ଧୁଆ : ମିଛ......ପୁରାପୁରି ମିଛ । ତୁମେମାନେ ନିଶ୍ଚିତ କୌଣସି ରାଜନୈତିକ ଦଳର ଭଡାଟିଆ ଗୁଣ୍ଡା । ନିର୍ବାଚନ ଆଗରେ ଅଛିତ । ଭାବିଛ south india ରେ ଯେମିତି ବିଭିନ୍ନ ପ୍ରକାର ବେଶ ବଦଳାଇ ରାମ, କୃଷ୍ଣ ସାଜି ଭୋଟ ମାରି ନେଉଛନ୍ତି - ତୁମେମାନେ ମୋ ହାତରୁ ଭୋଟଟକ ମାରିଦବ । ମୁଁ ଠିକ୍ ଚିହ୍ନି ନେଇଛି ।

ଧର୍ମ : (ହସି) ଚିତ୍ରୁ ।

ଚିତ୍ରୁ : ମର୍ତ୍ତ୍ୟର ସଂସ୍କାର ଯାଇନି ପ୍ରଭୁ । ସେ ଯାହା ସବୁ କରିଆସିଛି ଆହୁରି ଦୁଇ ବର୍ଷ କାଳ ମର୍ତ୍ତ୍ୟ କଥା ପାଶୋରି ପାରିବନି ।

ଧର୍ମ : ଠିକ୍ ଅଛି ପୁଅର ପାପ ପୂଣ୍ୟର ଫଳାଫଳଟା ପଢିଲୁ । ବିଚାର ଆରମ୍ଭ କରିବା ।

ଚିତ୍ରୁ : (ପାଞ୍ଜି ପଢି) ବନ୍ଧୁଆ ଜେନା, ପିତା - ରଘୁନାଥ ଜେନା - ମୂକାମ - ବାବନା ପାଟଣା - ଥାନା - ବାଟମାରଣା, ପାପ ହେଲା ଦୁଇ କାହାଣ ପାଞ୍ଚ ପଣ - ଦୁଇ କଡା ! ପୂଣ୍ୟ ହେଲା ଦୁଇ ଗଣ୍ଡା । ବାହପିଆ - ମିଥ୍ୟାବାଦୀ - ରାଜନୀତିରେ କରେ କାରସାଦ - ଏଇ କର୍ମରେ ବୟସ ତେପନ ବର୍ଷେ ତିନି ମାସ



Digitized by PPRACHIN, SOA

ଏକୋଇଶୀ ଦିନେ - ଯମଦଣ୍ଡ ଘାତେ - ଅତ୍ୟଧିକ ବିଷାକ୍ତ ମଦ୍ୟପାନାନ୍ତେ - ମୃତ୍ୟୁ ଯୋଗ ପ୍ରାପତ...।

ବନ୍ଧୁଆ : ମାନେ ।

ଚିତ୍ରୁ : ମାନେ ତୁମର ତେପନ ବର୍ଷରେ ମୃତ୍ୟୁ ହୋଇଛି । ତୁମକୁ ମର୍ତ୍ତ୍ୟରୁ ଅଣାଯାଇ ଏଇଠି ସ୍ୱର୍ଗର ଯମ ଦରବାରରେ - ଧର୍ମ ଅବତାରଙ୍କ ସମ୍ମୁଖରେ ଧର୍ମ ବିଚାର ପାଇଁ ଦଣ୍ଡାୟମାନ କରାଯାଇଛି ।

ବନ୍ଧୁଆ : ଧୁତ୍, ଧର୍ମ ବିଚାର । କି ଧର୍ମ ବିଚାର ? କିଓ ତୁମର ତ ମୂଳରୁ ଭୁଲ - ବିଚାର କରିବ କ'ଣ ?

ଧର୍ମ : ମୂଳରୁ ଭୁଲ୍ । କ'ଣ ମୂଳରୁ ଭୁଲ୍ ।

ବନ୍ଧୁଆ : (ରାଗି) ହିଁ ମୂଳରୁ ଭୁଲ୍ । ନିର୍ଦ୍ଦିଷ୍ଟ ସମୟର ପାଞ୍ଚବର୍ଷ ପୂର୍ବରୁ ମୋତେ ମାରି ଦେଇଛ । ମୋର ବିଚାର କରିବ କ'ଣ ? ମୁଁ ତୁମମାନଙ୍କ ନାଁରେ କେସ୍ କରିବି । SC, ST Tribunal ରେ କେସ୍ କରିବି ।

ଧର୍ମ : ଆମମାନଙ୍କ ନାଁରେ କେସ୍ କରିବୁ ?

ବନ୍ଧୁଆ : ହଁ - ହାଇକୋର୍ଟ - ସୁପ୍ରିମକୋର୍ଟ ସବୁଠି କେସ୍ କରିବି । ଏମିତି ସେମିତି ପଡିଛି - ନାଇଁ । ଆରେ ମୁଁ ଘରେ ଟିକିଏ ଆରାମ କରିଥିବା ଅବସ୍ଥାରେ ଜବରଦସ୍ତ ଉଠେଇ ଆଣି ଗୋଟେ ଧନ୍ଦା ଲଗେଇଛ । ମାନବ ଅଧିକାର କମିଶନ ଆଗରେ ଆପତ୍ତି କରିବି ।

ଚିତ୍ରୁ : କାହିଁକି ପାଟି କରୁଛୁ ବନ୍ଧୁଆ । ସେଇଠି ସେମିତି ଚୁପ୍ ହୋଇ ବସ । ଧର୍ମରାଜ ତୋର ବିଚାର କରିବେ ।

ବନ୍ଧୁଆ : ବିଚାର କରିବେ - ଛେନାଟା ବିଚାର କରିବେ । SC ଆଉ ST ମାନଙ୍କୁ ସବୁ କ୍ଷେତ୍ରରେ ପାଞ୍ଚବର୍ଷ କନ୍‌ସେସନ୍ ଦିଆଯାଏ, ସେ କଥା ତୁମେ ଜାଣିନ । କୋଉ ଅଧିକାର ବଳରେ ମୋତେ ତେପନ ବର୍ଷରେ ମାରିଛ - ମୋର ଅଠାବନ ବର୍ଷରେ ମରିବା କଥା । ରାଜନୀତି ଭିତରେ ପଲିଟିକ୍ସ ପୁରେଇ ଗୋଟେ ଧନ୍ଦା କରୁଛ ।

ଚିତ୍ରୁ : ଏଠି ତୁମ SC ଆଉ ST କଥାର କୌଣସି ମୂଲ୍ୟ ନାହିଁ ।



Digitized by PPRACHIN, SOA

ବନ୍ଧୁଅ : ମୂଲ୍ୟ ନାହିଁ କାହିଁକି ?

ଚିତ୍ରୁ : ତା କାରଣ ତୁମେ ଭଲ ଭାବରେ ଜାଣ । ପାଟିତୁଣ୍ଡ ନକରି ବସ ସେଇଠି ।

ବନ୍ଧୁଆ : ମୁଁ ବ୍ରାହ୍ମଣ ଘରେ ଜନ୍ମ ହୋଇଗଲି ବୋଲି ହୋଇଗଲା । କିଓ ମୋତେ ପରା ଜଣେ ହରିଜନ ନିୟମ ଅନୁଯାୟୀ ପୋଷ୍ୟପୁତ୍ର କରିଛି । ମୁଁ ଆଫିଡେଭିଟ୍ କରି ବନ୍ଧୁଆ ତ୍ରିପାଠୀରୁ ବନ୍ଧୁଆ ଜେନା କରିଛି । କୋର୍ଟ, କଚେରୀ, ଆସେମ୍ଲି, ପାର୍ଲିଆମେଣ୍ଟ ସବୁଠି ଏସ୍.ସି ର ସୁବିଧା ପାଉଛି । ଏଠି ହବନି କାହିଁକି ? ମୋତେ ପୁଣି ପାଞ୍ଚବର୍ଷ ଜୀବନ ଦେଇ ମୋ ଘରେ ନେଇ ଛାଡିବାର ବ୍ୟବସ୍ଥା କର ।

ଧର୍ମ : (ହସ ଉଠିଲେ) ବେଟା ଆହୁରି ବଞ୍ଚିବ ବୋଲି ମୁକୁନ୍ଦି ଉଖୁଡା ଖାଉଛି । ଦୂତ ! ଏଟାକୁ ନର୍କକୁ ନେଇଯାଅ ।

**(ଦୂତମାନେ ବନ୍ଧୁଆକୁ ଧରି ନିଅନ୍ତି । ବନ୍ଧୁଆ ଚିତ୍କାର କରି ପ୍ରତିବାଦ କରିବାକୁ ଲାଗେ । ଦୂତମାନେ ତାକୁ ଟାଣି ନେଇ ଯାଆନ୍ତି ।)**

ବନ୍ଧୁଆ : (ଭିତରୁ) ଯେଉଁଠିକି ନେଇଗଲେ ମଧ ମୁଁ ଛାଡିବିନି । ରାଜ୍ୟସାରା ମୋ ଲୋକ ଘେରି ରହିଛନ୍ତି । ଦୁଇ ଲକ୍ଷ ଭୋଟର । ସିଧା ପ୍ରଧାନମନ୍ତ୍ରୀ ପାଖକୁ ଚାଲିଯିବି - ଆସେମ୍ଲି, ପାର୍ଲିଆମେଣ୍ଟ କମ୍ପେଇ ଦେବି - ଦେଶସାରା ନିଆଁ ଲଗେଇ ଦେବି ।

(ଧର୍ମ ଓ ଚିତ୍ରଗୁପ୍ତ ହସି ଉଠନ୍ତି)

ଧର୍ମ : ନିଆଁ ଲଗେଇ ଦେବ । କ'ଣ ଜାତି କହିଲା ଚିତ୍ରୁ - ସିଲୁର କାଷ୍ଟ ।

ଚିତ୍ରୁ : ସିଲୁର କାଷ୍ଟ ନୁହେଁ ପ୍ରଭୁ ସିଡ୍ୟୁଲ କାଷ୍ଟ ।

ଧର୍ମ : ସିଡ୍ୟୁଲ କାଷ୍ଟ - ମର୍ତ୍ତ୍ୟରେ ଦେଖୁଛି ବହୁତ ପରିବର୍ତ୍ତନ ହେଲାଣି ।

ଚିତ୍ରୁ : ବହୁତ ଆଜ୍ଞା, ମର୍ତ୍ତ୍ୟ ଯେତିକି ଉନ୍ନତି କରିଛି ସେତିକି ଖରାପ ବି ହୋଇଛି । ବିଶେଷତଃ ଏଇ ରାଜନୈତିକ ଲୋକ ମର୍ତ୍ତ୍ୟର ବାୟୁମଣ୍ଡଳକୁ ଦୂଷିତ କରିବାରେ ଦାୟୀ ।



Digitized by PPRACHIN, SOA

ଧର୍ମ : ସେ ଯାହାହେଉ ମର୍ତଟା ଦେଖିଆସିବାକୁ ବହୁତ ଇଚ୍ଛା ହେଲାଣି । କିଛି ଗୋଟେ ବ୍ୟବସ୍ଥା କର ।

ଚିତ୍ରୁ : ଆପଣଙ୍କ ପାଇଁ ବ୍ୟବସ୍ଥା କ'ଣ ଆଜ୍ଞା - ଯେତେବେଳେ ଚାହିଁବେ ଘୁରି ଆସିବେ - କିଏ ମନା କରିବ ।

ଧର୍ମ : ହଉ ଆଜି ଆଉ କାହାର କାହାର ବିଚାର ଅଛି ଜଲଦି ଡାକିଲୁ ହବ ଯଦି ଘେରେ ବୁଲି ଆସିବା ।

ଚିତ୍ରୁ : ଦେଖୁଛି ପ୍ରଭୁ । (ପାଞ୍ଜି ଦେଖି) ଆସାମୀ କୁମାରୀ ବୁଦ୍ଧିମତୀ ପଟ୍ଟନାୟକ, ମୁକାମ - ଯାଜପୁର, ରାଜ୍ୟ - ଓଡିଶା - ଆତ୍ମା ନଂ ଚାରିଶହ ବିସ୍, ନୃତ୍ୟ ଗୀତ ନିପୁଣା, ଗୌର ତନୁ, ଉନ୍ନତ ବକ୍ଷ, କୁଞ୍ଚିତ କେଶ, ୨୪ ବର୍ଷ ବୟସେ ଆଜ ଦିନେ ମକର ମାସେ ଦ୍ୱିଜା ନକ୍ଷତ୍ରେ ରାତ୍ର ଦୁଇ ଘଡି ପାଞ୍ଚ ଦଣ୍ଡେ ହାଇ ମାରିବା ଅବସ୍ଥାରେ ମୃତ୍ୟୁ ଦଣ୍ଡ ପ୍ରାପ୍ତି ।

ଧର୍ମ : ବେଶ୍, ଆତ୍ମା ନଂ ଚାରିଶହ ବିସ୍ କୁମାରୀ ବୁଦ୍ଧିମତୀ ପଟ୍ଟନାୟକଙ୍କୁ ହାଜର କରାଯାଉ ।

ଚିତ୍ରୁ : ଦୂତ - ଦୂତ - ବୁଦ୍ଧିମତୀ ପଟ୍ଟନାୟକଙ୍କୁ ହାଜର କରାଅ । ଜଲଦି ।

(ଦୂତ ଶୂଳପାଣି ପ୍ରବେଶ କରିଛି)

ଶୂଳପାଣି : କ୍ଷମା କରିବେ ପ୍ରଭୁ ।

ଧର୍ମ : ଚୋପ୍ - ଜଲଦି ଆସାମୀକୁ ପେସ୍ କରନା......

କ୍ଷମା କରିବେ ପ୍ରଭୁ ।

ଶୂଳପାଣି : ଯେଉଁ ଆସାମୀକୁ ହାଜର କରିବା କଥା ସେମିତି କେହି ମର୍ତ୍ୟରେ ନାହିଁ ପ୍ରଭୁ ।

ଧର୍ମ : What non-sense - ତୋ ମୁଣ୍ଡ ଠିକ୍ ଅଛିତ ?

ଶୂଳପାଣି : ଆମ ଲେଖାରେ କିଛି ଭୁଲ୍ ହୋଇଯାଇଛି ପ୍ରଭୁ । ଦୟାକରି ପାଞ୍ଜି ଆଉଥରେ ଦେଖନ୍ତୁ ।

ଚିତ୍ରୁ : କାହିଁକି ? ତୋ କଥା ଅନୁସାରେ ପାଞ୍ଜି ଆଉଥରେ କାହିଁକି ଦେଖାହେବ ?



Digitized by PPRACHIN, SOA

ଶୂଳପାଣି : ହଜୁର ଯାଜପୁରରେ ବୁଦ୍ଧିମତୀ ପଟ୍ଟନାୟକ ବୋଲି କେହି ନାହିଁ ପ୍ରଭୁ । ନିଶ୍ଚୟ ପାଞ୍ଜିରେ କିଛି ଭୁଲ ରହିଯାଇଛି ।

ଧର୍ମ : ତା' ମାନେ ତୁମେମାନେ ବର୍ତ୍ତମାନ ପର୍ଯ୍ୟନ୍ତ ସେ ଝିଅକୁ ମୃତ୍ୟୁଦଣ୍ଡ ଦେଇନ ?

ଶୂଳପାଣି : ନାହିଁ ହଜୁର, କାଲି ରାତିସାରା ଯାଜପୁର ଗୋଟାଯାକ ବୁଲି ବୁଲି ଥକି ଗଲୁ ପଛେ ଏମିତି ଝିଅ କେହି ମିଳିଲେନି ।

ଧର୍ମ : (ବିରକ୍ତ ସହ ଦୃଢ କଣ୍ଠରେ) ଚିତ୍ରଗୁପ୍ତ ।

ଚିତ୍ରୁ : ଧର୍ମରାଜ !

ଧର୍ମ : ଏସବୁ ମୁଁ କ'ଣ ଶୁଣୁଛି ?

ଚିତ୍ରୁ : ମୋର କିଛି ଦୋଷ ନାହିଁ ପ୍ରଭୁ । ଏ ଠାପୁଆଗୁଡାକ ମିଛ କହୁଛନ୍ତି । ମୂଳରୁ ମର୍ତ୍ତ୍ୟକୁ ଯାଇନଥିବେ ।

ଧର୍ମ : ହଇରେ ଅକାଳ କୁଷ୍ମାଣ୍ଡ - ଚିତ୍ରୁ ଯାହା କହୁଛି ଶୁଣା ଯାଉଛି ?

ଦୂତ ମୁଁ ମିଛ କହୁନି ପ୍ରଭୁ । କାଲି ମୁଁ ଆଉ ଦଣ୍ଡପାଣି ଦି ଜଣ ମିଶି ମର୍ତ୍ତ୍ୟର ଘର ଘର ବୁଲି ନାକେଦମ୍ ହେଇ ଯାଇଛୁ । ତାକୁ ଡାକି ପଚାରି ପାରନ୍ତି ହଜୁର ।

ଧର୍ମ : ଡାକ୍, ଡାକ ସେ ଦଣ୍ଡପାଣିକୁ ।

(ଦୂତ ଦଣ୍ଡପାଣିକୁ ଡାକିବାକୁ ଚାଲିଗଲା)

ଚିତ୍ରୁ : ଶୁଣ୍ଡି ସାକ୍ଷୀ ମାତାଲ ପ୍ରଭୁ । ଦିଟା ଯାକ ଏଇଠି ସାମାନ୍ୟ ସୋମରସ ପିଉଥିଲେ । ବାରମ୍ବାର ମର୍ତ୍ତ୍ୟ duty ରେ ଯାଇ ଗଞ୍ଜେଇ - ଚରସ୍ କେତେ କ'ଣ ଟାଣିବା ଶିଖି ଗଲେଣି ପ୍ରଭୁ । କୋଉଠି ଦି ଦମ୍ ଟାଣିଦେଇ ଶୋଇ ପଡିଥିବେ ହଜୁର ।

(ଦଣ୍ଡପାଣି ଓ ଶୂଳପାଣି ଆସନ୍ତି)

ଧର୍ମ : ହଇରେ - ତୋ ନା ଦଣ୍ଡପାଣି ?

ଦଣ୍ଡପାଣି : (ସ୍ୱଭାବତଃ ଖନା) ହଁ - ହଁ ହଜୁର ।

ଧର୍ମ : କାଲି ଦି ଜଣଯାକ ମିଶି କେତେ ଗଞ୍ଜେଇ ଥିଲ ଟାଣି ?



Digitized by PPRACHIN, SOA

ଦଣ୍ଡପାଣି : ଗଞ୍ଜେଇ ଆମେ ଟା -ଟା - ଟାଣିନୁ ପ୍ରଭୁ । ଆମେ ମୂଳରୁ ଗଞ୍ଜେଇ ଛୁ - ଛୁଇଁନୁ ।

ଧର୍ମ : ଚୋପ୍ କହିଲା ଛୁ - ଛୁ ଛୁଇଁନୁ । ସତିଆଟା ବାହାରି ପଡିଲା । ଗଞ୍ଜେଇ ଛୁଇଁନ ତ ଆସାମୀ ଗଲା କୁଆଡେ ?

ଦଣ୍ଡପାଣି : ଆମକୁ ଯେଉଁ ଝିଅ କଥା କହିଥିଲେ ଆମେ ଯାଇ ଠିକଣା ଜାଗାରେ ବହୁତ ଖୋଜିଲୁ । କିନ୍ତୁ ତାକୁ ପା - ପା - ପାଇଲୁନି ହଜୁର ।

ଚିତ୍ରୁ : ତୁମେମାନେ ନିର୍ଦ୍ଦିଷ୍ଟ ଜାଗାକୁ ଯାଇ ସେ ଆତ୍ମା ନଂ ଚାରିଶହ ବିସ୍ କୁମାରୀ ବୁଦ୍ଧିମତୀ ପଟ୍ଟନାୟକକୁ ପାଇଲନି - ସତ କହୁଛୁ ?

ଦଣ୍ଡପାଣି : ଧର୍ମ ଦରବାରରେ ପାଟିରୁ ମିଛ ବାହାରିବନି । ମିଛ କହୁଥିଲେ ଏ ମୁର୍ଦ୍ଧନା ଫାଟିଯିବ ହଜୁର ।

ଧର୍ମ : (ଚିତ୍କାର କଣ୍ଠରେ) ଚିତ୍ରଗୁପ୍ତ !

ଚିତ୍ରୁ : ପ୍ରଭୁ !

ଧର୍ମ : ନୋ ପ୍ରଭୁ ଅର୍ ପ୍ରଭୁ । ଅତ୍ୟଧିକ ବୃଦ୍ଧ ହୋଇ ତୋର ମତିଭ୍ରମ ଘଟିଲାଣି, କସ୍ମିନ କାଳେ ବିଧିର ବିଧାନ ଜନ୍ମ ମୃତ୍ୟୁ କଥା ଭୁଲ ହେଇନି । ଆଜି କାହିଁ ହେଲା ? Answer me ।

ଚିତ୍ରୁ : ମୋତେ ବିଶ୍ୱାସ କରନ୍ତୁ ପ୍ରଭୁ । ମୁଁ ଠିକ୍ ସମୟରେ ଠିକ୍ ଲୋକକୁ ଠିକ୍ ସ୍ଥାନରେ ମରଣ ପ୍ରାପ୍ତି ଯୋଗ ଦେଇ ଆସୁଛି । ମୂଳରୁ ଏ ପର୍ଯ୍ୟନ୍ତ ଗୋଟିଏ ହେଲେ ଭୁଲ୍ ହେଇନି । ଏଗୁଡାକ ଗଞ୍ଜେଇ ନଟାଣିଲେ ବି ଅନ୍ୟ କିଛି ନିଶା ପାଣି କରି ଭୁଲି ଯାଇଛନ୍ତି ।

ଧର୍ମ : ଆବେ ତୋ ନାଁ କ'ଣ ବୋଲି କହିଲୁ ?

ଦଣ୍ଡପାଣି : ଦଣ୍ଡପାଣି ହଜୁର ।

ଧର୍ମ : ତୁ ଦଣ୍ଡପାଣି କୁ ସେ ଶୂଳପାଣି - କାଲି ରାତିରେ କ'ଣ ଦେଇଛ ଟାଣି । ସତକୁହ ନହେଲେ ତୁମ ଦିଟାକୁ ବିଷ୍ଟା ନର୍କରେ ପକେଇ ଘାଣ୍ଟିବି - କୁହ କାଲି କ'ଣ ନିଶା କରିଛ ?

ଶୂଳପାଣି : ନାଇଁ ହଜୁର । ଅନ୍ୟ ଦିନମାନଙ୍କରେ ଟିକିଏ ଟିକିଏ କରୁ । ହେଲେ କାଲି ଆସାମୀକୁ ନପାଇ ଆମ ମୁଣ୍ଡ ଖରାପ ହୋଇଯାଇଛି ପ୍ରଭୁ ।



Digitized by PPRACHIN, SOA

ଦଣ୍ଡପାଣି : ବିଡି ଖଣ୍ଡେ ବି ଟା- ଟା- ଟାଣିନୁ ପ୍ରଭୁ ।

ଶୂଳପାଣି : ମୋଟରୁ ଛୁଇଁନୁ ହଜୁର । ଯେଉଁ ଘରର ଠିକଣା ଦିଆଯାଇଥିଲା ସେଠି ଜଣେ ବୁଢା ଆଉ ତା'ର ଯବାନ ପୁଅ ଛଡା ଆଉ କେହି ରହୁ ନାହାଁନ୍ତି ହଜୁର । ବୁଦ୍ଧିମତୀ ପଟ୍ଟନାୟକ ସେଠି ଆସିବ କୋଉଠୁ ?

ଚିତୁ : ମର୍ତ୍ତ୍ୟରେ ବର୍ତ୍ତମାନ ଯେଉଁ ଫେସନ୍ ଚାଲିଛି, ସେଥିରେ ପୁଅ ଝିଅ ମଧ୍ୟରେ କୌଣସି ପ୍ରଭେଦ ପାଇବେନି ପ୍ରଭୁ । ଝିଅମାନେ ଛୋଟ ଛୋଟ ବାଳ ବନେଇ ପୁଅଙ୍କ ଭଳି ପୋଷାକ ପିନ୍ଧି ଚଲାବୁଲା କରୁଛନ୍ତି । ଏଗୁଡାକ ନିଶ୍ଚୟ ଚିହ୍ନିବାରେ ଭୁଲ କରିଛନ୍ତି । ହେଇ ଦେଖୁନାହାଁନ୍ତି (ପାଞ୍ଜି ଦେଖେଇ) ମୋ ପାଞ୍ଜି ଏକବାରେ ଠିକ୍ ଅଛି ।

ଧର୍ମ : ତା'ମାନେ ଝିଅଟାକୁ ପୁଅ ଭାବି ମୃତ୍ୟୁଦଣ୍ଡ ନଦେଇ ଛାଡି ଚାଲି ଆସିଛନ୍ତି । ହଇରେ ତୁମ ଦିଟା ଏଠି କେତେ ବର୍ଷ ସର୍ଭିସ କଲଣି ।

ଦଣ୍ଡପାଣି : ସୃଷ୍ଟି ଆ-ଆ-ଆ- ଆରମ୍ଭରୁ ପ୍ରଭୁ ।

ଧର୍ମ : ସୃଷ୍ଟି ଆରମ୍ଭରୁ ତ - ଏ ପର୍ଯ୍ୟନ୍ତ ପୁରୁଷ କିଏ ସ୍ତ୍ରୀ କିଏ ଚିହ୍ନିବାଟା ଶିଖି ପାରିଲନି । ମୁହଁକୁ ପୋତି ଠିଆହୋଇ ରହିଲ କାହିଁକି ? ଶୀଘ୍ର ଯାଇ ସେ ଝିଅଟାକୁ ମୃତ୍ୟୁଦଣ୍ଡ ଦେଇ ନେଇଆସ, ଯା...... ।

**(ଦୂତ ଦୁଇଜଣ ନତମସ୍ତକ କରି ସମ୍ମାନ ଜଣାଇଲେ ଓ ଚାଲିଗଲେ । ଗୋଟିଏ ରକେଟ୍ ଯିବାର ଶବ୍ଦ ନିକଟତର ହୋଇ ଦୂରେଇଯାଏ । ଧର୍ମ ରକେଟ୍ ଯିବା ବାଟକୁ ଚାହିଁ ରହନ୍ତି ।)**

ଧର୍ମ : ହେଇଟି ଚିତୁ ପୁଣି ଗୋଟେ ରାକେଟ୍ ପାସ୍ କଲାଣି ।

ଚିତୁ : ପୁଣି ଭୁଲକଲେ ପ୍ରଭୁ । ରାକେଟ୍ ନୁହେଁ ରକେଟ୍ ।

ଧର୍ମ : ରକେଟ୍ ।

ଚିତୁ : R-O-CK-ET ରକେଟ୍ ।



Digitized by PPRACHIN, SOA

ଧର୍ମ : R-O-CK-ET ରକେଟ୍ । ଦେଖୁଛି ଇଂରାଜୀ ଭାଷାଟା ଗୋଟେ ଭଲ ଭାଷା । ଅକ୍ଷରକୁ ଅକ୍ଷର ଯୋଡିଦେଲେ ଆକାର ଓକାର ସବୁ ହୋଇଗଲା । ଆମ ସଂସ୍କୃତ ଭଳି ଝାମେଲା ନାହିଁ ।

ଚିତ୍ରୁ : ହେଲେ କ'ଣ ହେଲା - ଆମ ସଂସ୍କୃତ ଭଳି ସେ ଭାଷାରେ କ'ଣ ସବୁକଥା ଲେଖିହବ ନା ଉଚ୍ଚାରଣ କରିହବ ।

ଧର୍ମ : ମାନେ ।

ଚିତ୍ରୁ : ଆଜ୍ଞା ଦେଖନ୍ତୁ ଳ ଆଉ ଣ ଇଂରାଜୀ ଭାଷାରେ ନାହିଁ । ଆପଣ ଉତ୍କଳକୁ କହିବେ ଉଟକଲ୍ । ପଣସକୁ କହିବେ ପନସ । ଯାହା ଆମେ ଉଚ୍ଚାରଣ କରିବା ତାକୁ ସେଇ ଢଙ୍ଗରେ ଲେଖିବା ଇଂଗ୍ରାଜୀ ଭାଷାରେ ଅସମ୍ଭବ ।

ଧର୍ମ : ମାନେ ?

ଚିତ୍ରୁ : ଗୋଟେ ଉଦାହରଣ ଦେଇ କହୁଛି ଶୁଣନ୍ତୁ । 'କମଳ' ଏଇ ଶବ୍ଦଟାକୁ ଆପଣ ଇଂଗ୍ରାଜୀରେ ଲେଖିବେ Kamal କିନ୍ତୁ ଯାକୁ କିଏ ପଢିବ କାମଲ, କିଏ ପଢିବ କମାଲ, ଆଉ କିଏ ପଢିବ କାମାଲ ।

ଧର୍ମ : ଦେଖୁଛି ତୁ ଇଂରାଜୀ ଉପରେ ଗବେଷଣା ବି କଲୁଣି । ତେବେ ମର୍ତ୍ତ୍ୟବାଲା ଇଂରାଜୀ କୁ କାହିଁକି ଘୋରି ହେଉଛନ୍ତି । ଆମର ଦେବ ଭାଷା ସଂସ୍କୃତ ଗଲା କୁଆଡେ ।

ଚିତ୍ରୁ : ସେଇ ରାଜନୀତି ବାଲା ଆଜ୍ଞା । ଭାରତ ବର୍ଷ ହେଉଛି ସଂସ୍କୃତର ଦେଶ - କିନ୍ତୁ ଏଇମାନଙ୍କର ଚକ୍ରାନ୍ତ ଯୋଗୁ ସଂସ୍କୃତର ମହତ୍ୱ କେହି ବୁଝିପାରୁ ନାହାଁନ୍ତି । ଏଇ ରାଜନୀତି ବାଲା ସବୁ ବିଭ୍ରାଟର ମୂଳରେ - ଆପଣ ମର୍ତ୍ତ୍ୟକୁ ଗଲେ ଦେଖିବେନି ।

ଧର୍ମ : ତୋ ପାଖରୁ ମର୍ତ୍ତ୍ୟକଥା ଯେତିକି ଶୁଣୁଛି ଘେରେ ବୁଲିଆସିବାକୁ ମନ ବ୍ୟଗ୍ର ହୋଇଉଠୁଛି । ସତ୍ୟବାନ ଜୀବନଟାକୁ ଯଉଦିନ ସାବିତ୍ରୀ ମୋ ପାଖରେ ଧପେଇ କରି ନେଇଗଲା ସେଇଦିନଠୁ ଡରରେ ମର୍ତ୍ତ୍ୟକୁ ଯାଇନି । ଦିନେ ଦିଦିନ ଘୁରି ନଆସିଲେ ମନ ଶାନ୍ତି ହବନି ।



Digitized by PPRACHIN, SOA

ଚିତୁ : ଦିନେ ଦିଦିନ କ'ଣ ଆଜ୍ଞା, ସେଠି ଯେଉଁସବୁ ଷ୍ଟାର ହୋଟେଲମାନ ହୋଇଛି ତା ଆଗରେ ଆମର ଅମରାପୁରୀ କିଛି ନୁହେଁ । ଦିନେ ରହିଗଲେ ଆଉ ଫେରିବାକୁ ଇଚ୍ଛା କରିବେନି ।

ଧର୍ମ : ସତେନା କ'ଣ ? କ'ଣ କ'ଣ ସେଠି ମିଳେ କହିଲୁ ?

ଚିତୁ : ସବୁ ଆଜ୍ଞା - ସବୁ । ଖାନା-ପିନା-ବାଜଣା-ନାଚ-ତାମସା ମଝିରେ ମଝିରେ ଯେଉଁ କ୍ୟାବେରେ ହୁଏ ଛାଡନ୍ତୁ ।

ଧର୍ମ : କ୍ୟାବେରେ - ସେଇଟା ପୁଣି କ'ଣ ? ଗୋଟେ ବଢିଆ ଖାନା ହେଇଥିବ ।

ଚିତୁ : (ହିସ ଉଠି) ଖାନା ନୁହେଁ ଆଜ୍ଞା Dance - ମାନେ ନୃତ୍ୟ -' ଜାଜ୍ ସଂଗୀତର ତାଳେ ତାଳେ କ୍ୟାବେରେ ଷ୍ଟାରମାନେ ଯେତେବେଳେ ନାଚିବେନା ଆଜ୍ଞା - ଆମର ଉର୍ବଶୀ, ମେନକା କେହି ତା ପାସଙ୍ଗରେ ପଡିବେନି ।

ଧର୍ମ : ଓଃ ତାହେଲେ Pure ଶାସ୍ତ୍ରୀୟ ନୃତ୍ୟ ହୋଇଥିବ । ନହେଲେ ଏତେ ମଜ୍ଜା ଆସିବ କୁଆଡୁ ।

ଚିତୁ : ଶାସ୍ତ୍ରୀୟ ନୃତ୍ୟ ନୁହେଁ ଆଜ୍ଞା Sexy Dance । ନର୍ତ୍ତକୀ ନାଚୁଥିବ ନାଚୁ ନାଚୁ stripless ହେଉଥିବ ।

ଧର୍ମ : ତୁ ତ ଜାଣିଛୁ ମୁଁ ନୂଆ English ଶିଖୁଛି । ଆରେ ସେ Stripless ମାନେଟା ଟିକିଏ ବୁଝେଇ ଦେ ।

ଚିତୁ : Stripless ହେଲା - ଆଜ୍ଞା - ନର୍ତ୍ତକୀ ପ୍ରଥମେ ଯେତେବେଳେ ନାଚ ଆରମ୍ଭ କରିବ ଗୋଡ ଠାରୁ ମୁଣ୍ଡ ପର୍ଯ୍ୟନ୍ତ ରଙ୍ଗ ବେରଙ୍ଗର ପୋଷାକ ପିନ୍ଧିଥିବ । ଜାଜ୍ ସଂଗୀତର ତାଳେ ତାଳେ ନାଚୁ ନାଚୁ ପୋଷାକରୁ ଖଣ୍ଡେ ଖଣ୍ଡେ ଦେହରୁ କାଢି ଦର୍ଶକମାନଙ୍କ ଆଡକୁ ଫୋପାଡି ଦେଉଥିବ ।

ଧର୍ମ : ତା'ପରେ ।

ଚିତୁ ନାଚି ଚାଲିଥିବ - ମଝିରେ ମଝିରେ ଖଣ୍ଡେ ଖଣ୍ଡେ ଫୋପାଡି



Digitized by PPRACHIN, SOA

ଚାଲିଥିବ । ଏମିତି ନାଚୁ ନାଚୁ - ଶେଷ ବେଳକୁ ଦେହରେ ପ୍ରାୟ କିଛି ନଥିବ ।

ଧର୍ମ : ତା'ମାନେ ସଂପୂର୍ଣ୍ଣ ଉଲଗ୍ନ ।

ଚିତ୍ରୁ : ଉଲଗ୍ନ ନୁହେଁ ଆଉ କ'ଣ । କେବଳ ବକ୍ଷରେ କାଂଚୁଲି ତଳେ ପ୍ୟାଣ୍ଟି ମାନେ ଲେଙ୍ଗୁଟି ଛଡା କିଛି ନଥିବ ।

ଧର୍ମ : ବାଃ ବଡ ମଜା ଦେଖୁଛି । ଆମର ଏଠି ରମ୍ଭା, ଉର୍ବଶୀ ଗୁଡାକୁ କିଛି ମାଲୁମ୍ ନାହିଁ ।

ଚିତ୍ରୁ : ସେଠି ମର୍ତ୍ତ୍ୟରେ ସେମାନେ ଖାଲି ନାଚନ୍ତି ନି ଆଜ୍ଞା - ମଝିରେ ମଝିରେ ଆସି ଦର୍ଶକମାନଙ୍କ କୋଳରେ ବି ବସି ପଡନ୍ତି ।

ଧର୍ମ : ମାରି ଦେଲାରେ ...... । ହେଲେ ଗୋଟେ କଥା ବୁଝି ପାରୁନି ଚିତ୍ରୁ - ହୋଟେଲ୍ ଭିତରେ ଏତେ ଲୋକଙ୍କ ଭିତରେ ସେମାନେ ଏମିତି ନାଚନ୍ତି, ତାକୁ ଦର୍ଶକ ଧର୍ଯ୍ୟଧରି ଦେଖନ୍ତି ତ ?

ଚିତ୍ରୁ : ହଁ ଆଜ୍ଞା, ବାପା-ପୁଅ, ମାଆ-ଝିଅ, ଭାଇ-ଭଉଣୀ ଗୋଟାଯାକ ପରିବାର ଏକାଠି ବସି ଖାଉଥାନ୍ତି, ପିଉଥାନ୍ତି ନାଚ ଦେଖୁଥାନ୍ତି । ଆଉ ନାଚ ଶେଷରେ ସୁନାପିଲା ଭଳି ସମସ୍ତେ ଘରକୁ ଫେରିଯାଆନ୍ତି ।

ଧର୍ମ : ତା'ମାନେ ଲୋକମାନେ ଯାହାହେଉ ଧର୍ମଶାଳା ଖୋଲିବା ବନ୍ଦ କରି ଏସବୁ ଉଲଗ୍ନ କର୍ମଶାଳା ଖୋଲି ଚାଲିଛନ୍ତି ।

ଚିତ୍ରୁ : ହଁ ଆଜ୍ଞା, ହୋଟେଲକୁ ଶିଳ୍ପ ବୋଲି ଘୋଷଣା କରି ଏଇ ରାଜନୀତି ବାଲାମାନେ ଜଙ୍ଗଲ, ସମୁଦ୍ରକୂଳ, ଟାଉନ ବଜାର ଏମିତିକି ତୀର୍ଥସ୍ଥାନମାନଙ୍କରେ ଶହ ଶହ ସଂଖ୍ୟାରେ ଏସବୁ ଖୋଲେଇ ଚାଲିଛନ୍ତି । ସେଠି ମଦ, ନାରୀ, ବାରି, ସବୁକିଛି ପଇସା ଫୋପାଡିଲେ ହାତ ପାହନ୍ତାରେ ମିଳିଯିବ । ଗଲେ ଦେଖିବେନି ।

ଧର୍ମ : ଦେଖିବି ଦେଖିବି ବୋଲି ମନ ଆଉ ଥୟ ଧରୁନି । ବର୍ତ୍ତମାନ ଉଠିଲୁ ଘେରେ ବୁଲି ଆସିବା, ଉଠ ।



Digitized by PPRACHIN, SOA

ଚିତ୍ରୁ : ଉଠିବି ଯେ ପ୍ରଭୁ, ହେଲେ ବୁଦ୍ଧିମତୀ କଥାଟା ନ ବୁଝିଲେ କ'ଣ ଅବସ୍ଥା ହେବ ବୁଝୁଛନ୍ତି ।

ଧର୍ମ : ଆରେ - ଆରେ ଠିକ୍ କଥା - ବିଧିର ବିଧାନ ଯେମିତି ଡେରି ହେଇଗଲାଣି, କଥାଟା high command ଙ୍କ କାନକୁ ଚାଲିଗଲେ ସବୁ ବିଭ୍ରାଟ ହେଇଯିବ । କୁଆଡେ ଗଲେ ସେ ଦି'ଟା, ସାମାନ୍ୟ ଝିଅଟେ ଯା'ଙ୍କୁ ଭୁଲେଇ ଚାଲିଛି ।

ଚିତ୍ରୁ : ଏଇ ଦୂତ ଦିଇଟା ମାନୁ ନାହାଁନ୍ତି ସିନା ଆଜ୍ଞା, ହେଲେ ଗଞ୍ଜେଇ ନହେଲେ ମର୍ତ୍ତ୍ୟରେ ଅନ୍ୟ କ'ଣ ପାନ କରିଥିବେ ।

ଧର୍ମ ସେ ପାଜିଗୁଡାକ ସେ ହୋଟେଲ୍‌ରେ ଫୁର୍ତ୍ତିମାରି ସେ ନାଚ ଦେଖୁଥିବେ - କ'ଣ ତା ନାଁଟା ତା - ଖ୍ୟାବେରେ ।

ଚିତ୍ରୁ : (ହସ) ଖ୍ୟାବେରେ ନୁହେଁ ଆଜ୍ଞା କ୍ୟାବେରେ ।

ଧର୍ମ : ରହ ପାଟିରେ ପଶୁନି, ଟିକିଏ ଘୋଷି ପକାଏ । ନହେଲେ ମର୍ତ୍ତ୍ୟରେ ଭୁଲ ଉଚ୍ଚାରଣ କଲେ ଭାଣ୍ଡିଆ ହେଇଯିବି । (ଘୋଷିବା ଭଳି) କ୍ୟା-ବେ-ରେ କ୍ୟାବେରେ । କ୍ୟା-ବେ-ରେ କ୍ୟାବେରେ ।

**(ଭିତରୁ କୋଳାହଳ ଶୁଣାଯାଏ । ବନ୍ଧୁଆ ଜେନା ନର୍କବାସୀଙ୍କୁ ଏକାଠି କରି ଆନ୍ଦୋଳନ ଆରମ୍ଭ କରିଛି । ତା' ସହିତ ସ୍ୱର ମିଳେଇ ଅନ୍ୟମାନେ ପାଟି କରନ୍ତି ।)**

ବନ୍ଧୁଆ : (ଭିତରୁ) ଆମର ଦାବି ।

ଅନ୍ୟମାନେ: (ଭିତରୁ) ମାନିନିଅ ମାନିନିଅ ।

ବନ୍ଧୁଆ : (ଭିତରୁ) ମନ ମୁଖୀ ଶାସନ ।

ଅନ୍ୟମାନେ: (ଭିତରୁ) ଚଳିବ ନାହିଁ ଚଳିବ ନାହିଁ ।

ବନ୍ଧୁଆ : (ଭିତରୁ) ନର୍କ ବାସୀ ।

ଅନ୍ୟମାନେ: (ଭିତରୁ) ଏକାଠି ହୁଅ - ଏକାଠି ହୁଏ ।

**(ଏସବୁ କୋଳାହଳ ଶୁଣି ଧର୍ମରାଜ ବିଚଳିତ ହୋଇଉଠନ୍ତି । ଚିତ୍ରଗୁପ୍ତ ଓ ଧର୍ମରାଜ ସେଇ ଆଡକୁ ଚାହିଁ ରହନ୍ତି ।)**



Digitized by PPRACHIN, SOA

ଧର୍ମ : ଏସବୁ କୋଳାହଳ କୋଉଠୁ ଶୁଣାଯାଉଛି ।

ଚିତ୍ରୁ : ମୁଁ ତ ସେଇ କଥା ଭାବୁଛି । ଦେଖି ଆସୁଛି ପ୍ରଭୁ ।

ମୂଷିଦନ୍ତ : (ପ୍ରବେଶ) ମୋତେ ବଞ୍ଚାନ୍ତୁ ପ୍ରଭୁ ମୁଁ ଆଉ ପାରିବିନି । ସେମାନେ ସବୁ ଏକାଠି ହେଇ ଗଲେଣି । କୋଉ ମୁହୂର୍ତ୍ତରେ ଦରଜା ଭାଙ୍ଗି ମାଡି ଆସିବେ ଠିକ୍ ନାହିଁ । ମୋତେ ବଞ୍ଚାନ୍ତୁ । (କାନ୍ଦିକି)

ଧର୍ମ : ଆରେ କନ୍ଦାକନ୍ଦି ବନ୍ଦ କରି କହ କ'ଣ ହେଇଛି ?

ମୂଷିଦନ୍ତ : ନର୍କବାସୀମାନେ ଏକାଠି ହୋଇ ଗଣ୍ଡଗୋଳ ଆରମ୍ଭ କରିଦେଇଛନ୍ତି ପ୍ରଭୁ । କ'ଣ ଗୋଟେ ଉନିଅନ (union କୁ ଭୁଲ ଉଚ୍ଚାରଣ କରି କହିଛି)କରି ପାଟି କରୁଛନ୍ତି ।

ଧର୍ମ : କ'ଣ କରିଛନ୍ତି ?

ମୂଷିଦନ୍ତ : ଉନିଅନ ବୋଲି କହୁଛନ୍ତି ପ୍ରଭୁ ।

ଚିତ୍ରୁ : ଉନିଅନ ନୁହେଁ ଇଉନିୟନ୍ (union) ପ୍ରଭୁ । ଅର୍ଥାତ ମେଳି । ଦଳବାନ୍ଧି strike କରୁଛନ୍ତି । ମାନେ ହରତାଳ ।

ଧର୍ମ : କେମିତି ? ଆମର ଏତେ ରକ୍ଷୀ ଥାଉ ଥାଉ ଦଳ ବାନ୍ଧିଲେ କେମିତି । ତମେ କ'ଣ କରୁଥିଲ ମୂଷିଦନ୍ତ ।

ମୂଷିଦନ୍ତ : ପ୍ରଭୁ ସବୁ ଠିକ୍ ଠାକ୍ ଚାଲିଥିଲା । ହେଲେ ଆଜି ଯଉ ବନ୍ଧୁଆ ଢେନାକୁ ପଠେଇଲେ ସେ ହଉଛି ସବୁ ଗଣ୍ଡଗୋଳ ମୂଳରେ । ଯାଉ ଯାଉ କ'ଣ ସବୁ ମନ୍ତ୍ର ଫୁଙ୍କିଲା କେଜାଣି ଆମ ରକ୍ଷୀଙ୍କ କଥା ନମାନି ସମସ୍ତେ ବସି ସଭା କଲେଣି । ସେମାନଙ୍କ ପାଇଁ କିଛି ବ୍ୟବସ୍ଥା ନକଲେ କହୁଛନ୍ତି ଆନ୍ଦୋଳନ କରିବେ ।

ଚିତ୍ରୁ : କିନ୍ତୁ କାହିଁକି । ସେମାନଙ୍କର ଦାବି କ'ଣ ?

ମୂଷିଦନ୍ତ : କେତେକଥା ଆଜ୍ଞା, ଦୁନିଆ କଥା ସେ ବନ୍ଧୁଆ ଢେନା ଦାବିକରି ବସୁଛି । ତାକୁ ସେ ନର୍କରୁ ବିଦା ନକଲେ ମୁଁ ନର୍କ କାମ ଆଉ ଚଳେଇ ପାରିବିନି ପ୍ରଭୁ । ମୋତେ ବଞ୍ଚାନ୍ତୁ ।

ଧର୍ମ : ଚୋପ୍ । କ'ଣ କ'ଣ ସବୁ ଦାବି କରୁଛନ୍ତି ବୋଲି ପଚରା ଯାଉଛି ମୋତେ ବଞ୍ଚାନ୍ତୁ ବଞ୍ଚାନ୍ତୁ ବୋଲି ଲଗେଇଛି ।



Digitized by PPRACHIN, SOA

ମୂଷିଦନ୍ତ : ଶୋଇବା ପାଇଁ ଗଦି । ପବନ ହେବାକୁ ପଙ୍ଖା, ଗାଧୋଇବା ପାଇଁ ଗରମ ପାଣି ପୁଣି ଥଣ୍ଡା ପାଣି, ଖବର କାଗଜ, ଟେଲିଫୋନ୍, ରେଡିଓ ଓ ଟିଭି କେତେ କଥା ସବୁ ମୋ ପାଟିରେ ପୂଶୁନି ।

ଧର୍ମ : ଚିତ୍ରୁ !

ଚିତ୍ରୁ : ପ୍ରଭୁ !

ଧର୍ମ : କ'ଣ କରିବା ବୋଲି ଭାବୁଛୁ । କ'ଣ ଦଣ୍ଡଦେଲେ ସେ ବନ୍ଧୁଆ ଜେନା ବାଟକୁ ଆସିବ ।

ଚିତ୍ରୁ : ଜୀବନର ସବୁଠାରୁ ବଡଦଣ୍ଡ ମୃତ୍ୟୁ । ସେ ଦଣ୍ଡ ତାକୁ ଦିଆଯାଇ ଏଠିକି ଅଣାଯାଇଛି । ଏଠି କର୍ମଫଳ ଅନୁସାରେ କିଏ ନର୍କରେ ଦଣ୍ଡ ପାଉଛି ତ କିଏ ବୈକୁଣ୍ଠରେ ବସୁଛି ।

ଧର୍ମ : ଆଉ ମୃତ୍ୟୁ ପରେ ଏଠି ଆସି ଯେଉଁ ଗଣ୍ଡଗୋଳ କରୁଛି ସେଥିପାଇଁ ଦଣ୍ଡ ଦେଇ ହବନି ।

ଚିତ୍ରୁ ନା ପ୍ରଭୁ, ଜୀବନର ପାପ ପୁଣ୍ୟ ଦେଖି ଆପଣ ଦଣ୍ଡ ଦେଇପାରିବେ । ମୃତ୍ୟୁ ପରେ କୌଣସି କାମ ପାଇଁ ଦଣ୍ଡ ଦେବାର ଅଧିକାର ଆପଣଙ୍କୁ ଦିଆଯାଇନି । ଏଗୁଡାକ state power ଭିତରେ ଆସୁନି ।

ଧର୍ମ : ତେବେ ? ସେମାନେ ନର୍କର କର୍ମଚାରୀମାନଙ୍କୁ କାମ କରେଇ ଦେବେନି - ଆମେ ଏଠି ବସି ତାମସା ଦେଖୁଥିବା ।

ଚିତ୍ରୁ : ସେଇ କଥାତ ପ୍ରଭୁ । ଏଣେ ଆମକୁ କିଛି power ଦିଆଯାଇନି, ତେଣେ high command ଙ୍କ ପାଖକୁ ଖବରଟା ଚାଲିଗଲେ ଆପଣଙ୍କୁ ଅପଦାର୍ଥ କହି ଅପବାଦ ଦେବେ ।

ଧର୍ମ : ଖାଲି ଅପବାଦ ଦେବେନି ଚିତ୍ରୁ - ଦରକାର ହେଲେ ମୋତେ ଏଠୁ ହଟେଇ ଆଉ ଜଣକୁ ବସେଇ ଦେବେ । ଯାହାହେଲେବି ଏ ସିଂହାସନକୁ ରକ୍ଷା କରିବାକୁ ଗୋଟେ ଉପାୟ ଚିନ୍ତା କର । ନହେଲେ ସମସ୍ତେ ଏଠିକି ମାଡି ଆସିଲେ ଅବସ୍ଥା ଅସମ୍ଭାଳ ହେବ ।



Digitized by PPRACHIN, SOA

ଚିଣ୍ଟୁ : ଗୋଟେ କାମ କରାଯାଉ, ବନ୍ଧୁଆ ଜେନା ସେମାନଙ୍କୁ ଏକାଠି କରି ଏ ସବୁ ଆରମ୍ଭ କରିଛି । ତାକୁ ଏଠିକି ଆଣି ତା କଥା ବୁଝାଯାଉ । ତାକୁ କୌଣସି ଉପାୟରେ ପଟେଇ ଦେଲେ ସବୁ ଆନ୍ଦୋଳନ ଫସର ଫାଟିଯିବ ।

ଧର୍ମ : ଆରେ ସେ ଏତେ ଲୋକଙ୍କ ନେତା ହେଇଛି । ତାକୁ ସମସ୍ତେ ବିଶ୍ୱାସ କରୁଛନ୍ତି, ଆମ କଥାରେ ପଟିଯିବ ମୋର କାହିଁ ବିଶ୍ୱାସ ହେଉନି ।

ଚିଣ୍ଟୁ : ମର୍ତ୍ତ୍ୟର ଯେତେ ରାଜନୈତିକ ନେତା ଜନତାଙ୍କୁ ମତେଇ ଦେଇ ଉପରୁ ସୁବିଧା ମାରିବାରେ ଓସ୍ତାଦ । ସେଇଥିପାଇଁ ଭାବୁଛି ଆମ ଉଦ୍ଦେଶ୍ୟ ହାସଲ ହେଇଯିବ ।

ଧର୍ମ : ହଇଓ ମୂଷିଦନ୍ତ - ଯାଅ ସେ ବନ୍ଧୁଆ ଜେନାଙ୍କୁ ଧରିଆଣ ।

ଚିଣ୍ଟୁ : ଦେଖ, ତାକୁ ଧମକ ଚମକ ଦେବନି । କୌଣସି ଉପାୟରେ ସଲାସୁତରା କରି ଡାକି ଆଣିବ ।

(ମୂଷିଦନ୍ତ ଚାଲିଗଲା)

ଧର୍ମ : ଆଜି କାହା ମୁହଁ ଦେଖି ଉଠିଥିଲି କେଜାଣି ଦରବାର କାମରେ ବହୁତ ବିଘ୍ନ ହେଉଛି । ସେ ଦିଟା ଯାଇ ମର୍ତ୍ତ୍ୟରେ ଗୋଟେ ଝିଅକୁ ଖୋଜି ପାଉନାହାଁନ୍ତି ଯାବେ ଗୋଟେ ନାଟ ଆରମ୍ଭ ହେଇଗଲାଣି ।

**(ପୁଣି ସେଇ କୋଳାହଳ ଶୁଣାଯାଏ । ମିଳିତ କଣ୍ଠରେ ଶୁଣାଯାଏ - ବନ୍ଧୁଆ ଜେନା - ଜିନ୍ଦାବାଦ, ଜିନ୍ଦାବାଦ । ବନ୍ଧୁଆ ଜେନା - ଅମର ରହେ, ଅମର ରହେ । ପରେ ପରେ ପ୍ରବେଶ କରେ ବନ୍ଧୁଆ ।)**

ବନ୍ଧୁଆ : ମୁଁ ପ୍ରଥମେ ଜାଣିବାକୁ ଚାହୁଁଛି ମୋତେ ଏଠିକି ବନ୍ଧୁଆ ହିସାବରେ ନା ଦଳିତ ନର୍କବାସୀଙ୍କ ନେତା ହିସାବରେ ଡକାଯାଇଛି ।

ଚିଣ୍ଟୁ : ଉଭୟ ହିସାବରେ - ଉଭୟ ହିସାବରେ ।

ବନ୍ଧୁଆ : No - ଆପଣ ମୋତେ ସେମିତି ଡାକି ପାରିବେନି । ଘରୋଇ



Digitized by PPRACHIN, SOA

କାମଥିଲେ ବନ୍ଧୁଆ ଢେନା ହିସାବରେ - ନଚେତ୍ ସରକାରୀ କାମ ଥିଲେ ନେତା ହିସାବରେ ଡାକିବେ ।

ଧର୍ମ : ହେଲା - ତୁମକୁ ନେତା ହିସାବରେ ଡକା ହେଉଛି ।

ଚିତୁ : ଆପଣ ରୁହନ୍ତୁ ପ୍ରଭୁ ମୁଁ ବୁଝେଇ ଦେଉଛି ।

ବନ୍ଧୁଆ : (ଚିତ୍ରଗୁପ୍ତଙ୍କୁ ବନ୍ଦ କରି) ଆପଣ ରୁହନ୍ତୁ, ନେତା ହିସାବରେ ଡାକିଛନ୍ତି ତ ତେବେ ଶୁଣନ୍ତୁ ଆପଣଙ୍କର ନର୍କ ଆମ ରହିବାର ଯୋଗ୍ୟ ନୁହେଁ । ମାନେ ସେଇଟା କୌଣସି ମଣିଷ ବାସଯୋଗ୍ୟ ନୁହେଁ ।

ଚିତୁ : (କଅଁଳେଇ କଅଁଳେଇ ଖୋସାମତ କରିବା ଢଙ୍ଗରେ) କାହିଁକି ବାବା ବନ୍ଧୁଆ, ନର୍କ ତ କେଉଁ ଅନନ୍ତ କାଳରୁ ସେମିତି ରହିଆସିଛି ।

ବନ୍ଧୁଆ : ରହିଥାଉ - ସେଥିରେ କ'ଣ ଗଲା । ଆମେ ପାର୍ଟିଲୋକ । ସବୁଠି ଆମ ପାଇଁ ସତନ୍ତ୍ର ବ୍ୟବସ୍ଥା ରହିବା କଥା ।

ଚିତୁ : ଓହୋ ଏତେ ପାଟି କାହିଁକି । ଧିରେ କହିଲେ ହବନି ।

ବନ୍ଧୁଆ : (ଯୋର କଣ୍ଠରେ) ତୁମ ନର୍କ କ'ଣ, ଆମ ଦେଶରେ ସରକାରୀ ହସପିଟାଲଗୁଡାକ ନର୍କ ଠାରୁ ଅଧିକ । ତାକୁ ଆମେ ଜନସାଧାରଣଙ୍କ ପାଇଁ ଛାଡି ଦେଇଛୁ । ତୁମ ଯମଙ୍କଠୁ ଶହେ ଗୁଣରେ ମାରାତ୍ମକ ଆମ ଡାକ୍ତରଗୁଡାକ ଜନତାଙ୍କୁ ଶୋଷଣ କରୁଛନ୍ତି । କିନ୍ତୁ ଯାହା ହେଲେବି ସେ ହସପିଟାଲ୍ ଭିତରେ ପାର୍ଟିଲୋକ, ନେତା, ଅଫିସର, ବଡବଡିଆମାନଙ୍କ ପାଇଁ ଆମେ ସତନ୍ତ୍ର କ୍ୟାବିନ୍ ବ୍ୟାବସ୍ଥା କରିଛୁ । ସର୍ଗରେ ଏଠି ଏତିକି ସୁବିଧା କରିହବନି - ନେତା ହୋଇ ଆମେ ଚୁପ୍ ହେଇ ବସି ରହିବୁ ।

ଚିତୁ : ତୁମେ ଯେତେ କଥା demand କରୁଛ ଆମର ଏଠି ବୈକୁଣ୍ଠ ଛଡା ଅନ୍ୟ କଉଠି ନାହିଁ ବାବା ।

ବନ୍ଧୁଆ : ସେଇକଥାତ । ଆମକୁ ବୈକୁଣ୍ଠକୁ ନିଆନଯାଇ ସେଇ ନର୍କରେ କାହିଁକି ରଖାଯାଇଛି ?



Digitized by PPRACHIN, SOA

ଚିତ୍ରୁ : ବୈକୁଣ୍ଠ ବ୍ୟବସ୍ଥା ସଂପୂର୍ଣ୍ଣ ଅଲଗା । ଆମ adminstration ବାହାରେ । ନିଜେ high command ବିଷ୍ଣୁ ଦାୟିତ୍ୱରେ ଅଛନ୍ତି ।

ବନ୍ଧୁଆ : ଯିଏ ଦାୟିତ୍ୱରେ ଥାଆନ୍ତୁ ସେଥିରେ ଆମର କ'ଣ ଅଛି । ଆମେ ବୈକୁଣ୍ଠରେ ସ୍ଥାନ ପାଇବା ଉଚିତ୍ । ସେଠିକି ଆମକୁ ପଠେଇ ଦିଅ ।

ଧର୍ମ : ସେଠି ବର୍ତ୍ତମାନ ଜାଗା ନାହିଁ ।

ଚିତ୍ରୁ ହଁ ବାପା - ସେଠି ଆଦୌ Vacancy ନାହିଁ ।

ବନ୍ଧୁଆ ଭେକାନ୍ସି ନାହିଁ ମାନେ ? ଆମ ପାଇଁ ସତେଇଶ ପର୍ସେଣ୍ଟ ରିଜର୍ଭ ରହିବା କଥା - ସେଗୁଡାକ କ'ଣ ହେଲା ।

ଧର୍ମ : କାହିଁକି ? ତୁମେ କ'ଣ ପୂଣ୍ୟ ଅର୍ଜନ କରି ଆସିଛକି ?

ବନ୍ଧୁଆ : ସମ୍ବିଧାନ ଅନୁସାରେ ସତେଇଶ ଭାଗ ସ୍ଥାନ ଆମର ରିଜର୍ଭ । ଆମ ସ୍ଥାନରେ କାହାରି ଅଧିକାର ନାହିଁ । ସେଗୁଡାକ ଖାଲି ପଡିଲେବି କେହି ଭର୍ତ୍ତି ହେଇପାରିବେନି । ବରଂ ଅନ୍ୟମାନଙ୍କ ସ୍ଥାନରେ ଆମେ ପଶିଗଲେ କୌଣସି ବାରଣ ନାହିଁ ।

ଚିତ୍ରୁ : ନା ଆମେ ସେ ବ୍ୟବସ୍ଥା କରିପାରିବୁନି ବନ୍ଧୁଆ । ଏଗୁଡାକ ଆମ ପୋଟ୍‌ଫୋଲିଓ ବାହାରେ ।

ବନ୍ଧୁଆ : ଯଦି କରି ପାରିବେନି ମୋତେ ଏଠିକି ଡାକୁଥିଲେ କାହିଁକି ? ମୋର ବିପ୍ଳବୀ ବନ୍ଧୁମାନେ ମୋତେ ଅପେକ୍ଷା କରି ବସିଛନ୍ତି । ମୋତେ ଯାଇ ଆନ୍ଦୋଳନ ଆରମ୍ଭ କରିବାକୁ ହେବ । ମାନବ ଅଧିକାର କମିଶନ କ'ଣ ଉଠିଗଲାଣି, ଏଥର ସର୍ଗ ବନ୍ଦ ଡାକରା ଦେବାକୁ ହେବ । ଆମର ଦାବି ...... ସର୍ଗ ବନ୍ଦ ଆମର ଦାବି ସର୍ଗ ବନ୍ଦ ।

ଚିତ୍ରୁ : ହେ ବାପା ବନ୍ଧୁଆ - ଶୁଣ ବାପା ଶୁଣ ।

ବନ୍ଧୁଆ : (ମୁହଁ ଛିଞ୍ଚାଡି) କ'ଣ ?

ଚିତ୍ରୁ : ତୁମେ ଏତେ ଲୋକଙ୍କୁ ମେଳି କରୁଛ । ସେଇଟା ବଡ ଅସୁବିଧା ହେଉଛି ।



Digitized by PPRACHIN, SOA

ବନ୍ଧୁଆ : ମାନେ ?

ଚିଟୁ : ସେମାନଙ୍କ କଥା ଛାଡିଦିଅ । ତୁମେ ଏକା ହେଲେ କୁହାବୋଲା କରି କିଛି ଗୋଟେ ବ୍ୟବସ୍ଥା କରିବା ।

ବନ୍ଧୁଆ : (ବଡ ପାଟିରେ) କ'ଣ ମୋତେ ପ୍ରଲୋଭନ ଦେଖା ହେଉଛି - ହଜାର ହଜାର ଲୋକ ମୋତେ ନେତା କରିଛନ୍ତି । ମୁଁ ତାଙ୍କୁ ବିଶ୍ୱାସଘାତକତା କରିବି ? କ'ଣ ବୋଲି ଭାବିଛ ମୋତେ ?

ଧର୍ମ : (ବିଗିଡି ଯାଇ) ଏଟାକୁ ଏମିତି ପାରିହବନିରେ । ତା'ର ଅନ୍ୟ ବ୍ୟବସ୍ଥା କରିବାକୁ ପଡିବ ।

ଚିଟୁ : ତୁମ ପାଇଁ ଆମେ କାହିଁକି ଆଉ ଚେଷ୍ଟା କରିବୁ ବାବା । ତୁମେତ କିଛି ଶୁଣିବା ପାଇଁ ପ୍ରସ୍ତୁତ ନୁହେଁ ।

ବନ୍ଧୁଆ : (ଚାରି ଆଡକୁ ଚାହିଁ ଚାପା କଣ୍ଠରେ) ମୋ ପାଇଁ ଖାଲି ବ୍ୟବସ୍ଥା କରିଦେଲେ ହବନି, ନର୍କରେ ମୋ ଜ୍ୱାଇଁ, ମୋ ବଡ ଶଳା ଆଉ ମୋର ଜଣେ ଗୁପ୍ତ ସଂପର୍କୀୟ ସ୍ତ୍ରୀ ଲୋକ ଅଛି । ଅନ୍ୟମାନଙ୍କ କଥା ଗୁଳିମାର କେବଳ ଏଇ ଆପଣାର କେତେ ଜଣ ପାଇଁ ବ୍ୟବସ୍ଥା କରିବାକୁ ପଡିବ ।

ଚିଟୁ : ବୈକୁଣ୍ଠରେ ଜଣଙ୍କୁ ଆଡ୍‌ଜଷ୍ଟ କରିବାକୁ ଏତେ କଷ୍ଟ ତୁମ ଜ୍ୱାଇଁ, ଶଳା କଥା ତ ଚଳିବନି ।

ବନ୍ଧୁଆ : ହେଲା - ମୋତେ ଆଗ ନେଇ ସେଇଠି ବୈକୁଣ୍ଠରେ ବସେଇ ଦିଅ । ଥରେ ଗାଦି ମାଡି ବସିଲେ ମୁଁ vacancy ସୃଷ୍ଟି କରିଦେବିନି । ତା' ପରେ ଜଣ ଜଣଙ୍କୁ ଟାଣି ନେବିନି ।

ଚିଟୁ : ନା ନା ତୁମ ପିଲାମାନଙ୍କ ପାଇଁ ବ୍ୟବସ୍ଥା କରି ହବନି ।

ବନ୍ଧୁଆ : କାହିଁକି ? ପ୍ରଥମରୁ ଆମ M.P ମାନଙ୍କ ପାଇଁ ପେନ୍‌ସନ୍ ବ୍ୟବସ୍ଥା ନଥିଲା । ମଝିରେ ଯିଏ ୫ ବର୍ଷ M.P ରହିବ ତା'ର ପେନ୍‌ସନ୍ ବ୍ୟବସ୍ଥା କଲୁ । କିଛିବର୍ଷ ତଳେ ମାତ୍ର ବର୍ଷେ ରହିଲେ ମଧ ମାସିକ ପେନ୍‌ସନ୍ ପାସ୍ କରିଦେଲୁ । ସେଟାକୁ ଆସନ୍ତା



Digitized by PPRACHIN, SOA

ବର୍ଷ ଫ୍ୟାମିଲି ପେନ୍‌ସନ୍ ଆଉ ତା ପରବର୍ଷ ଅଣନାତି ପଣନାତି ପର୍ଯ୍ୟନ୍ତ ପେନ୍‌ସନ୍ କରିଦେବାକୁ ସ୍ଥିର କରିଦେଇଛୁ । ଏଠି ହୋଇପାରିବନି କାହିଁକି ? ଆମ ଦେଶରେ ଏସବୁ ଚାଲିଛି ଏଠି ହେବନି କାହିଁକି ? ଏବେତ ଆମ ସାଂସଦମାନେ ବାର୍ଷିକ ଏକ କୋଟି ଟଙ୍କାର ଫାଇଦା ପାଇବାର ବ୍ୟବସ୍ଥା କରିଦେଇଛନ୍ତି ।

ଧର୍ମ : ତୁମ ଦେଶରେ ଯଦି ଏସବୁ ଚାଲିଥିବ ତେବେ ଦେଶ ରସାତଳକୁ ଗଲାବୋଲି ଜାଣ ।

ବନ୍ଧୁଆ : (ହସି) ବଙ୍ଗ ଓଲଟା, ଆପଣମାନଙ୍କ ଧାରଣା ସବୁ ଭୁଲ୍ । ମୁଁ ବୁଝେଇ ଦଉଛି । ଦେଖନ୍ତୁ ଆମ ଦେଶରେ ବହୁ ପୁରାକାଳରୁ ରାଜାରାଜୁଡା ବଂଶଗତ ଶାସନ ଚାଲୁଥିଲା । କୋଉ ରଘୁବଂଶ ଅମଳରୁ ମୋଗଲମାନଙ୍କ ପର୍ଯ୍ୟନ୍ତ । ଲୋକମାନେ ସେ ବଂଶଗତ ଶାସନରେ ଅଭ୍ୟସ୍ତ । ଏତେ ଅଭ୍ୟସ୍ତ ଯେ ଏବେ ଯେଉଁ ଗଣତନ୍ତ୍ର ଶାସନ ଚାଲିଛି - ଯେତେ ଯାହା କଲେବି ଲୋକଙ୍କ ମନକୁ ପାଉନି । ତେଣୁ ଆମେ ରାଜନୀତି ବାଲା ସ୍ଥିର କରିଛୁ ଯେ ଏଇ ଗଣତନ୍ତ୍ର ଭିତରେ ବଂଶଗତ ଶାସନ ଚଳେଇବୁ । ଆମର ଚେଷ୍ଟା ସଫଳ ହେଲେ ଦେଖିବେ ଆମ ଦେଶ ଦୁଇ ଭାଗରେ ବିଭକ୍ତ ହୋଇ ମହାଆନନ୍ଦରେ ଚଳୁଥିବ ।

ଧର୍ମ : ଦେଶ ଦୁଇଭାଗ ହେବ ପୁଣି ମହାଆନନ୍ଦରେ ଚଳୁଥିବ । କିଛି ବୁଝିହେଲାନି ।

ବନ୍ଧୁଆ : ଦି' ଭାଗରେ ମାନେ - ଗୋଟେ ଭାଗରେ ରାଜନୈତିକ ଶାସକମାନଙ୍କର ବଂଶଧର ଶାସନ କାର୍ଯ୍ୟରେ ଦକ୍ଷ ହୋଇ ଶାସନ କରିଚାଲିବେ - ଅନ୍ୟ ଭାଗରେ ଶାସିତମାନଙ୍କର ବଂଶଧର ଆମମାନଙ୍କର ସେବା କରି ଚାଲିଥିବେ ।

ଧର୍ମ : ଗଣତନ୍ତ୍ର ଭିତରେ ବଂଶଗତ ଶାସନ ଚଳେଇବେ ।

ବନ୍ଧୁଆ : ଚଳେଇବେ ନୁହେଁ ଆମେ ଚଳେଇ ଆସିଲୁଣି । ସେଥିପାଇଁ ବାପା



Digitized by PPRACHIN, SOA

ଗୋଟେ ପାର୍ଟିରେ ଲଢୁଛି ତ ପୁଅ ଗୋଟେ ପାର୍ଟିରେ, ମା ଗୋଟେ ପାର୍ଟିରେ ଟିକେଟ୍ ପାଉଛି ତ ଝିଅ ଗୋଟେ ପାର୍ଟିରେ - ଫଳରେ କ'ଣ ହେଉଛି ଯିଏ ଶାସନକୁ ଆସୁପଛେ ଆମରି ବଂଶରୁ କେହି ଜଣେ ଆସୁଛି ।

ଧର୍ମ : ଆଚ୍ଛା - ଆଚ୍ଛା ଖୁବ୍ ବୁଦ୍ଧିମାନ ବ୍ୟବସ୍ଥା ଦେଖୁଛି ।

ଚିତ୍ରୁ : ଆଉ ଡେରି କରନ୍ତୁନି ପ୍ରଭୁ ଯାଡେ ପୁଣି କାମ ବାକି ରହିଯିବ ।

ଧର୍ମ : କିଏ ଅଛରେ - ଏ ନେତା ବାବୁଙ୍କୁ ନେଇଯାଅ ......ନା..ନା.. ଚିତ୍ରୁ - ତୁ ନିଜେ ଯା'ଙ୍କୁ ନେଇ ମୋ ବିଶ୍ରାମ କକ୍ଷରେ ବସେଇ ଦେଇ ଆସ । ଦରବାର ଶେଷ ହେଲେ ଯାଙ୍କୁ ଠିକଣା ଜାଗାକୁ ନେଇଯିବା ।

ଚିତ୍ରୁ : ଚାଲ - ବାବା ବନ୍ଧୁଆ - ମୋ ପଛେ ପଛେ ଆସ ।

ବନ୍ଧୁଆ : (ପାଟିକରି) ଆମର ଦାବି - ମାନିନିଅ - ମନମୁଖି ଶାସନ ଚଳିବ ନାହିଁ ।

ଧର୍ମ : କିଓ.... ଏ ସବୁ କ'ଣ ? ତୁମ ପାଇଁ ପରା ସବୁ ବ୍ୟବସ୍ଥା ହେବ ବୋଲି କୁହାଗଲା ।

ବନ୍ଧୁଆ : (ଚପା କଣ୍ଠରେ) ଓହୋ - ଆପଣ କାହିଁକି ବ୍ୟସ୍ତ ହେଉଛନ୍ତି । ମୁଁ ମୋର ଏମିତି ପାଟି କରୁଥିବି । ଆପଣ ମୋତେ ଯେଉଁଠି ଇଛା ନେଇ ସେଠି ରଖିବେ ।

ଧର୍ମ : କାହିଁକି ? ତୁମେ ସେମିତି ପାଟି କାହିଁକି କରିବ ନା .... ?

ବନ୍ଧୁଆ : ମୁଁ ସେମିତି ପାଟି ନକଲେ ଧରାପଡି ଯିବିନି । ଏମିତି ପାଟି କରି କରି ଗଲେ ନର୍କବାସୀ ଭାବିବେ ନେତା - ଆମ ପାଇଁ ଚରମ ଲଢେଇ ଚଳେଇଛି । ସେମାନେ ତାକୁ ନେଇ ଲୁଚେଇ ଦେଇଛନ୍ତି ।

ଚିତ୍ରୁ : ଚାଲ ବାବା ।

ବନ୍ଧୁଆ : ଆମର ଦାବି - ମାନି ନିଅ - ମନମୁଖି ଶାସନ ଚଳିବ ନାହିଁ

(ଚିତ୍ରଗୁପ୍ତ ଓ ବନ୍ଧୁଆ ଚାଲିଗଲେ)



Digitized by PPRACHIN, SOA

ଧର୍ମ : ବେଟା ବନ୍ଧୁଆ ଜେନା ବୈକୁଣ୍ଠରେ ବସିବାକୁ ଗୋଟେ ନାଟ ଲଗେଇ ଦେଲା । ଏଥର ଆମେ ଆମର ନାଟ ଦେଖାଇବା - ଦେଖିବା ବେଟା କେତେ ବାଟ ଯାଉଛି ।

**(ଚିତ୍ରଗୁପ୍ତ ଆସିଲେ, ବିପରୀତ ଦିଗରୁ ଦଣ୍ଡପାଣି ଓ ଶୂଳପାଣି ଆସିଲେ)**

ଚିତ୍ରୁ : ଆଣିଲ କିରେ ସେ ବୁଦ୍ଧିମତୀକୁ ?

ଶୂଳପାଣି : ନା ଆଜ୍ଞା ସେଇଟା ଆଦୌ ଝିଅପିଲା ନୁହେଁ । ଆମେ ଭଲ କରି ଦେଖି ଆସିଲୁ ।

ଧର୍ମ : ଚିତ୍ରୁ - ସେ ହାରମଯାଦାକୁ ଲଗେଇଲୁ ଗୋଟେ ଥାପଡ । କହିଲା କଣନା ଆମେ ଭଲ କରି ଦେଖିଆସିଲୁ । ନାଇଁ କ'ଣ ଦେଖି ତୁ ପ୍ରମାଣ ପାଇଗଲୁ ଯେ ସେଟା ଝିଅ ପିଲା ନୁହେଁ ।

ଶୂଳପାଣି : ଆଜ୍ଞା ତାକୁ ପରୀକ୍ଷା କରିବାକୁ ଆମେ ଦି ଜଣ ବାଷ୍ପିୟ ରୂପଧରି ତାକୁ ଜଗି ରହିଲୁ । ସେ ଯୁଆଡେ ଯୁଆଡେ ଗଲା ତା ପଛେ ପଛେ ଚାଲିଲୁ ।

ଦଣ୍ଡପାଣି : ଆଜ୍ଞା, ସେ ତା ପ୍ରେମିକାକୁ ସାଙ୍ଗରେ ଧରି ଗୋଟେ ହିରୋହୋଣ୍ଡ ମ- ମ- ମ ।

ଶୂଳପାଣି : ମଟର ସାଇକେଲରେ ଚଢି ସୁଇମିଂ ପୁଲ୍ ରେ ଗୋଧୋଇବାକୁ ଗଲା ।

ଧର୍ମ : ରହ । ଚିତ୍ରୁ - କ'ଣ ସେ କହୁଛି - ସୁଇମିଂ ଫୁଲ୍ ସେଇଟା କ'ଣ ।

ଚିତ୍ରୁ : ଫୁଲ୍ ନୁହେଁ ପ୍ରଭୁ ସୁଇମିଂ ପୁଲ୍ - ଅର୍ଥାତ୍ ପହଁରା ପହଁରି କରିବା ପାଇଁ ପକ୍କା ପୋଖରୀ । ଏସବୁ ବଡ ବଡ ହୋଟେଲମାନଙ୍କରେ ଥାଏ ।

ଧର୍ମ : ଆଛା ଆଛା କ'ଣ କଲ ।

ଶୂଳପାଣି : ଆଜ୍ଞା, ସେ ଦୁଇ ଜଣ ସେଠି ତାଙ୍କ ଦେହରୁ ପୋଷାକ ପତ୍ର ଖୋଲି ପାଣିକୁ ଡେଇଁ ପଡିଲେ ।



Digitized by PPRACHIN, SOA

ଧର୍ମ : ପୁଅ ଝିଅ ଦି ଜଣ ଯାକ, ପୋଷାକ ପତ୍ର ଖୋଲି ଡେଇଁ ପଡିଲେ, ସତ କହୁଛୁ ।

ଚିତ୍ରୁ : ଆଜ୍ଞା, ସତ ହୋଇଥିବ । ଯୁବକ ଯୁବତୀମାନେ ସୁଇମିଂ ପୁଲ୍‌ମାନଙ୍କରେ ସଙ୍କ ବସ୍ତ୍ର ପରିଧାନ କରି ଜଳକ୍ରୀଡା କରନ୍ତି । ରଙ୍ଗ ବେରଙ୍ଗ ଆଲୋକ ଭିତରେ ସେମାନେ ମିଳିମିଶି ବେଶ୍ କ୍ରୀଡା କରନ୍ତି ।

ଧର୍ମ : ଆହାଃ ହାଃ.... ଖୁବ୍ ବଢିଆ ବ୍ୟବସ୍ଥା ଦେଖୁଛି । ଦ୍ୱାପର ଯୁଗ କଥା ତୋର ମନେ ଅଛି ଚିତ୍ରୁ । ଆମର ହାଇକମାଣ୍ଡ କୃଷ୍ଣ ଯମୁନା କୂଳରେ ଗୋପାଙ୍ଗନାମାନଙ୍କର ବସ୍ତ୍ର ହରଣ କରି ଯେତେବେଳେ ଜଳକ୍ରୀଡା କରିଥିଲେ, ଆମେ ଦେବତାମାନେ ଆକାଶରେ ରହି ଦେଖିଥିଲୁ, ଯାହାହେଉ ଏଥର ମର୍ତ୍ତ୍ୟରେ ପୁଣି ସେ ଅପୂର୍ବ ଦୃଶ୍ୟ ଉପଭୋଗ କରିବାକୁ ସୁଯୋଗ ମିଳିବ । ହଁ ତା'ପରେ କ'ଣ ହେଲା ।

ଶୂଳପାଣି : କିଛି ନାହିଁ ଆଜ୍ଞା ସେ ପହଁରା ପହଁରି ଭିତରେ ଆମେ ପୁରା ପ୍ରମାଣ ପାଇଗଲୁ ଯେ ସେଟା ଆଦୌ ଝିଅ ନୁହେଁ ପୁଅ ।

ଧର୍ମ : ଚିତ୍ରୁ - ଏମାନଙ୍କ କଥାକୁ ଆଉ ଅବିଶ୍ୱାସ କରି ହଉନି, ତୁ ତୋ ପାଞ୍ଜି ଲେଖାରେ ଭୁଲ କରିଛୁ ।

ଚିତ୍ରୁ : ସୃଷ୍ଟି ଆରମ୍ଭରୁ ଏ ଲେଖାରେ ମୁଁ ଭୁଲ କରିନି ପ୍ରଭୁ । ଆଜି କେମିତି ଭୁଲ୍ ହେବ । ତା'ପରେ ଆପଣଙ୍କ ଆଶୀର୍ବାଦ ଯୋଗୁ ମୁଁ ଯଦି ଭୁଲରେ ଏ ପାଞ୍ଜିରେ କିଛି ଲେଖିଦିଏ ସେ କଥା ତ ମର୍ତ୍ତ୍ୟରେ ଘଟିବ ହିଁ ଘଟିବ । ଏଇ ଦେଖନ୍ତୁ ଆତ୍ମା ନଂ ଚାରିଶହ ବିସ୍ ତା ପୂର୍ବ ଜନ୍ମର କର୍ମ ପାଇଁ ଗତ ୨୪ ବର୍ଷ ତଳେ ନାରୀ ଯୋନିରେ ଜନ୍ମ ହେଇଛି । ତା'ର ଗତକାଲି ଏତେ ଘଡି ସମୟେ ଏତେ ଲିତାରେ ରବି ଏତେ ପାଦ ଗମନେ ମୃତ୍ୟୁ ହେବା କଥା । ହେଲେ ମୁଝେ ଦାଲ୍‌ମେ କୁଛି କାଲା ନଜର୍ ଆତା ହୈ ।

ଧର୍ମ : ତବ ? କ୍ୟା କରନା ଚାହିଏ ?



Digitized by PPRACHIN, SOA

ଚିତ୍ରୁ : ସୋଚ୍‌ନା ପଡେଗା ପ୍ରଭୁ । ପହେଲି ବାର ଐସି ଘଟନା ଘଟି ହୈ । ସେମାନେ ଯାହାକୁ ପୁଅ ବୋଲି ଠହରଉଛନ୍ତି । ସେ ନିଷ୍ଠିତ ଝିଅ । ବୁଦ୍ଧି ବଳରେ ମୃତ୍ୟୁ ମୁଖରୁ ଖସିବା ପାଇଁ ଆମ୍ଭମାନଙ୍କୁ ଭୁଆଁ ବୁଲେଇ ଚାଲିଛି ।

ଧର୍ମ : ସେଇଥି ପାଇଁ ବର୍ତ୍ତମାନ କ'ଣ କରିବାକୁ ହେବ କହ । ଯେତିକି ବିଳମ୍ବ ହେଉଛି ତା'ର ମୃତ୍ୟୁ ସମୟ ସେତିକି ଗଡି ଗଡି ଚାଲିଛି । ଆଉ ବେଶୀ ଡେରି ହବାମାନେ ସୃଷ୍ଟିର ସବୁ ନିୟମ ବିଗିଡି ଯିବ ।

ଚିତ୍ରୁ : ହଁ ପ୍ରଭୁ ଆଉ ଅପେକ୍ଷା କରି ହବନି । ବର୍ତ୍ତମାନ ତାକୁ ଏଇ ସର୍ଗକୁ ଉଠେଇ ଆଣିବାକୁ ହେବ ।

ଧର୍ମ : ଠିକ୍ ଅଛି । ଅବେ ଚିତ୍ରୁ ଯାହା କହିଲା ଶୁଣିଲ ତ । ବର୍ତ୍ତମାନ ସେ ଆତ୍ମା ନମ୍ବର ଚାରିଶହ ବିସ୍ ଶୋଇଥାଉ ବା ବସିଥାଉ, ରୁଷୁଥାଉ ବା ହସୁଥାଉ ଯେମିତି ଅବସ୍ଥାରେ ଥାଉ ପଛେ ମୃତ୍ୟୁ ନଦେଇ ଜୀବନ୍ତ ନେଇ ଆସ ।

ଶୂଳପାଣି : ଆଜ୍ଞା, ଜୀବନ୍ତ ନେଇ ଆସିବୁ ?

ଧର୍ମ : ହଁ ଜୀବନ୍ତ ......। ଯାହା ଦଣ୍ଡ ଦେବା କଥା ମୁଁ ଏଇଠି ଦେବି । ଯାଅ...... ।

**(ଦୂତ ଦ୍ୱୟ ମୁଣ୍ଡନତ କରି ଆଦେଶକୁ ମାନି ନେବାର ଭଙ୍ଗୀ କରନ୍ତି । ଯମ ନିର୍ଦ୍ଦେଶ ଦେବା ଅବସ୍ଥାରେ ସ୍ଥିର ହୋଇଯାଆନ୍ତି । ପରବର୍ତ୍ତୀ ଦୃଶ୍ୟର ସଂଗୀତ ଧିରେ ଧିରେ ବଢିବା ସଂଗେ ସଂଗେ ଆଲୋକ ଲିଭିଯାଏ ।)**





Digitized by PPRACHIN, SOA

# ପ୍ରଗତି

(ପୁଣି ମଞ୍ଚ ଆଲୋକିତ ହେଲା ବେଳକୁ ଦେଖାଯାଏ ଗୋଟିଏ ହୋଟେଲ୍‌ର ସୁସଜ୍ଜିତ ହଲ୍‌ । ବୁଦ୍ଧିମାନ ପଟ୍ଟନାୟକ ତା'ର ଦଳକୁ ନେଇ ନୃତ୍ୟ ସଂଗୀତର କାର୍ଯ୍ୟକ୍ରମ ପରିବେଷଣ କରୁଛି । ସେ ପୁରୁଷ ଓ ସ୍ତ୍ରୀ ଉଭୟ କଣ୍ଠରେ ଗୀତ ଗାଉଛି ଓ ନାଚୁଛି । ଅନ୍ୟ ସଭ୍ୟମାନେ ମଧ ଗାଉଛନ୍ତି ଓ ନାଚୁଛନ୍ତି । ସଂଗୀତ ଆଉ ନୃତ୍ୟର ତାଳେ ତାଳେ ଦର୍ଶକ ମଣ୍ଡଳୀଙ୍କ ତାଳି ଶୁଣା ଯାଉଛି । ଏ ଦୃଶ୍ୟଟି ଷ୍ଟୋବୋ ଲାଇଟର ବ୍ୟବହାର କରାଯାଇପାରେ । ହଠାତ୍ ଗୀତ ଶେଷ ନ ହେଉଣୁ ମଞ୍ଚ ଅନ୍ଧାର ହୋଇଯାଇଛି । ଅନ୍ଧାର ହେବା ସଂଗେ ସଂଗେ ନୃତ୍ୟ ସଂଗୀତ ବି ବନ୍ଦ ହୋଇଯାଇଛି । ପରେ ପରେ ଉପସ୍ଥିତ ଜନତା light light ବୋଲି ପାଟି କରିଛନ୍ତି । କିନ୍ତୁ ମଞ୍ଚ ସେମିତି ଅନ୍ଧାର ରହିଛି । ସେ ଅନ୍ଧକାର ଭିତରୁ ନିମ୍ନ ଘୋଷଣାଟି ଶୁଣାଯାଇଛି ।)

ଘୋଷଣା : ସୁନାମଧନ୍ୟ ପପ୍‌ଷ୍ଟାର ଶ୍ରୀମାନ ବୁଦ୍ଧିମାନ ପଟ୍ଟନାୟକ ହରଣଚାଳ । ଗତକାଲି ରାତ୍ରି ୧୨ ଘଣ୍ଟା ସମୟରେ ଚଳଚିତ୍ର ଜଗତରେ ଚହଳ ପକାଇଥିବା କଣ୍ଠ ତଥା ନୃତ୍ୟଶିଳ୍ପୀ ଶ୍ରୀମାନ ବୁଦ୍ଧିମାନ ପଟ୍ଟନାୟକଙ୍କୁ ହୋଟେଲ ସେଭେନ୍ ହେଭେନ୍‌ରେ ଏକ ନୃତ୍ୟ ସଂଗୀତର କାର୍ଯ୍ୟକ୍ରମ ପରିବେଷଣ କରୁଥିବା ସମୟରେ ହରଣଚାଳ କରିନିଆଯାଇଛି । ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀ ଅନୁଯାୟୀ ହଠାତ୍ କାର୍ଯ୍ୟକ୍ରମ ମଧ୍ୟରେ ବିଦ୍ୟୁତ ସଂଯୋଗ କାଟିଦିଆଯାଇ ତାଙ୍କୁ ଉଠାଇ ନିଆଯାଇଛି । ଏହା କୌଣସି ଏକ ସନ୍ତ୍ରାସବାଦୀ ଗୋଷ୍ଠୀର କାର୍ଯ୍ୟ ହୋଇପାରେ ବୋଲି ସନ୍ଦେହ କରାଯାଉଛି । ଆପଣମାନଙ୍କର ମନେଥାଇ ପାରେ ପ୍ରାୟ ଦୁଇ ବର୍ଷ ପୂର୍ବେ କୁମାରୀ ବୁଦ୍ଧିମତୀ



Digitized by PPRACHIN, SOA

ପଟ୍ଟନାୟକ ଏକ ଅସ୍ତ୍ରୋପଚାର ଯୋଗେ ନିଜକୁ ପୁରୁଷ ଲିଙ୍ଗକୁ ପରିବର୍ତ୍ତନ କରିଥିଲେ ଏବଂ ନିଜର ନାମକୁ ବୁଦ୍ଧିମତୀରୁ ବୁଦ୍ଧିମାନ କୁ ବଦଳାଇ ଦେଇଥିଲେ......



## ଶୀର୍ଷଗତି

**(ମଞ୍ଚ ଆଲୋକିତ ହୋଇଛି । ଧର୍ମଙ୍କର ଦରବାର । ଧର୍ମରାଜ ଓ ଚିତ୍ରଗୁପ୍ତ ଉଭୟ ମଧ୍ୟାହ୍ନ ଭୋଜନ ପାଇଁ ବାହାରକୁ ଯାଇଛନ୍ତି । ଉଭୟଙ୍କର ସ୍ଥାନ ଖାଲି ପଡିଛି । ଶୂଳପାଣି, ଦଣ୍ଡପାଣି ବୁଦ୍ଧିମାନଙ୍କୁ ଶୂନ୍ୟରେ ଶୂନ୍ୟରେ ଉଠେଇ ଆଣି ମଞ୍ଚ ମଧ୍ୟରେ ରଖିଦେଇଛନ୍ତି । ବୁଦ୍ଧିମାନର ଚିତ୍କାର ଶୁଣାଯାଉଛି)**

ବୁଦ୍ଧିମାନ : ଆରେ - ଆରେ ମୋତେ ଏମିତି ଶୂନ୍ୟେ ଶୂନ୍ୟେ ଉଠେଇ ନେଉଛ କୁଆଡେ । ଆରେ ଆରେ ...... ଏ ସବୁ କ'ଣ ହେଉଛି ।

ଦଣ୍ଡପାଣି : ଚୁ- ଚୁ- ଚୁପ୍ ହୋଇ ବସ ।

ବୁଦ୍ଧି : ଆପଣମାନେ କିଏ ? ବ୍ଲାକ ମେଲର, ଡକାୟତ ନା ଉଗ୍ରପନ୍ଥୀ, କିଏ ଆପଣମାନେ ।

ଶୂଳପାଣି : ଆମେମାନେ କିଏ ସେକଥା ପରେ ବୁଝିବୁ । ବେଶି ବକ୍ ବକ୍ ନକରି ବସ୍ ସେଇଠି ।

(ବୁଦ୍ଧିମାନ ଚାରି ଆଡକୁ ଚାହିଁବାରେ ଲାଗିଛି । କିନ୍ତୁ ସତେ ଯେମିତି କିଛି ବୁଝିପାରୁନି ।)

ବୁଦ୍ଧିମାନ : ଏଇଟା କୋଉ ଜାଗା ? ମୋତେ କାହିଁକି ଏଠିକି ଅଣାଯାଇଛି ମୁଁ କିଛି ବୁଝିପାରୁନି ।

ଦଣ୍ଡପାଣି : ପରେ ବୁଝିବୁ । ହ୍ୟାପୋ ଆମକୁ ନା- ନାକେ ଦମ୍ କରି ଦେଲାଣି ।



Digitized by PPRACHIN, SOA

ବୁଦ୍ଧିମାନ : ଜାଗାଟା ନିଶ୍ଚୟ ଅଣ୍ଡର ଗ୍ରାଉଣ୍ଡ । (ଉପରକୁ ଚାହିଁ) ନାହିଁତ ଉପରେ ଆକାଶ, ବାଦଲ ବି ଭାସୁଛି । (ଦୂତମାନଙ୍କୁ) ଆରେ ବାବୁ ମୋ ବାପାତ ଲକ୍ଷପତି ନୁହଁନ୍ତି ଯେ ତୁମେମାନେ ମୋ ମୁଣ୍ଡ ଜାମିନି ରଖି ଟଙ୍କା ଆଦାୟ କରିପାରିବ । ମୋତେ କାହିଁକି ଏଠିକି ନେଇ ଆସିଛ ।

ଶୂଳପାଣି : ଆମ ପ୍ରଭୁଙ୍କର ତୁମ ପାଖରେ କ'ଣ ଜରୁରୀ କାମ ଅଛି ।

ବୁଦ୍ଧିମାନ : ମୋ ପାଖରେ କାମ ଅଛି ମୋତେ ଡକାଇ ପାରିଥାନ୍ତେ, ଚିଠି ଦେଇ ପାରିଥାନ୍ତେ । ଏମିତି ଜବରଦସ୍ତ ଧରି ଆଣିବାରେ କ'ଣ ଅଛି । ଆଚ୍ଛା କାମଟା କ'ଣ କହିଲ ।

ଦଣ୍ଡପାଣି : କ'ଣ ସବୁ କଥାବାର୍ତ୍ତା କରିବାର ଅ- ଅଛି ।

ବୁଦ୍ଧିମାନ : ଓଃ ବୁଝିଗଲି । ମୁଁ କୁମାରୀରୁ କୁମାର ହେଲାପରେ ଅନେକ ମୋ ଇଣ୍ଟରଭ୍ୟୁ ନେଉଛନ୍ତି, ଆଚ୍ଛା ତୁମ ମାଲିକ କାହିଁ କହିଲ ।

ଶୂଳପାଣି : ଓଃ ବକ୍ ବକ୍ ନକରି ବସ ଭଲା । ମାଲିକ ମଧ୍ୟାହ୍ନ ଭୋଜନ ପାଇଁ ଯାଇଛନ୍ତି । ସମୟ ହୋଇଗଲେ ଆସିଯିବେ ।

ବୁଦ୍ଧିମାନ : ଓଃ ଲଞ୍ଚବ୍ରେକ୍ (ଘଣ୍ଟା ଦେଖିଛି) ଏଟାତ ଲଞ୍ଚବ୍ରେକ୍‌ର ସମୟ ନୁହେଁ । ହେଲେ ଜାଗାଟା କ'ଣ.....କିଛି ବୁଝି ହେଉନି ।

**(ଧର୍ମରାଜ ଓ ଚିତ୍ରଗୁପ୍ତ ପ୍ରବେଶ କରନ୍ତି । ଧର୍ମରାଜ ହାତରେ ଗୋଟିଏ କାଠିଧରି ଦାନ୍ତ ଖୁଣ୍ଟୁଛନ୍ତି । ଚିତ୍ରଗୁପ୍ତ ହାତରେ ଗୋଟେ ପାନ ମନ୍ଥିବାରେ ଲାଗିଛନ୍ତି । ହଠାତ୍ ଆସୁ ଆସୁ ବୁଦ୍ଧିମାନକୁ ଦେଖି ଅଟକି ଯାଇଛନ୍ତି ।)**

ବୁଦ୍ଧିମାନ : (ଧର୍ମରାଜ ଓ ଚିତ୍ରଗୁପ୍ତଙ୍କୁ ଦେଖି) ଓଃ ବୁଝିଗଲି ବୁଝିଗଲି ମୋତେ ତା'ହେଲେ film studio କୁ ନେଇ ଆସିଛ । very good, ଆପଣମାନେ Acting କରୁଛନ୍ତି ବୋଧହୁଏ । (ଚିତ୍ରଗୁପ୍ତଙ୍କ ସହିତ ହାତମିଳାଇବା ପାଇଁ ହାତ ବଢେଇ) ହାଲୋ...Glad to meet you. ଆପଣଙ୍କର ଶୁଭନାମ ।

ଚିତ୍ରୁ : ଚିତ୍ରଗୁପ୍ତ ।



Digitized by PPRACHIN, SOA

ବୁଦ୍ଧିମାନ : Nice ...... very nice ! ଆପଣ character artist ନା ? ହେଲେ ଆପଣଙ୍କୁ ଆଗରୁ କୌଣସି film ବା ଟିଭି ସିରିଆଲରେ ଦେଖିନି । Any way my self is ବୁଦ୍ଧିମାନ ପଟ୍ଟନାୟକ । song and dance star. ପେପରରେ ମୋ dance programme ବିଷୟରେ ପଢିଥିବେ । ପୁଅ ଆଉ ଝିଅ ଉଭୟ କଣ୍ଠରେ ମୁଁ ପ୍ରାୟ ୪୦୦ ରୁ ଊର୍ଦ୍ଧ୍ୱ ଆଲବମ୍ କରିସାରିଛି । meet you again !

(ଧର୍ମଙ୍କ ନିକଟକୁ ଆଗେଇ ଯାଇ ହାତ ମିଳାଇବା ପାଇଁ ହାତ ବଢେଇ)

Nice - Nice - beautiful makeup. ବାଃ ପ୍ରକୃତରେ ଆପଣ ଏଇ makeup ରେ ଖୁବ୍ ସୁନ୍ଦର ଦେଖାଯାଉଛନ୍ତି । your good name please ?

**(ଧର୍ମ କିନ୍ତୁ ହାତ ମିଳାଇବା ପରିବର୍ତ୍ତେ ବୁଦ୍ଧିମାନର ଙ୍ଗରାଜୀ କଥା ଶୁଣି ଚିତ୍ରଗୁପ୍ତ ଆଡକୁ ଚାହିଁଛନ୍ତି ।)**

ଧର୍ମ : ଚିତ୍ରଗୁପ୍ତ ।

ଚିତ୍ର : ଆପଣଙ୍କ ନାଁ, ଜାଣିବାକୁ ଚାହୁଁଛନ୍ତି ପ୍ରଭୁ ।

ଧର୍ମ : ଧର୍ମରାଜ ।

ବୁଦ୍ଧିମାନ : ଧର୍ମରାଜ ! ଆଛା ଟାଇଟଲ୍ ?

ଚିତ୍ର : ଟାଇଟଲ୍ ଫାଇଟଲ୍ କିଛି ନାହିଁ । ବାସ ଧର୍ମରାଜ ।

ବୁଦ୍ଧିମାନ : ଟାଇଟଲ୍ ନାହିଁ ଭଲ । ବହୁତ ଭଲ - ହେଲେ ନା ଗୁଡାକ ଟିକିଏ ଖାପଛଡା ଖାପଛଡା ଲାଗୁଛି । Any way ଏଇଟା ନିଶ୍ଚୟ ଗୋଟେ ମିଥୋଲୋଜିକାଲ୍ ଫିଲିମ୍ । Where is your producer. Where is your director.

**(ଧର୍ମରାଜ ପୁଣି ଅସହାୟ ଭାବରେ ଚିତ୍ରଗୁପ୍ତଙ୍କୁ ଚାହାଁନ୍ତି ।)**

ଚିତ୍ର : ଆପଣ ବସନ୍ତୁ ପ୍ରଭୁ । (ବୁଦ୍ଧିମାନକୁ) କିଓ producer-director ଏଠିକି ଆସିବେ କୁଆଡେ ।



Digitized by PPRACHIN, SOA

ବୁଦ୍ଧିମାନ : What, ଏତେ ସୁନ୍ଦର ସେଟ୍ ହେଇଛି । ଆପଣମାନେ makeup ରେ ଅଛନ୍ତି । Producer ନ ଆସିଲେ ନାହିଁ । Camera unit, director କେହି ଆସିବେନି । କ'ଣ shooting cancel ହେଇଯାଇଛି ।

ଚିତ୍ରୁ : ତୁମେ କ'ଣ ଭାବୁଛ ଆମେ ଏଠି makeup ନେଇ ବସିଛୁ । ଏଠି film shooting ହେବ ?

ବୁଦ୍ଧିମାନ : ନାଇଁ ଭାବିଚି କାହିଁକି ? ମୁଁ ଏଠି ସପ୍ନ ଦେଖୁଛି । ଏମିତି ଦାମିକା ପୋଷାକ ପିନ୍ଧିଛନ୍ତି । ଏଠି କ'ଣ sports ହେଉଛି ।

ଚିତ୍ରୁ : Sports ...... ?

ବୁଦ୍ଧିମାନ : ମାନେ fancy dress competition. କୌତୁକ ବେଶ ପ୍ରତିଯୋଗିତା ।

ଧର୍ମ : ଚିତ୍ରୁ - ଏ ଟୋକାଟା କ'ଣ ସବୁ ଗପିଚାଲିଛି । ପାଗଳା ହେଇଯାଇଛି କିରେ ।

ବୁଦ୍ଧିମାନ : You shut up. ମୋ ସହିତ ସେମିତି କଥାବାର୍ତ୍ତା କରିବନି କହିଦେଉଛି ।

ଚିତ୍ରୁ : ଏ ବାବୁ - ତୁମେ କାହା ସଂଗେ କଥାବାର୍ତ୍ତା ହେଉଛ ଜାଣିଛ ?

ବୁଦ୍ଧିମାନ : ଜାଣିବା ଦରକାର ନାହିଁ । ଏ ଲୋକଟାକୁ ଏଟିକେଟ୍ ଜଣା ନାହିଁ ।

ଧର୍ମ : (ରାଗି) ଚି-ତ୍ର-ଗୁ-ପ୍ତ ।

ଚିତ୍ରୁ : ତୁମ ବୁଝିବାରେ ଭୁଲ ହୋଇଯାଇଛି ବାବା । ତୁମେ ପ୍ରଭୁଙ୍କୁ ବୁଝିବାରେ ଭୁଲ କରିଚାଲିଛ ।

ବୁଦ୍ଧିମାନ : ମୋର ଏମିତି ଗୋଟେ ବାଜେ ବୁଢାକୁ ବୁଝିବା ଦରକାର ନାହିଁ । ଡାକନ୍ତୁ ଆପଣଙ୍କର director କୁ - ମୋତେ ଏଠିକି କାହିଁକି ଅଣାଯାଇଛି - ତାଙ୍କୁ ପଚାରିବି ।

ଚିତ୍ରୁ : ମୁଁ ବୁଝେଇ ଦେଉଛି ।

ବୁଦ୍ଧିମାନ : କ'ଣ ବୁଝେଇ ଦେବେ । କଣ୍ଟ୍ରାକ୍ଟ ସାଇନ୍ ନାହିଁ, କିଛି ନାହିଁ ।



Digitized by PPRACHIN, SOA

Artist କୁ ଏମିତି ଧରିଆଣି କ'ଣ Art ଆଦାୟ କରିହୁଏ । କ'ଣ ଆପଣମାନଙ୍କର ମତଲବ୍ ମୁଁ ବୁଝିପାରୁନି ।

ଚିତ୍ରୁ : ଥୟଧର ବାପା ମୁଁ ଗୋଟି ଗୋଟି କରି ସବୁ ବୁଝେଇ ଦେଉଛି ।

ବୁଦ୍ଧିମାନ : ନା - ମୁଁ ଆପଣଙ୍କ ପାଖରୁ କିଛି ଶୁଣିବାକୁ ଚାହୁଁନି । ଆପଣଙ୍କର Producer କିମ୍ବା Director ଙ୍କୁ ଡାକନ୍ତୁ । ନଚେତ୍ ମୋତେ ତାଙ୍କ ପାଖକୁ ନେଇଯାଆନ୍ତୁ ।

ଚିତ୍ରୁ : ବଡ ଅବୁଝା ପିଲା ଦେଖୁଛି ।

ବୁଦ୍ଧିମାନ : ମୋତେ ଏଠିକି କାହିଁକି ଅଣାଯାଇଛି ।

ଧର୍ମ : ତୁମର ବିଚାର ହେବ ।

ବୁଦ୍ଧିମାନ : ମୋର ବିଚାର ହେବ ?

ଧର୍ମ : ହଁ ତୁମର ବିଚାର ହେବ । ଗୋଟିଏ ଝିଅ ହୋଇ ପୁରୁଷର ଅଭିନୟ କରି ତୁମେ ଆମକୁ ଠକିଛ । ଏ ସୃଷ୍ଟିକୁ ଠକିଛ । ମୁଁ ବିଚାର କରିବ, ଆଉ ଶାସ୍ତି ଦେବି ।

ବୁଦ୍ଧିମାନ : ମୁଁ ପୁରୁଷରୁ ସ୍ତ୍ରୀ ହୁଏ ବା ସ୍ତ୍ରୀରୁ ପୁରୁଷ ହୁଏ ସେଥିରେ ତୁମର କ'ଣ ଭାସି ଯାଉଛି । ମୋର ବିଚାର କିବାକୁ ତୁମେ କିଏ ?

ଧର୍ମ : ମୁଁ ସୃଷ୍ଟିର ରକ୍ଷା କର୍ତ୍ତା । ତୁମ ଭଳି ମଣିଷ ଆଜି ଅତ୍ୟନ୍ତ ବୁଦ୍ଧିମାନ ହୋଇ ସୃଷ୍ଟିର ନିୟମକୁ ବିଭ୍ରାଟ କରିଚାଲିଛନ୍ତି ।

ବୁଦ୍ଧିମାନ : ମୁହଁରେ ଫଲସ ଦାଢି, ଦେହରେ ଛରି ପୋଷାକ, ମୁଣ୍ଡରେ ମୁକୁଟ ଲଗେଇ ଭାବିଛ ଧର୍ମରାଜ ହେଇଗଲ । ଦେଉଛି-ତୋ ଦାଢିକୁ ଉପାଡି ଦେଉଛି ।

**(ହଠାତ୍ ପକେଟରୁ ଗୋଟିଏ ଛୁରୀ କାଢି ଧର୍ମରାଜ ଆଡକୁ ମାଡିଯିବାକୁ ବସିଛି । ଚିତ୍ରଗୁପ୍ତ ତାକୁ ପଛରୁ ଭିଡି ଧରିଛନ୍ତି )**

ଚିତ୍ରୁ : ଆରେ ବାବୁ - ଏ ସବୁ କ'ଣ ହେଉଛି ।

ବୁଦ୍ଧିମାନ : ଇଏ ମୋର ବିଚାର କରିବ । କିଏ କାହାର ବିଚାର କରିବ ଦେଖେଇ ଦେଉଛି ।



Digitized by PPRACHIN, SOA

ଚିତ୍ରୁ : ଦୂତ..ଦୂତ.. ।

**(ଦୂତ ଦୁଇ ଜଣ ଆସି ବୁଦ୍ଧିମାନକୁ ଧରିନିଆନ୍ତି । ଚିତ୍ରଗୁପ୍ତ ତାକୁ ବୁଝେଇବାକୁ ଲାଗେ)**

ଥୟ ଧର ବାବା । ତୁମେ ଯାହା ଭାବୁଛ ଏଠି film shooting ହେଉଛି ସେଇଟା ଠିକ୍ ନୁହେଁ । ତୁମେ ବର୍ତ୍ତମାନ ସର୍ଗପୂରରେ । ସ୍ୱୟଂ ଧର୍ମରାଜଙ୍କ ସମ୍ମୁଖରେ ।

**(ଦୂତ ଦୁଇଜଣଙ୍କ ପାଖରୁ ମୁକୁଳି ଚିତ୍ରଗୁପ୍ତଙ୍କ ପାଖକୁ ଆସି)**

ବୁଦ୍ଧିମାନ : ମୋତେ ସତ କୁହନ୍ତୁ । ଏଇଟା କ'ଣ ଗୋଟେ ସ୍ମଗଲିଂ ର୍‍ୟାକେଟ୍ ।

ଚିତ୍ରୁ : ର୍‍ୟାକେଟ୍ ଫାକେଟ୍ କିଛି ନୁହେଁ । ମୋ କଥା ବିଶ୍ୱାସ କର ।

ବୁଦ୍ଧିମାନ : ବିଶ୍ୱାସ କଲି । ହେଲେ ଆପଣଙ୍କର Director କିମ୍ବା Producerଙ୍କୁ ଡାକନ୍ତୁ । ମୁଁ ତାଙ୍କ ସହିତ କଥା ହେବି । ଯାଡୁ ସିଆଡୁ କଥା ନ ବୁଲେଇ ତାଙ୍କୁ ଡାକି ଦିଅନ୍ତୁ ।

ଚିତ୍ରୁ : (ରାଗି) Director ? ସେଇ ଆପଣଙ୍କ ସାମନାରେ ବସିଛନ୍ତି । ହେଲା ।

ବୁଦ୍ଧିମାନ : (ଧର୍ମଙ୍କୁ ଚାହିଁ) ଇଏ ଡାଇରେକ୍ଟର ? ନା ମୋର ବିଶ୍ୱାସ ହେଉନି ।

ଚିତ୍ରୁ : ବିଶ୍ୱାସ ହେଉନି ? ଇଏ ଖାଲି ଡାଇରେକ୍ଟର ନୁହଁନ୍ତି । producer, photographer, screen play writer, singer, dancer, actor distributor ଏମିତିକି ହଲ ମାଲିକ ମଧ୍ୟ ।

ବୁଦ୍ଧି : ଫେଲ ମାରିଯିବେ - ଦିନ ଦିଟାରେ ଭିକ୍ଷାଥଳି ଧରି ବୁଲିବେ, ପୁରା ବରବାଦ ହେଇଯିବେ ।

ଧର୍ମ : ମାନେ ?

ବୁଦ୍ଧିମାନ : ଏଇଟା ହେଉଛି ସ୍ପେଶାଲିଷ୍ଟ ଯୁଗ । ଜଣେ ଲୋକ ଏକାଥରକେ ସବୁକାମ ହାତକୁ ନେଲେ film ଫ୍ଲପ ହୋଇଯିବ । ଗୋଟେ ସପ୍ତାହବି ହଲରେ ଚାଲିପାରିବନି ।

**(ଚିତ୍ରଗୁପ୍ତଙ୍କ ଇଙ୍ଗିତରେ ଦୂତ ଦୁଇଜଣ ପ୍ରସ୍ଥାନ)**

ଚିତ୍ରୁ : ଆରେ ଏଇଟା କୌଣସି Film ନୁହେଁ କି ଆମେ କୌଣସି



Digitized by PPRACHIN, SOA

ଅଭିନେତା ନୁହେଁ । ଏଇଟା କୌଣସି Studio ନୁହେଁ କି ଆମେ makeup ନେଇନୁ ।

ବୁଦ୍ଧିମାନ : ତା ହେଲେ ଏଇଟା କ'ଣ ଗୋଟେ ପାଗଳାଗାରଦ ?

ଧର୍ମ : (ଚିତ୍କାର କରି) ଚିତ୍ରୁ..... ।

ବୁଦ୍ଧିମାନ : ଚିତ୍ରୁ ନା ଛତ୍ରୁ ।

ଚିତ୍ରୁ : ଶାନ୍ତ ହୁଅ ବାବା ଟିକିଏ ବୁଝିବାକୁ ଚେଷ୍ଟା କର । ମର୍ତ୍ତ୍ୟ ଭୁବନରୁ ତୁମକୁ ସିଧା ସ୍ୱର୍ଗକୁ ଅଣାଯାଇଛି ।

ବୁଦ୍ଧିମାନ : ଗଞ୍ଜେଇ, ଚରସ ନା ବ୍ରାଉନ୍ ସୁଗାର କ'ଣ ଖାଇଛ ?

ଚିତ୍ରୁ : ହୁଁ ବେଶୀ ବାହାଦୂରୀ ଦେଖେଇ କଥାବାର୍ତ୍ତା କରିଚାଲିଛି । ଦେଖ ଉପରକୁ ଦେଖ - ଆକାଶ, ତୁମର ଡାହାଣକୁ ଦେଖ ଆକାଶ । ତୁମ ବାଁକୁ ଦେଖ ଆକାଶ । ତୁମ ପାଦ ତଳକୁ ବି ଦେଖ ଆକାଶ । ସେଠି ଶୂନ୍ୟରେ ସିଂହାସନ, ମୁଁ ଏଠି ଶୂନ୍ୟରେ ଠିଆ ହୋଇଛି । ତୁମେ ଦେଖ ତୁମେ ବି ଶୂନ୍ୟରେ ଠିଆ ହୋଇଛ । ମହାଶୂନ୍ୟରେ .......

**(ବୁଦ୍ଧିମାନ ହଠାତ୍ ଉପର ବାଁ ଡାହାଣ ଘୁରି ଘୁରି ଦେଖିବାକୁ ଲାଗେ । ଯନ୍ତ୍ର ସଂଗୀତ ସହିତ ଚିତ୍ରଗୁପ୍ତର ସଂଳାପ ଅନୁଯାୟୀ ସେ ଘୁରି ଘୁରି ଦେଖିବାକୁ ଲାଗେ ।)**

ବୁଦ୍ଧିମାନ : ତା' ମାନେ ?

ଚିତ୍ରୁ : ତା' ମାନେ ଏ ହେଉଛି Space of No gravity. ଇଏ ସ୍ୱର୍ଗ । ଏଠି କୌଣସି ଆକର୍ଷଣ ନାହିଁ କି ବିକର୍ଷଣ ନାହିଁ । ଏଇଟା ଧର୍ମରାଜ୍ୟ ।

ବୁଦ୍ଧିମାନ : ତା' ମାନେ ମୁଁ କ'ଣ ସତକୁ ସତ ଧର୍ମରାଜଙ୍କ ସମ୍ମୁଖରେ ।

ଚିତ୍ରୁ : ହଁ ତୁମେ ଧର୍ମରାଜ ଯମଙ୍କ ସମ୍ମୁଖରେ ।

**(ବୁଦ୍ଧିମାନ ଆଶ୍ଚର୍ଯ୍ୟ ହୋଇ ଉପର ତଳ ଦେଖିବାରେ ଲାଗିଛି । ତା'ର ପାଦ ତଳ ଶୂନ୍ୟ ଦେଖି ଶଙ୍କିତ ହୋଇଛି । ପର ମୂହୁର୍ତ୍ତରେ ପାଦ ତଳର ଆକାଶକୁ ଗୋଡ ଦ୍ୱାରା ପରୀକ୍ଷା କରିଛି । ସେ ଚାଲିବାକୁ/ ଦୌଡିବାକୁ ଚେଷ୍ଟା କରିଛି । ଧର୍ମରାଜ**



Digitized by PPRACHIN, SOA

ଓ ଚିତ୍ରଗୁପ୍ତ ହସି ଉଠିଛନ୍ତି ତଥାପି ବୁଦ୍ଧିମାନ ସାହସ ନ ହରାଇ ଦୌଡି ପଳାଇବାକୁ ଚେଷ୍ଟା କରେ । କିନ୍ତୁ ଯେଉଁ ଦିଗକୁ ଯିବାକୁ ଚେଷ୍ଟା କରେ ତା ସମ୍ମୁଖରେ ଧର୍ମରାଜ କିମ୍ବା ଚିତ୍ରଗୁପ୍ତ ନଚେତ ଦୂତ ଆବିର୍ଭାବ ହୋଇ ଠିଆ ହୁଅନ୍ତି । ଦୂତ, ଯମ ଓ ଚିତ୍ରଗୁପ୍ତଙ୍କ ମିଳିତ ନାରକୀୟ ହସରେ ବୁଦ୍ଧିମାନ ଅଧିକ ଭୟଭୀତ ହୋଇଛି । ଶେଷରେ ପଳାଇ ଯିବାର କୌଣସି ଉପାୟ ନପାଇ ଧର୍ମଙ୍କର ପାଦ ତଳେ ବସିପଡିଛି ।)

ବୁଦ୍ଧିମାନ : ମୋତେ କ୍ଷମା କରନ୍ତୁ ପ୍ରଭୁ । ନଜାଣି ନଶୁଣି ଆପଣଙ୍କୁ ଯେମିତି ବ୍ୟବହାର ଦେଖେଇଛି, ମୋତେ ମାଫ କରିଦିଅନ୍ତୁ । Please excuse me !

ଧର୍ମ : ତୋତେ ମୁଁ ମାଫ୍ କରି ଦେବି ? No, ସୃଷ୍ଟିର ନିୟମକୁ ଭଙ୍ଗ କରି ତୁମେ ଆମକୁ ଠକିଛ । ତୁମ ମୃତ୍ୟୁ ସମୟକୁ ଗଡେଇ ଦେଇଛ । ଆମକୁ ଠକି ଆମକୁ ଭଣ୍ଡି ତୁମେ ସୃଷ୍ଟିର ଶୃଙ୍ଖଳା ଭାଙ୍ଗି ଦେଇଛ । ତୁମର କ୍ଷମା ନାହିଁ ।

ଚିତ୍ରୁ : କେବେ ନୁହେଁ ପ୍ରଭୁ । ମନୁଷ୍ୟମାନଙ୍କୁ ଜ୍ଞାନ ଆଉ ବୁଦ୍ଧି ଦାନ କରିଥିବାରୁ ଏମାନେ ଏ ସୃଷ୍ଟିକୁ ସରସ ସୁନ୍ଦର କରିବା ପରିବର୍ତ୍ତେ ସୃଷ୍ଟିର ନିୟମକୁ ଭଙ୍ଗ କରି ବିଭ୍ରାଟ କରିବାରେ ବସିଛନ୍ତି । ଏମାନଙ୍କର ଅପରିଣାମଦର୍ଶିତା ଯୋଗୁ ଆମେ ସୃଷ୍ଟିକୁ ରକ୍ଷା କରିବାକୁ ହଇରାଣ ହୋଇଯାଉଛେ । ଯାକୁ ଏମିତି ଦଣ୍ଡ ଦିଅନ୍ତୁ, ଯେମିତି ଏ ସୃଷ୍ଟିକୁ ରକ୍ଷା କରାଯାଇ ପାରିବ ।

ଧର୍ମ : ହଁ ମୁଁ ବର୍ତ୍ତମାନ ତାକୁ ଦଣ୍ଡ ଦେବି । ମୋତେ ପୁଣି ଇଂରାଜୀରେ କେତେ କ'ଣ ଗାଳି ଦେଇ ଛୁରୀ ଦେଖେଇ ମାରିବାକୁ ଧାଇଁ ଆସୁଛି ।

ବୁଦ୍ଧିମାନ : ମୁଁ ଆପଣଙ୍କର ଗୋଡ ଧରୁଛି ପ୍ରଭୁ ମୋତେ କ୍ଷମା କରି ଦିଅନ୍ତୁ । (ହଠାତ୍ ଯମଙ୍କର ଗୋଦର ଗୋଡକୁ ଧରି ନେଇଛି)



Digitized by PPRACHIN, SOA

ଧର୍ମ : ଆରେ ଛାଡ...ଓଃ ମରିଗଲି - ମରିଗଲି ସେ ଗୋଦର ଗୋଡଟାକୁ ଛାଡିଦେ କହୁଛି ।

**(ବୁଦ୍ଧିମାନ ଗୋଡକୁ ଛାଡିଦିଏ ପୁଣି ଖୁବ୍ ଜୋର ଦେଇ ଧରିନିଏ)**

ଧର୍ମ : ମରିଗଲି - ମୋ ପ୍ରାଣବାୟୁ ଉଡିଗଲାରେ - ହାରମଯାଦା ଚିତୁ ଓଃ ଭଗବାନ - ମରିଗଲି, ଛାଡରେ ବାବା - ଛାଡିଦେ ।

ବୁଦ୍ଧିମାନ : ମରିଯିବି ପଛେ ଛାଡିବିନି ପ୍ରଭୁ । କେବେ ଛାଡିବିନି ।

ଧର୍ମ : ଆବେ (କାନ୍ଦିବା କଣ୍ଠରେ) ଖୁଣ୍ଟଟା ଭଳି ଠିଆ ହୋଇ ରହିଛୁ ଚିତୁ - ତାକୁ ଛଡା...... ।

ଚିତ୍ରୁ (ଯୁବକକୁ ଧରି ଟାଣିବାକୁ ଚେଷ୍ଟା କରନ୍ତି) ହଇଓ ବାବୁ ସେ ଗୋଡଟା ତାଙ୍କର ଗୋଦରା ପୁଣି ପୂଜ ପାଣିରେ ଭର୍ତ୍ତି ହେଇଛି । ଛାଡିଦିଅ ...... ।

**(ବୁଦ୍ଧିମାନ ଚିତ୍ରଗୁପ୍ତଙ୍କୁ ଠେଲିଦିଏ ଓ ପୁଣି ସେ ଗୋଡକୁ ଧରିନିଏ)**

ଧର୍ମ : ଓଃ.... ହୋ.... ହୋ.... ପିଣ୍ଡରୁ ପ୍ରାଣଟା ଉଡିଗଲାରେ ଚିତୁ ।

ବୁଦ୍ଧିମାନ : ଆପଣ ସମସ୍ତଙ୍କ ପିଣ୍ଡରୁ ପ୍ରାଣ ନେଇ ଯାଆନ୍ତି । ହେଲେ ଆପଣଙ୍କ ପ୍ରାଣ କେହି ନେଇ ପାରନ୍ତିନି । ମୋ କଥା ନ ବୁଝିଲେ କେବେ ହେଲେ ଛାଡିବିନି ।

**(ପୁଣି ଗୋଡକୁ ଧରି ସେଇ ଗୋଦରା ଗୋଡ ଉପରେ ମୁଣ୍ଡକୁ ବାଡେଇବାରେ ଲାଗେ)**

ଧର୍ମ : ଗଲା - ଗଲା - ସବୁ ଗଲା .....ଛାଡିଲି ବାବା ତୋତେ ଛାଡି ଦେଲି ।

ବୁଦ୍ଧିମାନ : କିଛି ବୁଝିପାରିଲିନି ପ୍ରଭୁ । କଣଟା ଛାଡିଦେଲେ ?

ଧର୍ମ : ତୁମକୁ କ୍ଷମା କରିଦେଲି । ତୁମର ମୃତ୍ୟୁ ଯୋଗକୁ ଘୁଞ୍ଚେଇ ଦେଲି ।

ବୁଦ୍ଧିମାନ : କେତେ ବର୍ଷ ଆଜ୍ଞା ?

ଧର୍ମ : କେତେ ବର୍ଷ ? ଅନେକ ବର୍ଷ । ଏଇ ସୃଷ୍ଟି ଶେଷ ହେବା ଯାଏ । ମୋ



Digitized by PPRACHIN, SOA

ବାପାଟିରେ ମୋ ଗୋଡଟା ଛାଡିଦେ ... ଏଥର ... ଆଃ... ଆଃ... (ବୁଦ୍ଧିମାନ ଗୋଡଟିକୁ ଆଗରୁ ଟାଣିଧରିଥିଲା ବର୍ତ୍ତମାନ ଫୋପାଡିଲା ଭଳି ଠେଲିଦେଇ ଛାଡିଦେଲା । ଏମିତି କାର୍ଯ୍ୟରେ ଧର୍ମରାଜ ହଠାତ୍ ପ୍ରବଳ ଚିତ୍କାର କରି ଉଠିଲେ । ପୁଣି ବେହୋସ ହେଲା ଭଳି ଆଖି ବନ୍ଦ କରି ସିଂହାସନ ଉପରେ ପଡି ରହିଲେ । ଚିତ୍ରଗୁପ୍ତ ଏମିତି ଅବସ୍ଥା ଦେଖି ଗୋଟିଏ ପଙ୍ଖା ଆଣି ବିଞ୍ଚିବାକୁ ଲାଗିଲେ ଓ କିଛି ସମୟ ପରେ ବଡ କଅଁଳ କଣ୍ଠରେ ଡାକିଲେ)

ଚିତୁ : (କୋମଳ କଣ୍ଠରେ) ପ୍ରଭୁ ... ଆପଣଙ୍କର କ'ଣ ହେଲା ପ୍ରଭୁ ।

ଧର୍ମ : (ହଠାତ୍ ଚିତ୍କାର କରି) ଚୋପ୍ । ଚିକ୍କଣିଆ କରି କହିଲା ପ୍ରଭୁ । ଟୋକାଟା ଏତେ ଜୋରରେ ମୋ ଗୋଡଟା ଚିପି ଧରିଛି ତାକୁ ଛଡେଇ ଦେଇପାରିଲୁନି । କହିଲା କ'ଣ ହେଲା ପ୍ରଭୁ । ଭାଗ୍ - ମୋ ସାମନାରୁ ପଳେଇ ଯା...... ।

ବୁଦ୍ଧିମାନ : ମୋ ଯୋଗୁ ଆପଣ ବହୁତ କଷ୍ଟ ପାଇଲେ ପ୍ରଭୁ । ଆପଣଙ୍କର ସେ ଗୋଡଟା ଅଦରବା ବୋଲି ମୋତେ ଜଣାନଥିଲା - ମୋତେ excuse କରି ଦିଅନ୍ତୁ ପ୍ରଭୁ । please.

ଧର୍ମ : ଇନ୍ଦ୍ର ଅଭିଶାପରେ ମୋ ଗୋଡରୁ ଦିନ ରାତି ପୂଜପାଣି ବାହାରୁଛି । ଦୁନିଆ ସାରା ଜାଣିଛନ୍ତି । ତୁମେ କେମିତି ଜାଣିପାରିଲନି । ଓହୋଃ ଏବେ ଟିକିଏ ଆରାମ ଲାଗିଲା ।

ଚିତୁ : ଏଇ ଚିପାଚିପିରେ ଗୁଡେ ପୂଜପାଣି ବାହାରି ଯାଇଛିତ ପ୍ରଭୁ । ଏଥର ବହୁତ ଆରାମ ଲାଗିବ । ମ୍ୟାଡମ କହୁଥିଲେ ସେ ଗୋଡଟାକୁ ଧୂଆଧୋଇ କରି ଡ୍ରେସିଂ କରିବାକୁ ଆପଣ ମନ୍‌ରୁ ଦେଖଉ ନାହାଁନ୍ତି । ସେଇଥିପାଇଁ ପୂଜ ପାଣି ବାହାରି ଯିବାର ଦେଖିଁ ଏ ବାବୁଙ୍କୁ ମୁଁ ମନ୍‌ରୁ ଛଡେଇଲିନି ।

ଧର୍ମ : ଚୋପ୍ । ତୋତେ କଥାବାର୍ତ୍ତା କରିବାକୁ କିଏ କହୁଛି ।



Digitized by PPRACHIN, SOA

ବୁଦ୍ଧିମାନ : ସ୍ୱୟଂ ଧର୍ମରାଜ ହୋଇ ଏ ଗୋଡଟା ପାଇଁ ଆପଣ ଏତେ ଭୋଗୁଛନ୍ତି। ତା'ର ଚିକିତ୍ସା କରୁନାହାଁନ୍ତି କାହିଁକି ?

ଧର୍ମ : ଚିକିତ୍ସା କରୁନି। କେତେ ବର୍ଷ ଆଉ କରିବି। ସେଇ ସୃଷ୍ଟି ଆରମ୍ଭରୁ କରିଛି - କେତେ ଡାକ୍ତର ବୈଦ୍ୟ ଦେଖିଲେଣି।

ବୁଦ୍ଧିମାନ : କେହି ଠିକ୍ କରିପାରୁ ନାହାଁନ୍ତି।

ଧର୍ମ : ନାଇଁରେ ବାବା କେହି ନୁହେଁ। ଯେତେ ଯାହା ଔଷଧ ପଥି ଖାଇଲେ ବି ଘା'ର ପାଚିବା କମୁନି କି ପୂଜପାଣି ବି କମୁନି।

ବୁଦ୍ଧିମାନ : ତା'ମାନେ ସେଇଟା ପୁରାପୁରି ସେପ୍ଟିକ୍ ହେଇ ଗଲାଣି। ପ୍ରବଳ ଯନ୍ତ୍ରଣା ସହିବା ଅପେକ୍ଷା ଆମ୍ପୁଟେସନ୍ କରୁ ନାହାଁନ୍ତି କାହିଁକି ?

ଧର୍ମ-ଚିତ୍ରୁ : ଆମ୍ପୁଟେସନ୍ ?

**(ଆମ୍ପୁଟେସନ୍ ଶବ୍ଦଟି ଯେମିତି ବାରମ୍ବାର ପ୍ରତିଧ୍ୱନିତ୍ୱ ହେବାକୁ ଲାଗେ.....)**

ବୁଦ୍ଧିମାନ : ଏଇଠି ସର୍ଗରେ ତା'ହେଲେ medical science କିଛି ଆଗେଇନି ଦେଖୁଛି। ଆମ୍ପୁଟେସନ୍ ମାନେ-ଏଇ ଅକାମି ଗୋଡକୁ ମୂଳରୁ କାଟି ଉଡେଇ ଦେବାକୁ ହେବ।

ଧର୍ମ : ମୂଳରୁ କାଟି ଉଡେଇ ଦେବାକୁ ହେବ ମୋ ପ୍ରାଣ ରହିବ ଟି ?

ବୁଦ୍ଧିମାନ : ଏ ଗୋଡଟା ଆପଣଙ୍କର କୌଣସି କାମରେ ଲାଗୁନି ଅଥଚ ଯନ୍ତ୍ରଣା ଦେଇ ଆପଣଙ୍କୁ ହଇରାଣ କରି ଚାଲିଛି। ଦୁଷ୍ଟ ଗୋରୁ ଅପେକ୍ଷା ଶୂନ୍ୟ ଗୁହାଳ କ'ଣ ଭଲ ନୁହେଁ ?

ଧର୍ମ : ହଁ ଯେ ବାବା ଏଟାକୁ କାଟିବି କେମିତି, ପୁଣି ସେ ଘା ଶୁଖିବ କେମିତି ?

ବୁଦ୍ଧିମାନ : ସବୁ ହୋଇପାରିବ। ଆମ ମର୍ତ୍ତ୍ୟର ଡାକ୍ତରମାନଙ୍କ ନିକଟରେ ଏ ସବୁ ବାଁ ହାତର ଖେଳ। ଆମର କୌଣସି ଅଙ୍ଗ ଖରାପ ହେଇଗଲେ ଆମେ ତାକୁ ମୂଳରୁ ଉଡେଇ ଦେଇ ତା ସ୍ଥାନରେ ଏକ କୃତ୍ରିମ ଅଙ୍ଗ ଲଗେଇ ଦେଉ।

ଧର୍ମ : ମାନେ ?



Digitized by PPRACHIN, SOA

ବୁଦ୍ଧିମାନ : ହୃତପିଣ୍ଡ, ଫୁସ୍‌ଫୁସ୍, ଯକୃତ - every thing ଆମେ ବଦଳେଇ ଦେଇପାରିଛୁ ଇଏତ ସାମାନ୍ୟ ମାତ୍ର । ଆପଣ ମୋ ସହିତ ମର୍ତ୍ତ୍ୟକୁ ଚାଲନ୍ତୁ ଓଲଟପୁର Artificial limb center ରେ ଏ ଗୋଡକୁ କାଟି ନୂଆ ଗୋଡ ବଦଳେଇ ଦେବା । ନଚେତ୍ ବର୍ତ୍ତମାନ କ୍ଲୋନିଂ ପଦ୍ଧତି ଆବିଷ୍କାର ହେଲାଣି । ସେ ପଦ୍ଧତିରେ ଚିକିତ୍ସା କଲେ ସେହି ସ୍ଥାନରେ ନୂଆ ଗୋଡ ଗୋଟେ କଅଁଳିବ ।

ଧର୍ମ : ଏ ସବୁ କ'ଣ ସମ୍ଭବ ଚିତ୍ରୁ ?

ଚିତ୍ରୁ : ମର୍ତ୍ତ୍ୟରେ ବର୍ତ୍ତମାନ ସବୁ ସମ୍ଭବ ପ୍ରଭୁ ।

ଧର୍ମ : ମୋ ଗୋଡଟା ଭଲ ହେଇଯିବତ ବାବୁ ?

ବୁଦ୍ଧିମାନ : ପ୍ରଥମେ medicine ଦେଇ ଭଲ କରିବାକୁ ଚେଷ୍ଟା ଚାଲିବ । ନ ହେଲେ ଆମ୍ପୁଟେସନ୍ କରି ନୂଆ ଗୋଡ ଲାଗିବ ।

ଧର୍ମ : କିନ୍ତୁ ଅଭିଶାପ ? ସେତ ଫଳିବ ହିଁ ଫଳିବ । ନୂଆ ଗୋଡଟା ପୁଣି ଯଦି ପଚା ପଚି କରିବ ?

ବୁଦ୍ଧିମାନ : (ହସି ଉଠି) କାଠ ବା ପ୍ଲାଷ୍ଟିକର ଗୋଡ ସାମାନ୍ୟ କୁଣ୍ଡେଇ ବି ହବନି, ପଚିବାର ପ୍ରଶ୍ନ କଉଠି ଉଠୁଛି ।

ଧର୍ମ : ଦେଖୁଛ ତ ଗୋଡଟାରେ ହାତ ଦେଉ ଦେଉ କେମିତି କଷ୍ଟ ହେଉଛି । କାଟି ଦେଲେ ବଞ୍ଚିବି ଟି ?

ବୁଦ୍ଧିମାନ : (ହସ) ଆନେସ୍ଥେସିଆ ଦେଇ କଟାଯିବ । ଆପଣ କିଛି ଜାଣି ପାରିବେନି ।

ଚିତ୍ରୁ : ଠିକ୍ କଥା ଆଜ୍ଞା । ଅକ୍ଷରେ ଅକ୍ଷରେ ସତ୍ୟ । ଆପଣ ଦେଖୁଥିବେ ଆପଣଙ୍କ ଗୋଡ କଟା ହେଉଥିବ ।

ଧର୍ମ : ତା'ହେଲେ ଆଉ ଅପେକ୍ଷା କାହାକୁ ଚିତ୍ରୁ । ଚାଲ ବର୍ତ୍ତମାନ ବାହାରିଯିବା । ଶୁଭସ୍ୟ ଶୀଘ୍ରଂ ।

ବୁଦ୍ଧିମାନ : କ'ଣ ଏମିତି ବେଶରେ ?

ଧର୍ମ : କାହିଁକି - ଏ ବେଶଟା କିଛି ଅସୁବିଧା ଲାଗୁଛି ?

ବୁଦ୍ଧିମାନ : ଏମିତି ବେଶରେ ଗଲେ ଆପଣ ରାସ୍ତାରେ ଚାଲିପାରିବେନି । film



Digitized by PPRACHIN, SOA

shooting ହେଉଛି ଭାବି ସମସ୍ତେ ଆପଣଙ୍କ ପଛେ ପଛେ ଗୋଡେଇବେ ।

ଚିତୁ : ସତକଥା ହଜୁର । ପ୍ରଥମେ ପ୍ରଥମେ ଥରେ ଏଇ ସବୁ ପୋଷାକ ପିନ୍ଧି ମୁଁ ଚାଲି ଯାଇଥିଲି । ରାସ୍ତାରେ ମୋ ରୂପ ଦେଖି ଦିଟା ବୁଲା କୁକୁର ଯାହା ଅବସ୍ଥା କରିଛନ୍ତି ମୁଁ କେବେ ଭୁଲି ପାରିବନି ।

ଧର୍ମ : ତେବେ ?

ବୁଦ୍ଧିମାନ : କୌଣସି ଅସୁବିଧା ହବନି । ମୋ ସହିତ ପ୍ରଥମେ ଯାଇ ଆପଣ ମୋ ଘରେ ଅପେକ୍ଷା କରିବେ । ମୁଁ ଆପଣମାନଙ୍କୁ ନୂଆ dress ପିନ୍ଧେଇ ଦେଇ hospital ନେଇଯିବି ।

ଧର୍ମ : ଆହାଃ ହାଃ - ଅତି ଚମତ୍କାର ବ୍ୟବସ୍ଥା ... ଉଠୁ ଚିତୁ ... ଆଉ ସମ୍ଭାଳି ହବନି ।

ଚିତୁ : ପ୍ରଭୁ ଆଜିର ଦରବାର କାର୍ଯ୍ୟ ଶେଷ ନକରି କ'ଣ ଯାଇହେବ । ବରଂ ଏଇ ବୁଦ୍ଧିମାନ ବାବୁଙ୍କୁ ଆମ ବିଶ୍ରାମ କକ୍ଷରେ ଟିକିଏ ବସେଇ ଦେବା । ଦରବାର ଶେଷ ହେଲେ ଯିବା ।

ବୁଦ୍ଧିମାନ : O.K. ମୋତେ ବି ବଡ କ୍ଳାନ୍ତ ଲାଗୁଛି । Let me have some rest. ଗୋଟେ ଦିଟା ପେଗ୍ ହେଇଗଲେ ....। ଆପଣଙ୍କର ଏଇଠି ସୋମରସ ବୋଲି ଗୋଟେ ଲିକର୍ ମିଳେନା ?

ଚିତୁ : ମୋ ସହିତ ଆସନ୍ତୁ । ସେ ବିଶ୍ରାମ କକ୍ଷରେ ସବୁ ଜିନିଷର ବ୍ୟବସ୍ଥା ଅଛି ।

**(ଚିତ୍ରଗୁପ୍ତ ଓ ବୁଦ୍ଧିମାନ ଚାଲିଗଲେ । ପରେ ପରେ ଚିତ୍ରଗୁପ୍ତ ଫେରିଆସିଲେ)**

ଧର୍ମ : ବସେଇ ଦେଇ ଆସିଲୁ ଚିତୁ ।

ଚିତୁ : ପ୍ରଭୁ । ସେ ବନ୍ଧୁଆ ପାଖରେ ବିଶ୍ରାମ କକ୍ଷରେ ବସେଇ ଦେଇ ଆସିଲି । ଦରବାର ଶେଷରେ ସେମାନଙ୍କର ଉଚିତ୍ ଦଣ୍ଡର ବ୍ୟବସ୍ଥା କରିବା ।



Digitized by PPRACHIN, SOA

ଧର୍ମ : ସେଇଟା କେତେ ଚାଲାଖ ଦେଖିଲୁ । ପୁଣି ମର୍ତ୍ତ୍ୟକୁ ଫେରିଯିବା ବାହାନରେ ମୋତେ ଅପରେସନ୍ କରିବାକୁ ପ୍ରସ୍ତାବ ଦେଉଛି ।

ଚିତ୍ରୁ : ଚତୁରତା ଆଉ ଲୋଭର ଅତି ସୀମାକୁ ଯାଇ ମଣିଷ ଆଜି ହିତାହିତ ଜ୍ଞାନ ଭୁଲିଯାଉଛି ପ୍ରଭୁ । ସବୁକିଛି ଉପଭୋଗ କରିବାର କ୍ଷୁଧା ଆଉ ବୈଜ୍ଞାନିକମାନଙ୍କର ନୂଆ କିଛି ଆବିଷ୍କାର କରିଦେଖାଇବାର ଲୋଭ ଏ ପୃଥିବୀକୁ ଧ୍ୱଂସ ଆଡକୁ ଟାଣି ନେଉଛି । ସେମାନେ ମଣିଷର ସୁଖ ସୁବିଧା ପାଇଁ ଯେତେ ଯାହା ବାହାର କରିଚାଲିଛନ୍ତି ତା' ଅପେକ୍ଷା-ମଣିଷ ତଥା ଜୀବଜଗତକୁ ଧ୍ୱଂସ କରିବାକୁ ତା ଠାରୁ ଅଧିକ ମାରାତ୍ମକ ଅସ୍ତ୍ର ଆବିଷ୍କାର କରି ଚାଲିଛନ୍ତି ।

ଧର୍ମ : ହଁ ମଣିଷ ଦୟା, କ୍ଷମା, ମମତା, ସେବା, ଶ୍ରଦ୍ଧା ଭଳି ମାନବୀୟ ଗୁଣର ବିକାଶ ପାଇଁ ଗବେଷଣା କରିବା ପରିବର୍ତ୍ତେ ହିଂସା, ଦ୍ୱେଷ, ଯୁଦ୍ଧ, ସଂହାରର ବିକାଶ ପାଇଁ କାମ କରି ଚାଲିଛି । ତା' ଜ୍ଞାନ ଓ ବୁଦ୍ଧିର ଅପ ପ୍ରୟୋଗ କରି ଆଜି ଭସ୍ମାସୁର ହେବାକୁ ବସିଛନ୍ତି । ମୁଁ ଏମାନଙ୍କୁ ଠିକ୍ ଦଣ୍ଡ ଦେବି ।

(ଦୂତ ଶୂଳପାଣି ପ୍ରବେଶ କରିଛି)

ଶୂଳପାଣି : ଆପଣଙ୍କୁ ସାକ୍ଷାତ କରିବାକୁ କ୍ଷିତିମାତା, ଅପ, ତେଜ, ମରୁତ ଓ ବ୍ୟୋମ ଆଦି ଦେବଗଣ ବାହାରେ ଅପେକ୍ଷା କରିଛନ୍ତି ପ୍ରଭୁ ।

ଧର୍ମ : ମୋତେ ଦେଖା କରିବାକୁ ପଞ୍ଚ ଭୂତ ଏକ ସମୟରେ ଆସିଛନ୍ତି । ଯାଅ ଚିତ୍ରଗୁପ୍ତ ସସମ୍ମାନ ସେମାନଙ୍କୁ ପାଛୋଟି ଆଣ ।

**(ଚିତ୍ରଗୁପ୍ତ ଓ ଶୂଳପାଣି ଚାଲିଗଲେ । ପରେ ପରେ ପଞ୍ଚଭୂତଙ୍କୁ ନେଇ ଚିତ୍ରଗୁପ୍ତ ପ୍ରବେଶ କଲେ । କ୍ଷିତି ମାତାଙ୍କ ଦେହସାରା କ୍ଷତ ଚିହ୍ନ । ଅପ୍‌ଙ୍କର ସମଗ୍ର ଶରୀରର ରଙ୍ଗ ଠାଏ ଠାଏ କଳା ହୋଇଯାଇଛି । ମରୁତ ଯେମିତି ଶ୍ୱାସ ରୋଗରେ ଆକ୍ରାନ୍ତ । ବ୍ୟୋମଙ୍କ ଶରୀରରେ ଶରବିଦ୍ଧ ହେଲା ଭଳି ଚିହ୍ନ । ଅଗ୍ନିଙ୍କ ଦେହକୁ ଗୋଟିଏ ଶକ୍ତ ରଜ୍ଜୁ ଦ୍ୱାରା ବନ୍ଧା ଯାଇଛି )**



Digitized by PPRACHIN, SOA

ଧର୍ମ : ହେ ଦେବ - ମୁଁ ଆପଣମାନଙ୍କୁ ଏ କି ଅବସ୍ଥାରେ ଦେଖୁଛି ।

ବ୍ୟୋମ : ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ଧର୍ମରାଜ.... ଆମ୍ଭମାନଙ୍କର ଜୀବନ ଆଜି ସଂକଟାପର୍ଣ୍ଣ ।

ତେଜ : ଆମେ କ୍ଷିତ, ତେଜ, ଅପ୍, ମରୁତ, ବ୍ୟୋମ ସମସ୍ତେ ଆଜି ମଣିଷ ଖିଆଲର ଶିକାର ହେଇଛୁ ।

କ୍ଷିତ୍ : ମୁଁ କ୍ଷିତ୍ ସମଗ୍ର ଜୀବଜଗତକୁ ମା ରୂପରେ ଧାରଣ କରିଛି ଓ ଲାଳନ ପାଳନ କରି ଆସୁଛି । ହେଲେ ମଣିଷ ଆଜି ମୋ ବକ୍ଷ ବିଦୀର୍ଣ୍ଣ କରି ଖଣିଜ ସଂପଦ ଲୁଟି ନେବା ସଂଗେ ସଂଗେ ପରମାଣୁ ବୋମା ପରୀକ୍ଷା ନାଁରେ ମୋ ଗର୍ଭ ଜାଳି ଦେଉଛି । ଆଜି ଉଦର ମୋର ରୋଗାକ୍ରାନ୍ତ । ପ୍ରିୟ ପୁତ୍ର ଯତ୍ନ ନେବା ପରିବର୍ତ୍ତେ ମା'ର ବକ୍ଷରେ ପଦାଘାତ କରୁଛି ।

ଅପ୍ : ମୁଁ ଅପ୍, ସୃଷ୍ଟିର ସମସ୍ତଙ୍କ ଭିତରେ ଜଳ ବନାମ ଜୀବନ ରୂପରେ ବିଦ୍ୟମାନ ହୋଇ - ସମସ୍ତଙ୍କର ସେବା କରି ଆସୁଥିଲି । ମହାସମୁଦ୍ର ହୋଇ ପୃଥିବୀ ବକ୍ଷକୁ ମେଘରାଶି ପଠାଇ ଖାଦ୍ୟ ସୃଷ୍ଟିରେ ସାହାଯ୍ୟ କରୁଥିଲି । ହେଲେ ମଣିଷ ତା'ର ସାର୍ଥ ପାଇଁ ମୋ ଭିତରେ ଥିବା ସମସ୍ତ ପ୍ରାଣୀଙ୍କୁ ମାରି ଚାଲିଛି । ମୋ ଜଳରେ ବିଷାକ୍ତ ତୈଳ ଢାଳି ଦେଉଛି । ପୃଥିବୀ ବକ୍ଷର ସମସ୍ତ ଆବର୍ଜନା ମୁଁ ଆଉ ସହି ପାରୁନି ପ୍ରଭୁ । ମଣିଷ କବଳରୁ ମୋତେ ରକ୍ଷା କରନ୍ତୁ ।

ତେଜ : ମୁଁ ତେଜ....ମୁଁ ଅଗ୍ନି । ମୁଁ ସୂର୍ଯ୍ୟ ମୁଁ ଆଲୋକ ମୁଁ ପ୍ରକାଶ । ମଣିଷ ଆଜି ମୋତେ ଆତଙ୍କ ପୂର୍ଣ୍ଣ ମାରଣାସ୍ତ୍ର ବୋମା ଦେହରେ ବନ୍ଦ କରି ରଖିଛି, ଅନ୍ୟ ମଣିଷ ଉପରେ ତା'ର କ୍ଷମତା ଜାହିର କରିବାକୁ । ସାଧାରଣ ମଣିଷ ହାତରେ ମୁଁ ଆଉ ଖେଳନା ହୋଇ ରହିପାରିବିନି ପ୍ରଭୁ । ମୋତେ ବନ୍ଧନ ଭିତରୁ ମୁକ୍ତ କରନ୍ତୁ ।

ମରୁତ : ମୁଁ ମରୁତ - ପ୍ରତ୍ୟେକ ପ୍ରାଣୀଙ୍କର ବକ୍ଷରେ ପ୍ରାଣ ରୂପରେ ପ୍ରବାହିତ ହେଉଅଛି । ସଭ୍ୟତା ନାଁରେ ବିଭିନ୍ନ କଳକାରଖାନା, ଗାଡି ମଟରର ବିଷାକ୍ତ ଧୂମ୍ରରେ ମଣିଷ ମୋତେ ଆଜି ଶ୍ୱାସ ରୋଗୀରେ ପରିଣତ



Digitized by PPRACHIN, SOA

କରାଇଛି । ଅସମର୍ଥ ଶରୀର ନେଇ ମୁଁ ଆଉ ଜୀବଜଗତର ସେବା କରିପାରିବିନି ପ୍ରଭୁ ।

ବ୍ୟୋମ : ସମସ୍ତଙ୍କର ଉଦ୍ଧରେ ମୁଁ ବ୍ୟୋମ ମଣିଷ କବଳରୁ ବଞ୍ଚିଯିବି ବୋଲି ଆଶା କରିଥିଲି । ହେଲେ ମଣିଷ ଦ୍ୱାରା ପ୍ରେରିତ ରକେଟ୍‌ର ଭଗ୍ନ ଖଣ୍ଡ ମୋ ଦେହରେ ଶରବିଦ୍ଧ କଲା ଭଳି ମୋତେ ଯନ୍ତ୍ରଣା ଦେଉଛି ପ୍ରଭୁ । ଜୀବାଣୁ ବୋମାର ପରୀକ୍ଷାରେ ମୁଁ ଆଜି ହଳାହଳ ବିଷ ଜ୍ୱାଳାର ଶିକାର ହୋଇଛି । ପ୍ରଖର ସୂର୍ଯ୍ୟର ବିଷାକ୍ତ କିରଣକୁ ପାନ କରି ଜୀବଜଗତକୁ ମୁଁ କୋମଳ ରଶ୍ମି ପ୍ରେରଣ କରୁଥିଲି । କିନ୍ତୁ ମଣିଷ ଆଜି ଆମ୍ଭମାନଙ୍କୁ ଆକ୍ରମଣ କରି କ୍ଷତ ବିକ୍ଷତ କରିଦେଇଛି ।

କ୍ଷିତ୍
ଅପ୍
ତେଜ
ମରୁତ
ବ୍ୟୋମ — (କୋରସ) ଆମକୁ ରକ୍ଷା କରନ୍ତୁ ପ୍ରଭୁ । ମାନବ ସମାଜର ଆକ୍ରମଣରୁ ଆମକୁ ବଞ୍ଚାନ୍ତୁ ।

ଧର୍ମ : ହଁ, ଆକ୍ରମଣର ପ୍ରତି ଆକ୍ରମଣ ହେଉଛି ସୃଷ୍ଟିର ନିୟମ । ଆମେ ସମସ୍ତେ ମିଶି ଆମକୁ ରକ୍ଷା କରିବା । ମଣିଷ ଆଜି ଅତ୍ୟଧିକ ବୁଦ୍ଧିରେ ଅନ୍ଧ ହୋଇ ମାଟି, ପାଣି, ପବନ, ଅଗ୍ନି, ଆକାଶ ସମସ୍ତଙ୍କୁ ଦାସ ରୂପରେ ବ୍ୟବହାର କରି ବୃକ୍ଷ, କୀଟ, ପତଙ୍ଗଙ୍କୁ ଏ ସୃଷ୍ଟିରୁ ବିଦାୟ କରି ଏକମାତ୍ର ସମ୍ରାଟ ହେବାକୁ ବସିଛି । ସେ ମଣିଷ ସ୍ତରରୁ ସର୍ବଗ୍ରାସି ରାକ୍ଷାସ ସ୍ତରକୁ ଓହ୍ଲେଇ ଆସି ରାବଣ, ମହିଷାସୁର ଭଳି ଆସୁରିକ ଇଚ୍ଛା ନେଇ ସର୍ଗ ଅଧିକାର କରିବାକୁ ଉଦ୍ୟମ ଚଳେଇଛି । ହେଲେ ଆଉ ନୁହେଁ ଦେବଗଣ, ମଣିଷର ଏ ଔଦ୍ଧତ୍ୟ ଆଉ ବରଦାସ୍ତ କରିହବନି । ତୁମେମାନେ ପ୍ରସ୍ତୁତ ହୋଇ ରୁହ । ମଣିଷ ସମାଜ ଆଜି ମୋର ଏଇ (ଗୋଦରା ଗୋଡକୁ ଦେଖାଇ) ରୋଗ ଗ୍ରସ୍ତ ଅଙ୍ଗ ଭଳି ଏ ସୃଷ୍ଟିର ଏକ ବିକୃତ ବିକଳାଙ୍ଗ ଅଙ୍ଗ । ମଣିଷ ଯେମିତି କୌଣସି ବିକୃତ ଅଙ୍ଗକୁ



Digitized by PPRACHIN, SOA

ଚିକିତ୍ସା କରିବାକୁ ଯାଇ ସେ ଅଙ୍ଗକୁ କାଟି ନୂତନ ଅଙ୍ଗ ଲଗାଇ ଦେବାର କୌଶଳ ଉଦ୍ଭାବନ କରିଛି, ସେମିତି ଆଜି ବିକୃତ ବିକଳାଙ୍ଗ ଏଇ ମଣିଷ ଜାତିକୁ ଚିକିତ୍ସା ନକରି କାଟି ଫୋପାଡି ଦେବାପାଇଁ ତିଆରି ହୋଇଯାଅ । ଏ କଦର୍ଯ୍ୟ ପୃଥିବୀକୁ ନୂତନ ରୂପ ଦେବାକୁ ପ୍ରଳୟକୁ ଆସିବାକୁ ଦିଅ......। ବନ୍ୟା, ବାତ୍ୟା, ଭୂମିକମ୍ପ, ବଜ୍ରପାତ, ଅଗ୍ନି ଉତ୍ପାତ ଭଳି ଅସ୍ତ୍ର ଏକ ସଂଗରେ ପ୍ରୟୋଗ କର । ଏ ।ଦେଶ ତତ୍‌କ୍ଷଣାତ୍ କାର୍ଯ୍ୟକାରୀ ହେଉ ।

**(ଯନ୍ତ୍ର ସଂଗୀତର ତାଳେ ତାଳେ କ୍ଷିତିମାତା ତାଣ୍ଡବ ନୃତ୍ୟ ଆରମ୍ଭ କରି ଦିଅନ୍ତି । ତାଙ୍କ ସହିତ ଯୋଗ ଦିଅନ୍ତି ଅନ୍ୟ ଦେବଗଣ । ନୃତ୍ୟ ସହିତ ଭୂମିକମ୍ପ, ମେଘ ଗର୍ଜନ, ଝଡ ବାତ୍ୟାର ପ୍ରକୋପ ହୁଏ । ଜୀବଜନ୍ତୁ ଓ ମଣିଷମାନଙ୍କର ଆର୍ତ୍ତ ଚିତ୍କାର ଶୁଣାଯାଏ । କୌଣସି ଏକ ବମ୍‌ର ବିସ୍ଫୋରଣ ପରେ ସବୁ ଯେମିତି ନୀରବ ହୋଇଯାଏ । ମଞ୍ଚ ଅନ୍ଧାର ହୋଇ ପୁଣି ଆଲୋକିତ ହେଲାବେଳକୁ ଦେଖାଯାଏ ସ୍ତୂପ ସ୍ତୂପ ମଣିଷମାନଙ୍କର ଶବ ।)**

ଘୋଷଣା : (ଅନ୍ତରାଳରୁ) ହେ ମନୁଷ୍ୟ, ଖଣ୍ଡପ୍ରଳୟ ତା କରାଳ ରୂପ ଦେଖାଇବା ଆରମ୍ଭ କରିଦେଲାଣି । ସଂପୂର୍ଣ୍ଣ ପ୍ରଳୟ ଆସନ୍ନ ପ୍ରାୟ । ଏ ସୁନ୍ଦର ପୃଥିବୀକୁ ରକ୍ଷା କରିବାକୁ ତଥାପି ସମୟ ଅଛି । ତୃଣ ଠାରୁ ମହାଦ୍ରୁମ ପର୍ଯ୍ୟନ୍ତ, ସୂକ୍ଷ୍ମ କୀଟ ଠାରୁ ମହାକାୟ ଜୀବଜନ୍ତୁ ସମସ୍ତେ ଏ ବସୁଧାର ଗୋଟିଏ କୁଟୁମ୍ବ । ଗୋଟିଏ ପରିବାରର ଏକ ଏକ ସଦସ୍ୟ । ମନୁଷ୍ୟ ହେଉଛି ଏ ପରିବାରର ମୁରବୀ । ତେଣୁ ଆସନ୍ନ ପ୍ରଳୟ ମୁହଁରୁ ଏ ଧରାକୁ ରକ୍ଷା କରିବାର ଦାୟିତ୍ୱ ତାକୁ ହିଁ ନବାକୁ ହେବ । ଉଠ, ଜାଗ୍ରତ ହୁଅ । ଏବେଠାରୁ ଏଇ ମୁହୂର୍ତ୍ତରୁ ... କାମ ଆରମ୍ଭ କରିଦିଅ । ଉଠ । ନଚେତ୍ ଆସନ୍ନ ପ୍ରଳୟ ଦ୍ୱାରା ସବୁକିଛି ନଷ୍ଟ ହୋଇଯିବ ।





Digitized by PPRACHIN, SOA

## କଳାପରିଷଦ,ଢେଙ୍କାନାଳ ଦ୍ୱାରା ବିଭିନ୍ନ ସମୟରେ ପରିବେଷିତ 'ଆସନ୍ନ ପ୍ରଳୟ' ନାଟକରେ ଭାଗ ନେଇଥିବା ଶିଳ୍ପୀମାନେ...

| ଚରିତ୍ର | | ଶିଳ୍ପୀଙ୍କ ନାମ |
|---|---|---|
| ଧର୍ମରାଜ | : | ଶଶିଭୂଷଣ ପାଣି |
| ଚିତ୍ରଗୁପ୍ତ | : | ସୁରେଶ ମହାନ୍ତି |
| ବୁଦ୍ଧିମାନ | : | ବୌଦ୍ଧ ଶଙ୍କର ସାଇଁ/ହିମାଂଶୁ ପଣ୍ଡା |
| ବନ୍ଧୁଆ | : | ଶତ୍ରୁଘ୍ନ ମାଟି |
| ଅପ | : | ପ୍ରବୀର ମହାନ୍ତି |
| ତେଜ | : | ବିଷ୍ଣୁ ମହାରଣା |
| ମରୁତ | : | ବିଭୂତି ନନ୍ଦ |
| ବ୍ୟୋମ | : | କିଶୋର ରାଉତ |
| ମୂଷିଦନ୍ତ | : | ବିଚ୍ଛନ୍ଦ ମହାପାତ୍ର/ସଂଜୟ ସାହୁ |
| ଶୂଳପାଣି | : | ଇନ୍ଦ୍ରମଣି ବେହେରା |
| ଦଣ୍ଡପାଣି | : | ଦିଲିପ କୁମାର ସାହୁ |
| *ନାଟ୍ୟକାର | : | ଦିପ୍ତିକାନ୍ତ ପତି |
| *ନିର୍ଦ୍ଦେଶକ | : | ସତ୍ୟନାରାୟଣ ପଣ୍ଡା |
| କ୍ଷିତିମାତା | : | ଶର୍ମିଳି ବୋଷ/ସୂଚୀସ୍ମିତା ପଟ୍ଟନାୟକ |

**ଅନ୍ତରାଳେ**

| | | |
|---|---|---|
| ସଂଗୀତ | : | ମଣ୍ଟୁ ଓ ପିଣ୍ଟୁ (ପି.କେ.ମହାନ୍ତି ଓ ପି.କେ ମହାନ୍ତି) |
| ରୂପସଜ୍ଜା | : | ରାମକୃଷ୍ଣ ଚିତ୍ରାଳୟ, କଟକ |
| ଆଲୋକ | : | କୁମାର ଲାଇଟ୍/ରାମକୃଷ୍ଣ ଚିତ୍ରାଳୟ |
| ମଞ୍ଚସଜ୍ଜା | : | ପ୍ରବୀର ମହାନ୍ତି |
| ନୃତ୍ୟନିର୍ଦ୍ଦେଶନା | : | ସୁବାସ ଚନ୍ଦ୍ର ସାଇଁ |
| ନିର୍ଦ୍ଦେଶନା | : | **ଦିଲ୍ଲୀଶ୍ୱର ମହାରଣା** |

•

ତା-୨୦.୧୨.୧୯୯୦- ଶହିଦ ଭବନ, କଟକ
ଓଡ଼ିଶା ସଂଗୀତ ନାଟକ ଏକାଡେମୀ ନାଟକ ଉତ୍ସବ
ତା-୮.୫.୧୯୯୧ - ଜିଲ୍ଲା ପରିଷଦ ହଲ୍,
କଳାପରିଷଦ, ଢେଙ୍କାନାଳର ଏକାଦଶ ନାଟକ ଉତ୍ସବ
(*ତାରକା ଚିହ୍ନିତ ଚରିତ୍ରଗୁଡିକୁ ପରବର୍ତ୍ତୀ ସମୟରେ ବାଦ୍ ଦିଆଯାଇଛି ।)



Digitized by PPRACHIN, SOA

**'ନାଟ୍ୟମ' ଅନୁଗୁଳ ଦ୍ୱାରା ବିଭିନ୍ନ ସମୟରେ ପରିବେଷଣ ଓ ଦୂରଦର୍ଶନ ଭୁବନେଶ୍ୱର ଦ୍ୱାରା ରେକର୍ଡିଂ ଅବସରରେ ଭାଗ ନେଇଥିବା ଶିଳ୍ପୀମାନେ ।**

| ଚରିତ୍ର | | ଶିଳ୍ପୀଙ୍କ ନାମ |
|---|---|---|
| ଧର୍ମରାଜ | : | ଅଶୋକ ଦାଶ |
| ଚିତ୍ରଗୁପ୍ତ | : | କ୍ଷୀରୋଦ ପାତ୍ର/ସୁଧାଂଶୁ ଦ୍ୱିବେଦୀ |
| ବୁଦ୍ଧିମାନ | : | ରାଧାକାନ୍ତ ମହାନ୍ତି/ସୁବାସ ଚନ୍ଦ୍ର ବିଶ୍ୱାଳ |
| ବନ୍ଧୁଆ | : | ଅନନ୍ତ ନାରାୟମ ଦାଶ |
| ଅପ | : | ବୈରାଗୀ ମଲିକ/ବଟକୃଷ୍ଣ ତ୍ରିପାଠୀ |
| ତେଜ | : | ପ୍ରଦୀପ ଦାଶ/ନରୋତ୍ତମ ମହାନ୍ତି |
| ବ୍ୟୋମ | : | ଦୀପକ ଘୋଷ/ରବିନ୍ଦ୍ର ସାହୁ |
| ମରୁତ | : | ସୁଧାକର ନାୟକ/ଶିବ |
| ମୂଷିଦନ୍ତ | : | କୃଷ୍ଣ କୁମାର ସାହୁ/ହୃଦାନନ୍ଦ ପଟ୍ଟନାୟକ |
| ଦଣ୍ଡପାଣି | : | ବିଷ୍ଣୁ ଚରଣ ମହାନ୍ତି/କ୍ଷୀରୋଦ ଦେହୁରୀ |
| ଶୂଳପାଣି | : | ସୋମନାଥ ରାଉତ/ମାୟାଧର ପ୍ରଧାନ |
| କ୍ଷିତିମାତା | : | ସପ୍ନାରାଣୀ ସିହ୍ନା |

**ଅନ୍ତରାଳେ**

| | | |
|---|---|---|
| ସଂଗୀତ ନିର୍ଦ୍ଦେଶକ | : | ଗୁରୁ ବିପିନ ବିହାରୀ ଦାଶ |
| ଯନ୍ତ୍ର ସଂଗୀତ | : | ଏ.ନାରାୟଣ ରେଡି/ଇଶ୍ୱର ଚନ୍ଦ୍ର ସାହୁ ଅନନ୍ୟ ମହାପାତ୍ର/ସରୋଜ ମହାପାତ୍ର |
| ରୂପସଜ୍ଜା ଓ ଆଲୋକ | : | ରାମକୃଷ୍ଣ ଚିତ୍ରାଳୟ, କଟକ |
| ନୃତ୍ୟନିର୍ଦ୍ଦେଶନା | : | କଳ୍ପନା ଥମ୍ବ |
| ନିର୍ଦ୍ଦେଶନା | : | **ସୁଧାଂଶୁ ଦ୍ୱିବେଦୀ** |

•

ତା୧୦.୨.୧୯୯୩ - ଆହ୍ଲାବାଦ ନାଟ୍ୟସଂଘ ଆୟୋଜିତ ବହୁଭାଷୀ ନାଟ୍ୟ ପ୍ରତିଯୋଗିତା, ମେହେଟା ଅଡିଟୋରିୟମ୍ ।

ତା୦୧.୪.୧୯୯୩ - ଦଶହରା ପଡିଆ, ଅନୁଗୁଳ

ତା୨୬.୧୦.୧୯୯୩ - କଳାବିକାଶ କେନ୍ଦ୍ର, କଟକ

ଏହା ବ୍ୟତୀତ - ଅନୁଗୁଳ, ତାଳଚେର, ଥର୍ମାଲ, ସାଉଥ୍‌ବଲଣ୍ଡା ଓ ଏନ୍.ଟି.ପି.ସି., କଣିହାଁ, ଢେଙ୍କାନାଳ ଇତ୍ୟାଦି ସ୍ଥାନରେ ନାଟ୍ୟମ ଅନୁଗୁଳ ଦ୍ୱାରା ବହୁବାର ଅଭିନୀତ ।



Digitized by PPRACHIN, SOA

# ସୂର୍ଯ୍ୟ ପରାଗ

## ଚରିତ୍ର ଲିପି

ତପନ

ଅଲେଖ

ଅମର

ବାଦଲ

ଶୀଳା

**ଅଭିନୟ ସମୟ ଅବଧି ତିରିଶ ମିନିଟ୍**



Digitized by PPRACHIN, SOA

# ସୂର୍ଯ୍ୟ ପରାଗ

## ପ୍ରଥମ ଦୃଶ୍ୟ

(ତପନ ବାବୁଙ୍କ ଡ୍ରଇଁଗ୍ରୁମ୍ । ସୋଫା, ସେଣ୍ଟର ଟେବୁଲ ଇତ୍ୟାଦି ସହିତ ଘରର ଗୋଟିଏ ପାଖକୁ ଗୋଟିଏ ଟେବୁଲ ଓ ଚୌକି । ଟେବୁଲ୍ ଉପରେ ସରକାରୀ ଫାଇଲ । ସମଗ୍ର କୋଠରୀକୁ ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାରର ରୁଚି ନେଇ ସଜାଇବାକୁ ହେବ । ସମୟ ସକାଳ । ତପନ ବାବୁ ଗୋଟିଏ ସୋଫା ଉପରେ ଅର୍ଦ୍ଧ ଶାୟିତ ଅବସ୍ଥାରେ ଗୋଟିଏ ଖବର କାଗଜ ପଢୁଛନ୍ତି ।)

ଅଲେଖ : ବାବୁ ! ବାବୁ ! (ତଳେ ବସିପଡି ତପନ କାନ ପାଖରେ) ବାବୁ !

ତପନ : କ'ଣ ! କାନଟା ପାଖରେ କାହିଁକି ଚିତ୍କାର କରୁଛୁ ।

ଅଲେଖ : ଆଜ୍ଞା, ମା କହିଛନ୍ତି ଯାଆନ୍ତୁ ଗାଧୋଇବେ । ମୁଁ ପାଣି ଦେଇ ଦେଇଛି ।

ତପନ : ଆଜି ରବିବାର । ଏତେ ତରତର କାହିଁକି ?

ଅଲେଖ : ମା ଗୋଧୋଇ ସାରିଲେଣି । ଆପଣ କାମ ଶେଷ କଲେ କୁଆଡେ ବୁଲିଯିବେ ପରା ।

ତପନ : ସପ୍ତାହରେ ଗୋଟେଦିନ ଛୁଟି । ସକାଳୁ ନିଦ ଭାଙ୍ଗିଛିକି ନାହିଁ ଫରମାସୀ ହୋଇଗଲା କୁଆଡେ ବୁଲି ବାହାରିବାକୁ । ତୁ ଯା କହିଦେ ମୁଁ ଯାଇ ପାରିବିନି ।

ଶୀଳା : (ଭିତରୁ) ଅଲେଖ । ଆରେ ବାବୁଙ୍କ ଗାଧୁଆ ସରିଲା ।

ଅଲେଖ : ଆରମ୍ଭ ହେଇନି ସରିବ କୁଆଡେ । ଆପଣ ଆସିଲେ, ମା ପାଟି କଲେଣି । (ଖବର କାଗଜ ଟାଣି ନିଏ)

ତପନ : ଇଡିଏଟ୍ ଏ ସବୁ କ'ଣ ହେଉଛି । ମା ହୁକୁମଟା ତୋତେ ବଡ ହେଇଯାଉଚି । ମୁଁ କହୁଛି ମୁଁ ଏବେ ଗାଧୋଇ ପାରିବିନି ।



Digitized by PPRACHIN, SOA

ଅଲେଖ : ଠିକ୍ ଅଛି । ମୁଁ କୁଣ୍ଡରେ ପାଣି ଭର୍ତ୍ତି କରିଦେଇଛି । ମୋ ଡିଉଟି ଶେଷ । ମୁଁ ଚାଲିଲି ।

ଶୀଳା : (ପ୍ରବେଶ) କ'ଣ ଏ ପର୍ଯ୍ୟନ୍ତ ଗାଧୁଆ ସରିନିଟି ?

ଅଲେଖ : ମୁଁ ଗାଧୋଇବା କଥା କହିଲାରୁ ମୋତେ ଆଖି ଦେଖଉଛନ୍ତି ମା ।

ଶୀଳା : ଚୁପ୍- ତୁ ବଜାର ଯିବା କଥା ଯା ।

ଅଲେଖ : ଚିଠା ଦେଇ ନାହାଁନ୍ତି ବଜାର ଯାଇ କ'ଣ ଆଣିବି ?

ଶୀଳା : ରହ ଦେଉଛି । (ତପନକୁ) ତୁମେ ଟିକିଏ ଜଲଦି ଗଲ ।

ତପନ : ଏମିତି କୋଉ ଉଦ୍‌ଘାଟନ ଉତ୍ସବରେ ଯୋଗ ଦେବାକୁ ଅଛି ଯେ ସକାଳୁ ନ ଗାଧୋଇଲେ ହବନି ।

ଶୀଳା : ମୁଁ ତୁମକୁ କହିବାକୁ ଭୁଲିଯାଇଥିଲି । ବାଦଲଙ୍କୁ କହିଛି ତାଙ୍କ ଗାଡି ନେଇ ଆସିବେ । ଆମେ କପିଳାସ ଯିବା ।

ତପନ : ହଠାତ୍ କପିଳାସ ପ୍ରୋଗ୍ରାମ୍ କେମିତି ହେଇଗଲା ।

ଶୀଳା : ଆଜି ଶିବ ଚତୁର୍ଦ୍ଦଶୀ ।

ଅଲେଖ : ମା ବରତ ଆରମ୍ଭ କରିଛନ୍ତି ବାବୁ । ଶିବ ଚତୁର୍ଦ୍ଦଶୀ ।

ଶୀଳା : ଅଲେଖ !

ଅଲେଖ : ଚିଠା ଦିଅନ୍ତୁ ମୁଁ ବଜାର ଚାଲିଯିବି ।

ତପନ : (ଶୀଳାକୁ) ବାହାଘର ୧୦ ବର୍ଷ ପୁରିଲାଣି । ଇଏ କି ବେପାର । ଏମିତି କୁଛ୍ଛ ସାଧନା ଦୁର୍ବୁଦ୍ଧି କିଏ ଦେଲା । ଶୁଣିଛି ଝିଅମାନେ ସୁନ୍ଦର ବରଟିଏ ପାଇବା ପାଇଁ ଶିବ ଉପାସନା କରନ୍ତି । ତୁମେ ତ ଦୁଇଟି ଝିଅର ମା ହେଇଗଲଣି । ପୁଣି କଉ ଆଶାରେ......

ଅଲେଖ : ଆପଣ ସିନା କିଛି ଚିନ୍ତା କରୁନାହାଁନ୍ତି ବାବୁ, ଘରେ ଆପଣଙ୍କ ବୁଢୀ ମା କିନ୍ତୁ ବହୁତ ମନ ଦୁଃଖ କରୁଛନ୍ତି । ଗାଁରେ ଅଚଳାଚଳ ସମ୍ପତ୍ତି, ନାତିଟିଏ ନ ହେଲେ ବଂଶରେ ପିଣ୍ଡ ଦେବ କିଏ । (ଶୀଳା ଅଲେଖ କଥାରେ ଅପ୍ରସ୍ତୁତ ହୁଏ )

ଶୀଳା : ଅଲେଖ ! ତୁ ମୋ ସାଙ୍ଗରେ ଭିତରକୁ ଆସ । ମୁଁ ଚିଠା ଦେଇଦେଉଛି । **(ଶୀଳା ଭିତରକୁ ଚାଲିଯାଏ)**



Digitized by PPRACHIN, SOA

ଅଲେଖ : ଗତଥର ବୁଢୀ ମା ଗାଁରୁ ଆସିଥିଲେ । ଆପଣ ଅଫିସ ଗଲାପରେ ବହୁତ କନ୍ଦାକନ୍ଦି କଲେ । ଶେଷରେ ମାଙ୍କୁ ଶପଥ କରେଇ ଦେଇଛନ୍ତି । ତାଙ୍କର ଗୋଟେ ନାତି ଦରକାର ।

ଶୀଳା : (ଚିଠା ଧରି ଆସିଛି) ତୋତେ କହିଲି ଭିତରେ ଆସି ଚିଠା ନେଇ ଯିବାକୁ ଏଠି ଗପ ଯୋଡି ବସିଯାଇଛି । ଏ ଚିଠା ନେ । ଜଲଦି ଆସିବୁ ।

**(ଅଲେଖ ବାହାରକୁ ଚାଲିଯାଏ)**

ଶୀଳା : ତୁମେ ଜଲଦି ଗାଧେଇ ପଡ । ଆଠଟା ବାଜିଲାଣି । ବାଦଲ ଏଇନେ ଗାଡି ଲଗେଇଦେବେ ।

ତପନ : ତୁମେ ବାଦଲ ସାଥିରେ କପିଳାସ ଯାଅ । ମୋର ଟିକିଏ କାମ ଅଛି । ଅଫିସ୍‌ର ବିଜୟ ଆଉ ସୁରେଶ ଗୋଟେ ଅଫିସିଆଲ୍ ମ୍ୟାଟର ନେଇ ଏବେ ଆସି ପହଞ୍ଚିବେ । କେତେ ଗୁଡାଏ ଜରୁରୀ କାମ ଅଛି ।

ଶୀଳା : ମିଛ କଥା । ମୁଁ ଯେତେବେଳେ ଯାହା ପ୍ରୋଗ୍ରାମ କଲି ତୁମର ଜରୁରୀ କାମ ବାହାରି ପଡୁଛି । ରବିବାରଟାରେ ଅଫିସ କାମ ନକଲେ ଚଳିବନି ।

ତପନ : କହିଲି ପରା ବାଦଲ ସହିତ ତୁମେ ଚାଲିଯିବ । କେତେ ବାଟ କି, ଦୁଇ ଘଣ୍ଟା ଭିତରେ କାମ ସାରି ଚାଲିଆସିବ ।

ଶୀଳା : ଗତଥର ଥିଏଟର ଦେଖିଗଲା ବେଳକୁ ସବୁ ଆରେଞ୍ଜମେଣ୍ଟ ଶେଷ ହେଲା ପରେ ତୁମେ ମନା କରିଦେଲ । ସେ ଉପରେ ସିନା କିଛି କହିଲେନି ହେଲେ ତାଙ୍କର ମନ ଯାହା ହେଲା ମୁଁ ଜାଣିଛି ।

ତପନ : ବାଦଲ ମୋର ପିଲାଦିନର ସାଙ୍ଗ । ତାକୁ ମୁଁ ଚିହ୍ନି ପାରିଲିନି, ଏଇ କେତେଟା ବର୍ଷ ପରିଚୟ ଭିତରେ ତୁମେ ମୋ, ଆପେକ୍ଷା ବେଶୀ ଚିହ୍ନିଗଲ । ମୁଁ ତାକୁ ବୁଝେଇ ଦେବି, ସେ ତୁମକୁ ନେଇ କପିଳାସରେ ଚନ୍ଦ୍ରଶେଖରଙ୍କ ଦର୍ଶନ କରାଇ ନେଇଆସିବ ।



Digitized by PPRACHIN, SOA

ଶୀଳା : ନା କପିଳାସ କଥା ଥାଉ । ମୁଁ ବଙ୍ଗ ରିକ୍ସା ନେଇ ଏଇ ପାଖ ମନ୍ଦିରକୁ ଚାଲିଯାଉଛି ।

ତପନ : ମାନେ ?

ଶୀଳା : କପିଳାସ ପ୍ରୋଗ୍ରାମ ଆଜି ପାଇଁ ବନ୍ଦ । ବାଦଲ ଆସିଲେ ମୁଁ ମନା କରିଦେବି ।

(ଶୀଳା ଚାଲିଯାଉଥିଲା)

ତପନ : ଶୀଳା......ସାମାନ୍ୟ କଥାରେ ଆଖି ଢଳ ଢଳ କରିବା ତୁମର ଗଲାନି । ମୋତେ ବିଶ୍ୱାସ କର ସତରେ ମୋର ଜରୁରୀ କାମ ଅଛି ।

ଶୀଳା : ନା ମିଛ କଥା । କାମ କଥା ଗୋଟେ ବାହାନା । ତୁମ ମନ କଥା ମୁଁ ଠିକ୍ ଜାଣିଛି ।

ତପନ : ମୋ ମନ କଥା ତୁମେ ଜାଣିଛ ? କ'ଣ ଜାଣି ପକେଇଲ କୁହତ ।

ଶୀଳା : ନା ସେ କଥା ମୁଁ କହିପାରିବିନି । ମୁଁ ଚାଲିଲି ।

ତପନ : ପ୍ଲିଜ୍, ଫର୍ ଗଡ୍ ସେକ୍ । ତୁମକୁ କହିବାକୁ ପଡିବ ।

ଶୀଳା : ତୁମକୁ ନ କହି ମୁଁ କାହିଁକି ବାଦଲଙ୍କୁ କାର ଆଣିବା ପାଇଁ କହିଦେଲି । ତୁମକୁ ନ ଜଣାଇ କପିଳାସ ପ୍ରୋଗ୍ରାମ କାହିଁକି କରିଦେଲି । ପୁରୁଷ ମନ ତ ସେଇଥିପାଇଁ......ତୁମେ ମୋତେ ଖରାପ ଭାବିଛ ।

ତପନ : ନା ! ବିନ୍ଦୁମାତ୍ର ସତ୍ୟ ନୁହେଁ । (ହସିଛି)

ଶୀଳା : ଏମିତି ହସି ଦେଇ ତୁମେ ମୋତେ ଭୁଲେଇ ପାରିବନି । ପାଞ୍ଚ ଛ ବର୍ଷ ପୂର୍ବରୁ ବାଦଲ ଯେତେବେଳେ ଏଠି ବ୍ୟାଙ୍କକୁ ବଦଳି ହୋଇ ଆସିଲେ - ତୁମେ ତାଙ୍କୁ ଆଣି ମୋ ସହିତ ପରିଚୟ କରାଇଲ । ପ୍ରଥମେ ପ୍ରଥମେ ଯେତେବେଳେ ମୁଁ ତାଙ୍କ ସହିତ ବେଶୀ କଥାବାର୍ତ୍ତା କଲିନି ମନେପକେଇଲ - ତୁମେ କ'ଣ କହିଥିଲ ।

ତପନ : କ'ଣ କହିଥିଲି ?

ଶୀଳା : "ବାଦଲ ବହୁତ ଭଲ ପିଲା । ମୋର ବେଷ୍ଟ ଫ୍ରେଣ୍ଡ । ତାକୁ ଏତେ



Digitized by PPRACHIN, SOA

ଲାଜ କ'ଣ । କିଛିଦିନ ମିଶିଗଲା ପରେ ମୁଁ ବୁଝିଗଲି ଯେ - ତୁମ କଥା ସତ । ଏତେ ସରଳ ହୃଦୟର ଲୋକ ପ୍ରକୃତରେ ବର୍ତ୍ତମାନ ମିଳିବା କଷ୍ଟକର । ତୁମର ବନ୍ଧୁତାର ଅଧିକାରରେ ମୁଁ ତାଙ୍କ ପାଖରେ କିଛି ଦାବି କରି ବସୁଛି । ସେଥିରେ ବାଦଲଙ୍କ କିଛି ଦୋଷ ନାହିଁ ।

ତପନ : ତା'ର ଦୋଷ ମୁଁ ତ କେବେ ଦେଖିନି । ତାକୁ କେବେ ହେଲେ ମୁଁ ଖରାପ ଭାବିନି ।

ଶୀଳା : ତୁମେ ଖରାପ ଭାବୁଛ କି ନାହିଁ ଅଲଗା କଥା । କିନ୍ତୁ ମୁଁ ବେଳେବେଳେ ଫିଲ୍ କରୁଛି, ବାଦଲଙ୍କ କଥା ନେଇ ତୁମେ ମୋତେ ଖବାପ ଭାବୁଛ । ଏଇ ଘରେ ବାଦଲଙ୍କ ଉପସ୍ଥିତି ତୁମେ ଯେମିତି ଆଉ ପସନ୍ଦ କରୁନ ।

ତପନ : ଏ ସବୁ ବାଜେ ଆବସଡ୍ କଥା ତୁମ ମୁଣ୍ଡରେ କେବେଠୁ ବସା ବାନ୍ଧିଲାଣି । ବାଦଲ ବିଷୟରେ ମୁଁ କିଛି କହିଛି ।

ଶୀଳା : ସବୁ କଥା କ'ଣ କହିଲେ ବୁଝି ହୁଏ । ଏମିତି କିଛି କଥା ଅଛି ଯାହା ନ କହିଲେ ବି ଧରା ପଡିଯାଏ ।

ତପନ : ମାନେ......।

ଶୀଳା : ଏଇ, ବାଦଲ ଆସି ପହଞ୍ଚିଯିବେ । ତୁମେ କପିଳାସ ଯିବନି - ସେ ନିଶ୍ଚୟ କିଛି ଭାବିବେ ଯେ ଏଇକଥା ନେଇ କିଛି ଘଟିଛି । ମୁଁ ଏବେ ବୁଝୁଛି କପିଳାସ ଯିବା କଥା ତୁମକୁ ଆଗରୁ ନ ଜଣାଇ ଭୁଲ କରିଛି ।

ତପନ : ତୁମକୁ କ'ଣ ମୁଁ ଦୋଷ ଦେଉଛି ।

ଶୀଳା : ମୋତେ ଦୋଷ ଦିଅ କି ନ ଦିଅ ମୁଁ ଦୋଷ କରିଛି, ସେଇଥିପାଇଁ ମୁଁ କ୍ଷମା ମାଗି ନେଉଛି । ମୋ ରାଣ - ତୁମେ ବାହାରି ପଡ - ବାଦଲ ଖରାପ ଭାବିବାରୁ ମୋତେ ମୁକ୍ତି ଦିଅ । ଭବିଷ୍ୟତରେ ମୁଁ ଏ ପ୍ରକାର ଭୁଲ କରିବିନି । ହେଇ ତାଙ୍କ ଗାଡି ଆସିଗଲାଣି......।

**(ତପନ ଭିତରକୁ ଚାଲିଯାଏ, ବାହାରୁ ଆସେ ବାଦଲ)**



Digitized by PPRACHIN, SOA

ବାଦଲ : କ'ଣ ଭାଉଜ, ଆମର ବନ୍ଧୁବର ଜରଦ୍‌ଗବ ତପନ ସୁନ୍ଦର ଏ ପର୍ଯ୍ୟନ୍ତ ରେଡି ହେଇନି...... ?

ଶୀଳା : ଏବେ ବାଥରୁମ୍‌ରେ ଅଛନ୍ତି । ସକାଳୁ ଘଣ୍ଟେ ଲାଗିଲା ପରେ ଏବେ ଗାଧୋଇବାକୁ ଯାଉଛନ୍ତି ।

ବାଦଲ : ମୁଁ ସେ ଗଧଟାକୁ ପିଲାଦିନରୁ ଜାଣିଛି । ଗୋଟେ ଅସଲ ଚୁପ୍‌ସଇତାନ । ଯେତେବେଳେ ଯାହା ପ୍ରୋଗ୍ରାମ କର ମୁଁହଟାକୁ ହାଣ୍ଡି ଭଳିଆ କରି ଗୋଟେ ଆଳ ବାହାର କରି ଦେବ । ତା ଭଳିଆ ଗୋଟେ ଥାର୍ଡ ଗ୍ରେଡ୍ ଲୋକକୁ ଆପଣ କେମିତି ପସନ୍ଦ କରି ବାହାହେଲେ ମୁଁ ବୁଝିପାରୁନି ।

ଶୀଳା : ମୋ ପସନ୍ଦ ଅପସନ୍ଦ କଥା ଉଠୁଛି କୋଉଠୁ । ବାପା ମାଆ ପସନ୍ଦ କରି ଯେତେବେଳେ ବାନ୍ଧି ଦେଇଛନ୍ତି ମୁଁ ଆଉ କ'ଣ କରିପାରିବି ।

ବାଦଲ ବହୁତ କିଛି କରିପାରିବେ । ଏବେ ବି ସମୟ ଗଡି ଯାଇନି । ତାକୁ ଡିଭର୍ସ କରି ଚାଲିଆସନ୍ତୁ । ଅନେକ ଆପଣଙ୍କର ହାତ ଧରି ସଂସାର କରିବାକୁ ଆଗେଇ ଆସିବେ ।

ଶୀଳା : ଦିଟା ପିଲାର ମା' ହେଲାପରେ ସେ ସବୁ କଲେ କ'ଣ ଭଲ ଦିଶିବ । ତା'ପରେ ମୋ ବାପା ମା ଯେତେବେଳେ ପସନ୍ଦ କରି ବାହା ଦେଇଛନ୍ତି ତାଙ୍କ ପସନ୍ଦକୁ ଅବମାନନା କରିହେବନି ।

ବାଦଲ : ଯେତେ ସଫେଇ ଦେଲେ ବି ମୁଁ କେବେ ଆପଣଙ୍କ ବାପା ମାଙ୍କୁ କ୍ଷମା ଦେଇ ପାରିବିନି । ଆପଣଙ୍କ ଭଳିଆ ଜଣେ ରୂପସୀଙ୍କ ପ୍ରତି ସେ ଅନ୍ୟାୟ କରିଛନ୍ତି । ଦେଖା ହେଲେ ତାଙ୍କ ପାଖରୁ ମୁଁ କୈଫିୟତ ତଲବ କରିବି । ଏ ଦେଶରେ କ'ଣ ପୁଅର ଏମିତି ଅଭାବ ହେଇଗଲାଣି ଯେ, ତପନ ଭଳି ଗୋଟେ ବ୍ଲକହେଡ୍‌କୁ ଜ୍ୱାଇଁ କରିଛନ୍ତି ।

ଶୀଳା : (ହସି) ହଉ ତୁମେ ବସ, ମୁଁ ଯାଇ ତୁମ ବନ୍ଧୁଙ୍କ ପଛରେ ନ ଲାଗିଲେ ସେ ଆହୁରି ଡେରି କରିଦେବେ ।



Digitized by PPRACHIN, SOA

**(ଶୀଳା ଚାଲିଯାଏ । ବାଦଲ ଯାଇ ଟେବୁଲ ଉପରୁ ଗୋଟେ ମାଗାଜିନ ନେଇ ଆସେ । ହଠାତ୍ ତା'ର ଆଖି ଗୋଟିଏ ଫଟୋ ଉପରେ ପଡେ । ସେ ଜୁଲି ଆଉ ମିଲିଙ୍କ ଫଟୋ ଚିତ୍ର ବନ୍ଧା ଫ୍ରେମ୍‌ଟି ଟେବୁଲ୍ ଉପରୁ ନେଇ ଆସେ ।)**

ଅଲେଖ : (ହାତରେ ବ୍ୟାଗ ଧରି ଆସିଛି) ନମସ୍କାର ବାଦଲ ବାବୁ । କ'ଣ ଦେଖୁଛନ୍ତି । ଜୁଲି ଓ ମିଲି ଦି ଜଣଯାକ ଗଲା ରବିବାରଠୁ ଅଜାଙ୍କ ଘରକୁ ଯାଇଛନ୍ତି ନହେଲେ ଏତେବେଳକୁ ଆପଣଙ୍କୁ ନାକେଦମ୍ କରି ଦିଅନ୍ତେଣି । ଯାହା କହନ୍ତୁ ବାବୁ ପିଲା ଦିଟା ଆପଣଙ୍କୁ ଖୁବ୍ ଭଲ ପାଆନ୍ତି ।

ବାଦଲ : ତୁ କ'ଣ ବଜାର ଯାଇଥିଲୁ ଅଲେଖ । ଆଜି ରବିବାର ସ୍ପେଶାଲ ମେନ୍ୟୁ ନିଶ୍ଚୟ ଥିବ ।

ଅଲେଖ : ଏସପେସିଆଲ୍ କିଛି ନାହିଁ ବାବୁ । ଆଜି ଶିବ ଚତୁର୍ଦ୍ଦଶୀ ବୋଲି ମାଆଙ୍କ କଡା ହୁକୁମ...ଆମିଷ ବନ୍ଦ ।

ବାଦଲ : ଆରେ ଠିକ୍ କଥା ମୁଁ ତ ଭୁଲିଯାଇଥିଲି । ଆଜି ଶିବ ଦର୍ଶନ କାର୍ଯ୍ୟକ୍ରମ ରହିଛି ।

**(ତପନ ଧୋତି ପଞ୍ଜାବି ପିନ୍ଧି ଆସନ୍ତି । ଅଲେଖ ଭିତରକୁ ଚାଲିଯାଏ ।)**

ବାଦଲ : ବାଃ, ବାଃ, ଆଜି ମନ୍ଦିର ଯିବା ବେଶଟା ଠିକ୍ ଜମିଛି ।

ତପନ : କ'ଣ ଭଲ ଦେଖାଯାଉଛି । ସମସ୍ତେ ପସନ୍ଦ କରିବେ ତ ।

ବାଦଲ : ସମସ୍ତେ ପସନ୍ଦ କରନ୍ତୁ ବା ନ କରନ୍ତୁ ଶିବ ଠାକୁର ନିଶ୍ଚୟ ଇଂପ୍ରେସଡ୍ ହୋଇଯିବେ । ତୁମ ସ୍ୱାମୀ ସ୍ତ୍ରୀଙ୍କ ମନସ୍କାମନା ନିଶ୍ଚୟ ପୂରଣ କରିବେ ।

ତପନ : ମାନେ ।

ବାଦଲ : ଆବେ ମାନେ ମାନେ କ'ଣ ହେଉଛୁ । ପୁତ୍ ନାମକ ନର୍କରୁ ଉଦ୍ଧାର ପାଇବାକୁ ଶିବ ଯୋଜନା କରିଦେବେ । ଘରେ ତୋ ମା କୁଆଡେ



Digitized by PPRACHIN, SOA

ଏଇଥି ପାଇଁ ବଡ ମନ ଦୁଃଖ କରୁଛନ୍ତି । ସ୍ୱାମୀ ସ୍ତ୍ରୀ ଦୁଇଜଣ ଯାକ ଲାଗିପଡ......।

ତପନ : ମୁଁ ଆଉ ସେ ଜଞ୍ଜାଳ ଭିତରେ ଘାଣ୍ଟି ହେବାକୁ ଚାହୁଁନି । ପୁଅ ଖୋଜୁ ଖୋଜୁ ଯଦି ପୁଣି କନ୍ୟାରତ୍ନଟିଏ ଆସିଯାଏ ସବୁ ଶେଷ ।

ବାଦଲ : କ'ଣ ସେଇ ହସ୍ତରେଖା ବିଶାରଦ ଜ୍ୟୋତିଷ କଥା କହୁଛୁ । ସେ କହିଥିଲା ପାଞ୍ଚଟି କନ୍ୟାରତ୍ନ ପରେ ତୋର ପୁଅ ହେବ । ଆରେ ଦାନ ଧର୍ମ, ପୁଣ୍ୟ ବଳରେ ଅସମ୍ଭବ ସମ୍ଭବ ହୋଇଯାଏ । ଆମ ଶାସ୍ତ୍ର ପୁରାଣ କଥା ତୁ କ'ଣ ବିଶ୍ୱାସ କରୁନୁ ।

ତପନ : ସେ ସବୁ ବିଶ୍ୱାସ ଅବିଶ୍ୱାସ ଛାଡ । ନୋ ଫର୍ଦର ଇସ୍ୟୁ ।

ବାଦଲ : ମାନେ ଆମେ ଦୁଇ ଆମର ଦୁଇ ଜିନ୍ଦାବାଦ । କିନ୍ତୁ ଭାଉଜ ଏ କଥା ପସନ୍ଦ କରିନପାରନ୍ତି ।

ତପନ : ସେ ପସନ୍ଦ କରୁ ବା ନକରୁ ମୁଁ ମୋ ନିଷ୍ପତ୍ତିରେ ଅଟଳ ।

ବାଦଲ : ଅଟଳ, କ'ଣ ବ୍ରହ୍ମଚର୍ଯ୍ୟ ନା ସନ୍ୟାସ......

**(ଶୀଳା ଆସିଛି । ହାତରେ ତା'ର ଠାକୁର ଦର୍ଶନରେ ଯିବା ପୂଜାଥାଳି)**

ଶୀଳା : ଚାଲ, ଚାଲ ବହୁତ ଡେରି ହୋଇଗଲାଣି ।

ବାଦଲ : ଇଏସ୍ ମ୍ୟାଡାମ୍ । ତବ ଆଜ୍ଞା ମମ ଶିରୋଧାର୍ଯ୍ୟ । ଚାଲନ୍ତୁ ।

**(ଆଗେ ଆଗେ ତପନ ଚାଲିଯାଏ । ତା' ପଛେ ପଛେ ଶୀଳା ଯିବାବେଳକୁ ବାଦଲ ତା' ହାତ ଧରି ଅଟକେଇ ଦିଏ ଓ ତା' କାନ ପାଖରେ କିଛି କୁହେ । ଶୀଳା ବଡ ବଡ ଆଖି କରି ବାଦଲକୁ ଚାହିଁ ରହେ । ବାଦଲ ଦୁଷ୍ଟାମୀ କରିବା ଭଙ୍ଗୀରେ ହସିଦିଏ ।)**

ଶୀଳା : ଆରେ ଚାଲ ବହୁତ ଦୁଷ୍ଟାମୀ କରୁଛ । ଚାଲ......

**(ଦୁହେଁ ବାହାରକୁ ଚାଲିଯାନ୍ତି ମଞ୍ଚ ଅନ୍ଧାର ହୁଏ)**





Digitized by PPRACHIN, SOA

## ଦ୍ୱିତୀୟ ଦୃଶ୍ୟ

(ସେଇ ଘର । ସମୟ ଅପରାହ୍ନ । ଅଲେଖ ତଳେ ପାରି ଶୋଇଯାଇଛି । ବାହାରୁ କଲିଂ ବେଲ୍ ଶୁଣାଯାଉଛି । ଅଲେଖ ନିଦରୁ ଉଠି ବସିଛି ।)

ଅଲେଖ : ଓଃ ଦ୍ୱିପ୍ରହରଟାରେ ମଣିଷକୁ ଟିକିଏ ଶୋଇ ଦେବେନି । ଯାଉଛି ଯାଉଛି ।

**(ଅଲେଖ ବାହାରକୁ ଯାଉଛି । ପରେ ଘରକୁ ଆସିଛନ୍ତି ତପନ ବାବୁ, ପଛେ ପଛେ ଅଲେଖ)**

ଅଲେଖ : ଆଜି ଏତେ ସଅଳ ଅଫିସରୁ ଆସିଲେ ଯେ ବାବୁ, ଅଫିସ କ'ଣ ଛୁଟି ହୋଇଗଲା ।

ତପନ : ନା, ମୁଣ୍ଡଟା କାହିଁକି ବ୍ୟଥା ହେଉଛି, ସେଇଥି ପାଇଁ ଚାଲିଆସିଲି । ତୋ ମା କ'ଣ ଶୋଇଯାଇଛନ୍ତି ।

ଅଲେଖ : ନା ବଜାର ଯାଇଛନ୍ତି । କାଲି ସାବିତ୍ରୀ ଅମାବାସ୍ୟା, ଫଳମୂଳ ସବୁ କିଣା ଯିବ । ବାଦଲ ବାବୁ ଆସିଥିଲେ । ତାଙ୍କ ଗାଡିରେ ଯାଇଛନ୍ତି ।

ତପନ : ସାବିତ୍ରୀ ପାଇଁ ତୁ ଫଳମୂଳ ଆଣି ପାରିଲୁନି । ମେ ମାସର ଏ ଖରାରେ ନିଜେ ଯାଇଛନ୍ତି ।

ଅଲେଖ : ନୂଆ ଶାଢୀ କିଣା ହେବ । ସେଗୁଡାକ ମୁଁ କ'ଣ ଆଣିପାରିବି । ଆପଣଙ୍କ ଶଶୁର ଘରୁ କାଲି ମନିଅର୍ଡର ଆସିଥିଲା । ଆଜି କିଣା କିଣି ନକଲେ କାଲି ସକାଳୁ ପୂଜା କେମିତି କରିବେ ।

ତପନ : କେତେବେଳୁ ଗଲେଣି ।



Digitized by PPRACHIN, SOA

ଅଲେଖ : କେତେବେଳୁ ଗଲେଣି । ଏଇନା ଆସିଯିବେ ନା କ'ଣ । ଆପଣ ବଦଳା ବଦଳି କରନ୍ତୁ । ମୁଁ ଗୋଡ ହାତ ଚିପି ଦେବି । ମୁଣ୍ଡ ବ୍ୟଥା ହେଉଛି ପରା ।

**(ଦୁହେଁ ଭିତରକୁ ଚାଲିଯାଆନ୍ତି । ବାହାରୁ ଆସନ୍ତି ଶୀଳା ଓ ବାଦଲ । ବାଦଲ ହାତରେ ଶାଢୀ ଇତ୍ୟାଦି ବ୍ୟାଗ୍)**

ବାଦଲ : ତପନ ଅଫିସରୁ ଫେରିଲାଣି ବୋଧହୁଏ । ବାହାରେ ତା ମୋଟର ସାଇକେଲ ଥୁଆ ହୋଇଛି । ନେଲେ ଏଗୁଡାକ ମୁଁ ଚାଲିଯାଏ ।

ଶୀଳା : ଚାଲିଯିବ ମାନେ । ତୁମ ବନ୍ଧୁଙ୍କ ସାଙ୍ଗରେ ଦେଖା କରିବନି ।

ବାଦଲ : ଆରେ ବାବା, ତାକୁ ଏମିତି ସମୟରେ ଦେଖାଦେଲେ ସେ ଯେମିତି ବଡ ବଡ ଆଖି କରି ଚାହିଁବ ନା-ମୁଁ ଆଦୌ ସହ୍ୟ କରିପାରିବି ନାହିଁ ।

ଶୀଳା : ସେ ଚାହିଁଲେ ଡରିବାର କ'ଣ ଅଛି । ତୁମେ ସେମିତି ବଡ ବଡ ଆଖି ଦେଖାଇ ଦେବ ।

ବାଦଲ : ଯାହା କଲେବି ଗଧଟାର ମୁହଁକୁ ଚାହିଁ ହେବନି । ଏକ ନମ୍ବର ଚୁପସଇତାନ । ଶଳା ପେଟରେ ଗୋଟେ କଥା ମୁହଁରେ ଗୋଟେ କଥା । ପଛେ ବର୍ଗ ଆସି ଦେଖା କରିଯିବି । ମୁଁ ଚାଲିଲି । ତାକୁ କହିଦେବେ ଅଫିସରେ ଜରୁରୀ କାମ ପାଇଁ ଚାଲିଗଲି ।

**(ବାଦଲ ଚାଲିଯାଏ ଶୀଳା ତା ବାଟକୁ ଚାହିଁ ହସି ଦିଏ । ମଞ୍ଚ ଅନ୍ଧାର ହୁଏ)**





Digitized by PPRACHIN, SOA

# ତୃତୀୟ ଦୃଶ୍ୟ

(ସେଇ ଘର । ସମୟ ରାତ୍ରୀ । ତପନ ଟେବୁଲ୍ ପାଖରେ ବସି କ'ଣ ସବୁ ଲେଖାଲେଖି କରୁଛି । ଟେବୁଲ୍ ଉପରେ ଟେବୁଲ ଲ୍ୟାମ୍ପ ଜଳୁଛି । ଶୀଳା ଆସିଛି ।)

ଶୀଳା : ଖିଆ ପିଆ ସରିଲା ପରେ ପୁଣି ତୁମର କାମ ଚାଲିଛି । ରାତି ଏଗାରଟା ବାଜିଲାଣି ।

ତପନ : କାଲି ସୁଦ୍ଧା ଗୋଟେ ଜରୁରୀ ରିପୋର୍ଟ ହେଡ ଅଫିସକୁ ଦିଆ ହେବ । ବାସ ଆଉ ଅଧଘଣ୍ଟାରେ ଶେଷ ହେଇଯିବ ।

ଶୀଳା : ରାତି ଅନିଦ୍ରା ହେଲେ ତୁମ ଦେହ ଖରାପ ହେଇଯାଏ । କାଲିତ ଅଫିସ ଛୁଟି କାଲି କରିଦେବ ।

ତପନ : ତୁମ ସାବିତ୍ରୀ ଅମାବାସ୍ୟା ପାଇଁ ଛୁଟି ହେବ ବୋଲି ଭାବୁଛ ।

ଶୀଳା ନା କାଲି କେବଳ ସାବିତ୍ରୀ ଅମାବାସ୍ୟା ନୁହେଁ କାଲି ସୂର୍ଯ୍ୟପରାଗ ଅଛି । ବାଦଲ କହୁଥିଲେ କାଲି ବ୍ୟାଙ୍କ ସହିତ ସମସ୍ତ ସରକାରୀ ଅଫିସ୍ ଛୁଟି ।

ତପନ : ଆଛା ଠିକ୍ ଅଛି ତୁମେ ଯା - ମୁଁ ଏଇ ସଙ୍ଗେ ସଙ୍ଗେ ଯାଉଛି ।

ଶୀଳା : ନା ତୁମେ ଆସି ଜଲଦି ଶୋଇଲେ ଜଲଦି ଉଠିବ । ସକାଳ ୭ ଟାରେ ସୂର୍ଯ୍ୟପରାଗ ଆରମ୍ଭ ହୋଇଯିବ । ତେଣୁ ପଣ୍ଡିତେ କହୁଥିଲେ ୭ଟା ପୂର୍ବରୁ ସାବିତ୍ରୀ ପୂଜା ଶେଷ କରିବାକୁ ହେବ ।

ତପନ : ତୁମେ ତୁମର ଜଲଦି ଉଠି ପୂଜା ସାରିବ । ମୋର ଜଲଦି ଉଠିବାରେ କିଛି କାରଣ ନାହିଁ ।

ଶୀଳା : ପରାଗ ଯୋଗୁ ସକାଳ ୭ ଟାରୁ ଅପରାହ୍ନ ୫ଟା ଯାଏ ପାକ ନିଷେଧ । ତୁମେ ସକାଳୁ ଉଠି ନିତ୍ୟକର୍ମ ଶେଷ କଲେ ସିନା କିଛି



Digitized by PPRACHIN, SOA

ଖାଇ ପାରିବ ନହେଲେ ସନ୍ଧ୍ୟା ଯାଏ ଉପାସ ରହିବାକୁ ପଡିବ ।

ତପନ : ହେଲା ବାବୁ ପାଞ୍ଚ ମିନିଟ୍ ଭିତରେ ଯାଉଛି । ତୁମେ ଯା ।

**(ଶୀଳା ଭିତରକୁ ଚାଲିଯାଏ । ତପନ ଲେଖାରେ ମନ ଦିଏ । କିଛି ସମୟ ପରେ ଶୀଳା ଆସି ତପନ ପାଖରେ ଠିଆ ହୁଏ)**

ତପନ : ଆରେ ପୁଣି ଆସିଲ ? କହିଲି ପରା ପାଞ୍ଚ ମିନିଟ୍‌ରେ ଯାଉଛି ।

ଶୀଳା : ମୋର ଗୋଟେ କଥା କହିବାର ଅଛି ।

ତପନ : କ'ଣ ଜରୁରୀ କଥା ?

ଶୀଳା : ହଁ ମୁଁ ଆଜି ତୁମକୁ ନକହି ବାଦଲଙ୍କ ସହିତ ବଜାର ଯାଇଥିଲି । ତୁମେ ଖରାପ ଭାବିଥିବ ନିଶ୍ଚୟ ।

ତପନ : କାହିଁକି ? ତୁମେ ତା ସହିତ ଆଜି ପ୍ରଥମ ଥର ଯାଉଛ ଯେ ଖରାପ ଭାବିବି ।

ଶୀଳା : ତେବେ ତୁମେ ବେଳେବେଳେ କେମିତି ଗୋଟେ ଅଲଗା ମୁଡ କର । ସେଇଥିପାଇଁ ମୁଁ କିଛି ଯେମିତି ଭୁଲ କଲା ଭଳି ଲାଗେ ।

ତପନ : ଦେଖ ତା ସହିତ ମିଶିବାକୁ ମୁଁ ତୁମକୁ ମନା କରୁନି, ତେବେ ତା'ର କାରଟା ଅଛି ବୋଲି ଆମେ ଯେତେବେଳେ ମନ ସେତେବେଳେ ଆମ କାମରେ ଲଗାଇବା..... ମୁଁ ପସନ୍ଦ କରେନି । ଆମର ସେ ବନ୍ଧୁ ତା ବୋଲି ତା'ର ଆଡ୍‌ଭାନ୍‌ଟେଜ୍ ନେବା......।

ଶୀଳା : ସେ କେବେ କିନ୍ତୁ ମାଇଣ୍ଡ କରନ୍ତିନି ।

ତପନ : ଆଜିର ସାବିତ୍ରୀ ସଉଦା କିଣିବାରେ ଗାଡି ନବାର ଆବଶ୍ୟକତା ନଥିଲା । ରିକ୍ସାରେ ଯାଇ ଏସବୁ ଜିନିଷ ଆଣି ହୋଇଥାନ୍ତା ।

ଶୀଳା : ଆଜି କଥା କହୁଛ ତ । ଆଜି ପ୍ରକୃତରେ ମୋ ସାଙ୍ଗ ଡଃ ସବିତା ଚୌଧୁରୀ ପାଖକୁ ଯାଇଥିଲି । ସେଇଠୁ ଫେରିବା ବାଟରେ ବଜାରରୁ ସାବିତ୍ରୀ ସଉଦା ନେଇ ଆସିଲି ।

ତପନ : ହାଠାତ୍ ଡଃ ସବିତା ଚୌଧୁରୀ ପାଖକୁ..... ?

ଶୀଳା : ମୋର ଚେକ୍‌ଅପ୍ କରିବାକୁ ଯାଇଥିଲି ।



Digitized by PPRACHIN, SOA

ତପନ : କ'ଣ ହେଇଛି ତୁମର ?

ଶୀଳା : କିଛି ନାହିଁ । ତୁମର ଜାଣିବା ଦରକାର ନାହିଁ ।

**(ଚାଲି ଯାଉଥିଲା । ତପନ ତାକୁ ଧରି ନେଇଛି)**

ତପନ : କ'ଣ ହେଇଛି ତୁମର । କିଛି ଟ୍ରବୁଲ୍ ? ମୋତେ ତ କାହିଁକି କହିନ ।

**(ତପନ ପାଖରୁ ହାତ ଛଡେଇ ନେଇ)**

ଶୀଳା : ଛାଡ । ମୋତେ ଭୀଷଣ ନିଦ ଲାଗିଲାଣି ମୁଁ ଯାଏ ।

ତପନ : ପ୍ଲିଜ୍ ଶୀଳା ! କିଛି ନ ଲୁଚାଇ ମୋତେ କୁହ କ'ଣ ହୋଇଛି ତୁମର ।

ଶୀଳା : କହିବି କିନ୍ତୁ ପ୍ରଥମେ ପ୍ରମିସ୍ କର ଏଇ ଇସ୍ୟୁ ଉପରେ ମୋତେ କିଛି ବାଧ କରିବନି ।

ତପନ : ମାନେ ।

ଶୀଳା : ତୁମେ ପ୍ରମିସ୍ କର ।

ତପନ : ତୁମକୁ ଛୁଇଁ କହୁଛି ମୁଁ ବାଧ କରିବିନି ।

ଶୀଳା : ମୁଁ ମା ହେବାକୁ ଯାଉଛି ।

**(ଶୀଳା ହସି ହସି ଚାଲିଯାଏ । ତପନ ଯେମିତି ହଠାତ୍ ଜଡ ପାଲଟିଯାଏ । ସାରା ପୃଥିବୀ ଯେମିତି ତା ଚାରିପାଖରେ ଘୁରିବାକୁ ଲାଗେ । ତା କାନରେ ବାରମ୍ବାର ପ୍ରତିଧ୍ୱନୀତ୍ୱ ହେବାକୁ ଲାଗେ ଶୀଳାର କଥା '' ମୁଁ ମା ହେବାକୁ ଯାଉଛି'' ତପନ ସ୍ଥିର ହୋଇ ବସିପାରେ ନାହିଁ । ସେ ଯାଇ ଘରର ଝରକା ଖୋଲି ଆକାଶ ଆଡକୁ ଚାହିଁ ରହେ । ପୁରୁଣା ଦିନର କଥା ସବୁ ମନେ ପଡିଯାଏ ।)**

## ଅତୀତ ଘଟଣାବଳୀ.....

(ଡାକ୍ତର ଅମର ଜେନାଙ୍କ କ୍ଲିନିକ୍ । ତପନ ଓ ଅମର କଥା ହେଉଛନ୍ତି)

ଅମର : ତୁ ଯେଉଁ ଫ୍ୟାମିଲି ପ୍ଲାନିଂ ଅପରେସନ୍ ହେବାକୁ କହୁଛୁ, ସେଥିପାଇଁ ସରକାର ପ୍ରତ୍ୟେକ ସରକାରୀ ହସ୍ପିଟାଲରେ ବ୍ୟବସ୍ଥା କରିଛନ୍ତି । ପ୍ରତ୍ୟେକ କେସ୍ ପାଇଁ ଟଙ୍କା ପେମେଣ୍ଟର ସୁବିଧା



Digitized by PPRACHIN, SOA

କରିଛନ୍ତି । ଯେ କୌଣସି ହସ୍ପିଟାଲରେ ପହଞ୍ଚିଗଲେ ସେମାନେ ଆଗ୍ରହ ସହିତ ଅପରେସନ୍ କରିଦେବେ ।

ତପନ : ସେ କଥା କ'ଣ ମୋତେ ଜଣା ନାହିଁ ବୋଲି ଭାବୁଛୁ । ମୁଁ ଚାହୁଁଛି ଅପରେସନଟା ତୁ କରିବୁ । ଏ କଥା ଆମ ଦୁଇ ଜଣଙ୍କ ଛଡା ଅନ୍ୟ କେହି ଜାଣିବେନି ।

ଅମର : ଏମିତି କି ତୋ ସ୍ତ୍ରୀ, ଶୀଳା ବି ଜାଣିବନି ।

ତପନ : ନା ।

ଅମର : ଦେଖ ତୋର ଦୁଇଟା ଝିଅ ଅଛନ୍ତି । ତୃତୀୟ ସନ୍ତାନ ପୁଅ ହୋଇପାରେ । ତୋ ସ୍ତ୍ରୀକୁ ଲୁଚାଇ ତୁ ଭାକ୍ସେଟମି ଅପରେସନ୍ ହେବୁ - ଏଠି ମୋ କ୍ଲିନିକରେ ରହିବୁ - କେହି ହେଲେ ତ ଜାଣିବେ ।

ତପନ : ଅସଲ ହେଉଛି ମୋ ସ୍ତ୍ରୀ ଶୀଳା । ତାକୁ ମୁଁ ୧୫ ଦିନ ପାଇଁ ଗାଁକୁ ପଠେଇ ଦେଇଛି । ସେ ଫେରିବା ପୂର୍ବରୁ ମୁଁ ଏ କାମ ଶେଷ କରିଦେବି ।

ଅମର : ଏ ସବୁ କଲେ ତୋର ଲାଭ କ'ଣ ହେବ ।

ତପନ : ଘରେ ମୋ ମା ଆଉ ଅନ୍ୟମାନେ ଛାହୁଁଛନ୍ତି ଗୋଟିଏ ପୁଅ । ଶୀଳା ବି ସେମାନଙ୍କ କଥାରେ ରାଜି ହୋଇ ଗୋଟେ ପୁଅ ପାଇଁ ପୂଜା ପାଠ ଦାନ ଧର୍ମ ଆରମ୍ଭ କରି ଦେଇଛି । ମୁଁ କିନ୍ତୁ ଚାହୁଁଛି ଆଉ ରିସ୍କ ନେବିନି । ପୁଅ ଖୋଜୁ ଖୋଜୁ ପୁଣି ଝିଅ ଆସିଗଲେ ଅବସ୍ଥା କ'ଣ ହେବ ଜାଣୁଛୁ ।

ଅମର : ତଥାପି ତପନ ଏ ବିଷୟ ନେଇ ଏମିତି ନିଷ୍ପତ୍ତି ନେବା ଠିକ୍ ନୁହେଁ । ତୋ ସ୍ତ୍ରୀ ମତାମତ ନ ନେଇ ଏସବୁ କରିବାଟା ମୁଁ ପସନ୍ଦ କରୁନି । ଜଣେ ବନ୍ଧୁ ହିସାବରେ ମୁଁ ବରଂ କହିବି ଆଉ କିଛି ଦିନ ସମୟ ନେଇ କଥାଟିକୁ ଚିନ୍ତା କର । ହୁଏତ ଏ ବିଷୟ ନେଇ ଭବିଷ୍ୟତରେ ତୁମ ଫ୍ୟାମିଲି ଲାଇଫରେ କିଛି



Digitized by PPRACHIN, SOA

ମନାନ୍ତର ଘଟିପାରେ ।

ତପନ : (ଉଠି ଠିଆ ହୋଇଯାଏ)

ଅମର : ଉଠି ଠିଆ ହେଇଗଲୁ ଯେ...... ?

ତପନ : ମୁଁ ବହୁତ ଭାବିଚିନ୍ତି ମନ ସ୍ଥିର କରି ଆସିଛି । ତୁ ଯଦି ପାରିବୁନି ସଫ ସଫା ମନା କରିଦେ । ମୁଁ ଅନ୍ୟ କେଉଁଠି ବ୍ୟବସ୍ଥା କରିବି ।

ଅମର : (କିଛି ସମୟ ଚିନ୍ତା କରି) ଠିକ ଅଛି । ତୁ ଯେତେବେଳେ ସ୍ଥିର କରି ସାରିଛୁ ମୋର ଆଉ କିଛି କରିବାର ନାହିଁ । ତେବେ....ମୋ ଅପରେସନ ଥିଏଟରକୁ ଚାଲ....ଆଜି ତୋ ଅପରେସନ୍ କରିଦେବି ।

**(ତପନ ଓ ଅମର ଦୁଇ ଜଣଯାକ ହାତ ବଢେଇ ହାତ ମିଶାଇଲେ ।)**

***(ଅତୀତ ଘଟଣାବଳୀର ଦୃଶ୍ୟ ଶେଷ ହୁଏ)***

(ପୂର୍ବ ଦୃଶ୍ୟର ସେଇ ଘରେ ଝରକା ପାଖରେ ଠିଆ ହୋଇଛି ତପନ । ଚିତ୍କାର କରି ଉଠିଛି ।)

ତପନ : ନା...ନା...

**(ପରେ ପରେ ଯେମିତି ଜୀବିତ ଫେରି ପାଉଛି)**

ଶୀଳା : (ପ୍ରବେଶ) ଆରେ ସେଠି ଝରକା ପାଖରେ ଠିଆ ହୋଇ କ'ଣ ଦେଖୁଛ ।

ତପନ : ଏଁ ହଁ ଆକାଶଟାକୁ ଦେଖୁଛି ।

ଶୀଳା : ରାତି ଅଧ ହେଲାଣି - ସେ ମେଘୁଆ ଆକାଶକୁ ଦେଖି କ'ଣ ପାଉଛ ।

ତପନ : ଦେଖୁଛି ଆକାଶଟା ବେଳେବେଳେ ଏମିତି ଦେଖାଯାଏ ସତେ ଯେମିତି ଗୋଟେ ରୂପସୀ... ସେତେବେଳେ ତା ସୌନ୍ଦର୍ଯ୍ୟର ଆକର୍ଷଣରେ ମଣିଷ ମତୁଆଲା ହୋଇଉଠେ । ହଠାତ୍ ସେ ରୂପସୀ



Digitized by PPRACHIN, SOA

ଆକାଶ ଏମିତି କାହିଁକି ଘନ ଅନ୍ଧକାରର ରାକ୍ଷସୀ ପାଲଟିଯାଏ ମୁଁ ବୁଝି ପାରେନି ।

ଶୀଳା : ହଠାତ୍ ତୁମର ଦର୍ଶନତତ୍ତ୍ୱ କାହିଁକି ବାହାରି ପଡେ ମୁଁ ତ ବୁଝିପାରୁନି । କଳା ବାଦଲ ଖଣ୍ଡେ ଘୋଟି ଦେଇଥିବ ସେ ପୁଣି ଚାଲିଗଲେ ସବୁ ସଫା । ରାତି ବାରଟା ବାଜିବାକୁ ବସିଲାଣି ଆସ ଶୋଇବ, ନ ହେଲେ ଦେହକୁ ଖରାପ କରି ବସିବ । ଆସ ।

ତପନ : (ସଗତଃ) ଇଉ ବ୍ଲଡି ବିଚ୍ । ତୋତେ ମୁଁ ଉଚିତ ଶିକ୍ଷା ଦେବି ।

ଶୀଳା : ମୋତେ କ'ଣ କହିଲ ?

ତପନ : ମୁଁ, ନା ତ ! (ଶୀଳା ହସିଉଠିଲା)

ଶୀଳା : ମୋତେ ଜଣାଗଲା ତୁମେ ଯେମିତି କିଛି କହିଲ ।

ତପନ : ରାତି ଅନେକ ହେଲାଣି ତୁମ ଆଖିରେ ନିଦ ଆସିଗଲାଣି ସେଇଥି ପାଇଁ ଠିଆ ଠିଆ ସପ୍ନ ଦେଖୁଛ ।

**(ଦୁହେଁ ହସି ଉଠିଛନ୍ତି । ହେଲେ ତପନ ହସଟା ଯେମିତି କୃତ୍ରିମତାରେ ଭରା ।)**





Digitized by PPRACHIN, SOA

# ଚତୁର୍ଥ ଦୃଶ୍ୟ

(ସେଇ ଘର। ସମୟ ସକାଳ। ତପନ ବାବୁ ପୂର୍ବ ରାତ୍ରି ଭଳି ଟେବୁଲ୍ ପାଖରେ ବସି ଲେଖାଲେଖି କରୁଛନ୍ତି। ଅଲେଖ ଆସିଛି।)

ଅଲେଖ : ବାବୁ, ଆପଣ ନିତ୍ୟକର୍ମ ସାରି ନାହାଁନ୍ତି। ମା ତେଣେ ସାବିତ୍ରୀ ପୂଜା ସାରି ଦେଲେଣି। ଏଇନା ପ୍ରଣାମ କରିବାକୁ ଆସିବେ। ଆଉ ଟିକିଏ ପରେ ପରାଗ ଲାଗିଯିବ।

ତପନ : ମା ଙ୍କୁ କହିଦେ ପ୍ରଣାମ କରିବା ଦରକାର ନାହିଁ।

ଅଲେଖ : ଏ କଥା କହିଲେ କ'ଣ ମା ଶୁଣିବେ। ଆପଣ ଯାଇ ଅନ୍ତତଃ ଦାନ୍ତଟା ଘଷି ଦିଅନ୍ତୁ। ପରାଗ ଆରମ୍ଭ ହୋଇଯିବା ଆଗରୁ ଜଳଖିଆ ଖାଇ ନେବାକୁ କହିଛନ୍ତି। ମୁଁ ଜଳଖିଆ ରେଡି କରି ଆଣୁଛି।

**(ତପନ ଅଲେଖ କଥାରେ କୌଣସି ଧ୍ୟାନ ନଦେଇ ତାଙ୍କ କାମରେ ଲାଗିଥାନ୍ତି। ଅଲେଖ ଭିତରକୁ ଚାଲିଯାଏ। କିଛି ସମୟ ପରେ ହାତରେ ପୂଜା ଥାଳି ଧରି ଆସିଲା ଶୀଳା।)**

ଶୀଳା : ପୁଣି ସକାଳୁ ସେ ଲେଖାପଢା ଆରମ୍ଭ କରିଦେଇଛ। କ'ଣ ଯେ ତୁମକୁ କହିବି ...। କାଲି ରାତିରୁ ଟାଗିଦା କରି କରି ଲାଭ କ'ଣ ହେଲା। ହଉ ପ୍ରଣାମଟା ଶେଷ କରିଦିଏ। ତା'ପରେ ଯାଇ ଦାନ୍ତ ଘଷି କିଛି ଖାଇଦିଅ।

**(ଶୀଳା ପୂଜା ଥାଳି ରଖି ତପନଙ୍କୁ ପ୍ରଣାମ କରିବା ପାଇଁ ତଳେ ବସିଯାଏ। ତପନ ପୂଜା ଥାଳିକୁ ଗୋଡରେ ଆଡେଇ ଦିଏ। ଶୀଳା ତପନର ଏ ପ୍ରକାର ବ୍ୟବହାରରେ ଆତଙ୍କିତ ହୋଇ ଉଠେ।)**

ଶୀଳା ଏସବୁ ତୁମେ କ'ଣ କଲ ?



Digitized by PPRACHIN, SOA

ତପନ : ଦରକାର ନାହିଁ । ଏ ପ୍ରକାର ପ୍ରବଞ୍ଚନା ଦରକାର ନାହିଁ ।

ଶୀଳା : ପ୍ରବଞ୍ଚନା - ମାନେ.... !

ତପନ : ମାନେଟା ତୁମେ ଠିକ୍ ବୁଝିଛ ।

ଶୀଳା : କ'ଣ ହେଇଛି ତୁମର । ଆଜି ସାବିତ୍ରୀ ଅମାବାସ୍ୟା ଭଳି ଏତେ ବଡ ଶୁଭ ଦିନଟାରେ ଏସବୁ କ'ଣ କଲ । ତୁମେ କ'ଣ ଜାଣିନା - ଏଥିରେ ମୋର, ପରିବାରର ସମସ୍ତଙ୍କର ଅମଙ୍ଗଳ ହେବ ।

ତପନ : ଏଇ ପରିବାରର ମଙ୍ଗଳ ପାଇଁ ତୁମେ ଯାହା କରିଛ ତୁମ ମନକୁ ପଚାର । ଏମିତି ସଜେଇ ହେଲେ ଦୋଷ କଟିଯାଏନି ।

ଶୀଳା : କ'ଣ କରିଛି ମୁଁ, କି ଦୋଷ ପାଇଁ ମୋତେ ତୁମେ ଏତେ ଦଣ୍ଡ ଦେଉଛ । ମୁଁ ତୁମ ଗୋଡ ଧରୁଛି । ତୁମ ମନରେ ଯାହା ଅଛି ସଫା ସଫା କହି ଦିଅ । ମୁଁ ଯଦି କିଛି ଦୋଷ କରିଥିବି ଯାହା ଦଣ୍ଡ ଦେବ ସବୁ ସହିଯିବି ।

**(ତପନ କିଛି ନ ଶୁଣି ଶୀଳାକୁ ଗୋଡରେ ଆଡେଇ ଦେଇ ଚାଲିଯାଏ ବାହାରକୁ । ଶୀଳା ସତେ ଯେମିତି ନିର୍ଜୀବ ଶୀଳାଖଣ୍ଡ ପାଲଟି ଯାଇଛି ।)**

ଅଲେଖ : (ଭିତରୁ) ମା ଏପଟେ ଅଗଣାକୁ ଆସନ୍ତୁ ଦେଖିବେ ରାହୁ କେମିତି ସୂର୍ଯ୍ୟ ଦେବତାଙ୍କୁ ଗିଳି ଦେଉଛି । ମା....

**(ଶୀଳା ସୋଫାରେ ମୁଣ୍ଡ ବାଡେଇ କାନ୍ଦିବାକୁ ଲାଗେ । ଅନ୍ଧାର ହୁଏ ।)**





Digitized by PPRACHIN, SOA

## ପଞ୍ଚମ ଦୃଶ୍ୟ

(ଅମର ବାବୁଙ୍କ ପୂର୍ବ ବର୍ଣ୍ଣିତ କ୍ଲିନିକ । ଅମର ବସିଛନ୍ତି ବାହାରୁ ଆସନ୍ତି ତପନ ।)

ଅମର : ଆରେ ତପନ । ତୁ ଏତେ ସକାଳୁ ସକାଳୁ କୁଆଡେ ।

ତପନ : (କିଛି ନ କହି ଆସି ବସିଯାଇଛି)

ଅମର : କହ ବନ୍ଧୁ ହଠାତ୍ ଏଇ ଡାକ୍ତର କେମିତି ମନେ ପଡ଼ିଲା । ତୋର କ'ଣ ସେବା କରିପାରେ । ଆରେ ତୁ କିଛି କହୁନୁ କାହିଁକି ? କ'ଣ ହେଇଛି ତୋର ।

ତପନ : ମୋର ସବୁ ଶେଷ ହୋଇଯାଇଛି ଅମର । ଭାଗ୍ୟର ବିଡମ୍ବନାରେ ମୋର ସୁନାର ସଂସାର ଆଜି ପୋଡି ଛାରଖାର ହେଇଯାଇଛି ।

ଅମର : ଆରେ ପାଗଳଙ୍କ ଭଳିଆ ଏମିତି କ'ଣ କହି ଚାଲୁଛୁ । ଅସୁବିଧାଟା କ'ଣ ମୋତେ ସ୍ପଷ୍ଟ କରି କହ ।

ତପନ : ମୋରି ସରଳତାର ସୁଯୋଗ ନେଇ ମୋ ସ୍ତ୍ରୀ ମୋ ସହିତ ବିଶ୍ୱାସ ଘାତକତା କରିଛି ।

ଅମର : ମାନେ ?

ତପନ : ସେ ରାକ୍ଷସୀଟା ମୋର ମାନ ସମ୍ମାନ ସବୁ ମାଟିରେ ମିଶେଇ ଦେଇଛି । ସେ ମା ହେବାକୁ ଯାଉଛି ।

ଅମର : ସ୍ତ୍ରୀ ଲୋକଟା ମାଆ ହେବାକୁ ଯାଉଛି । ଏଥିରେ ତୋର ମାନ ସମ୍ମାନ ମାଟିରେ ମିଶିଯିବ - ମୁଁ ତ କିଛି ବୁଝିପାରୁନି ।

ତପନ : ବୁଝିପାରୁନୁ । ଦୁଇବର୍ଷ ତଳେ ତୁ ନିଜ ହାତରେ ମୋର ଅପରେସନ୍ କରିଛୁ । ଏମିତି ପରିସ୍ଥିତିରେ ଶୀଳା ମାଆ ହେବାକୁ ଯାଇ ମୋ ସହିତ ବିଶ୍ୱାସଘାତକତା କରିନି ।



Digitized by PPRACHIN, SOA

ଅମର : ସତେତ, ତୁ ଭାକ୍ଟୋଟମି ଅପରେସନ୍ ହେଇଛୁ । ମାଇଁ ଗଡ୍ ।

ତପନ : ମୁଁ ପାଗଳ ହୋଇଯିବି ଅମର । ମୋ ମୁଣ୍ଡ କିଛି କାମ କରୁନି । ତୁ କହ ମୁଁ ଏ ପରିସ୍ଥିତିରେ କ'ଣ କରିବି ।

ଅମର : କରିବୁ ଆଉ କ'ଣ । ହାତ ଧରି ଯେତେବେଳେ ବାହା ହେଇଛୁ ତାକୁ କ'ଣ ଘରୁ କାଢି ଦେଇ ପାରିବୁ ।

ତପନ : ନୋ, ତାକୁ ମୁଁ ଘରୁ କାଢି ପାରିବିନି । କିନ୍ତୁ ଦୁନିଆରୁ କାଢି ଦେଇପାରିବି । ଇଏସ୍ ଆଇ ଉଇଲ୍ ଫିନିସ୍ ହର ।

ଅମର : (ହସି ଉଠିଛି)

ତପନ : ତୁ ବିଶ୍ୱାସ କରିପାରୁନୁ ଯେ ମୁଁ ତାକୁ ହତ୍ୟା କରିପାରିବି । ଏୟା ନା ? ଦେଖିବୁ....ମୁଁ କ'ଣ କରିପାରେ ।

ଅମର : (ଖୁବ୍ ଜୋରରେ ହସି ଉଠେ) ଆରେ ତୁ କ'ଣ ଭାବି ପାରୁଛୁ ଶୀଳା ପରି ସ୍ତ୍ରୀ ତୋ ସହିତ ବିଶ୍ୱାସ ଘାତକତା କରିବ ।

ତପନ : ସେ ତ ସେ କଥା କରିସାରିଛି । ସେଥିପାଇଁ ଅନ୍ୟ ଜଣଙ୍କର ଅବୈଧ ସନ୍ତାନକୁ ଧାରଣ କରିଛି । ଶୀଳା କଳଙ୍କିନୀ ।

ଅମର : ସେ ସନ୍ତାନ ଅବୈଧ ହୋଇପାରେନା । ଶୀଳା ଭଳି ଜଣେ ପବିତ୍ର ନାରୀକୁ ଏ ପ୍ରକାର ଦୋଷାରୋପ କରିବା ଅନ୍ୟାୟ । ଶୀଳା ଦେହରେ ସାମୟିକ ଭାବେ ଶିଉଳି ଲାଗିଯାଇ ପାରେ ହେଲେ କଳଙ୍କ କେବେବି ନୁହେଁ ।

ତପନ : ତୁ ଶୀଳାକୁ ଯେମିତି ଦେଖୁଛୁ ପ୍ରକୃତରେ ସେ ସେମିତି ନୁହେଁ ଅମର । ମୁହଁରେ ଅମୃତ କିନ୍ତୁ ତା ହୃଦୟରେ......

ଅମର : ଚୁପ୍ ରହ । ମୁଁ ଡାକ୍ତର - ତୋ ଅପରେସନ କରିଛି । ମୁଁ ଜାଣିଛି କାହିଁକି ଏ ଆକ୍ସିଡେଣ୍ଟ ହେଇଛି ।

ତପନ : ମାନେ ତୁ ମୋର ଯେଉଁ ଅପରେସନ୍ କରିଥିଲୁ ସେଇଟା ସକ୍ସେସଫୁଲ୍ ହେଇନି ।

ଅମର : ସେଦିନ ସତରେ ମୁଁ ତୋର ଅପରେସନ୍ କରିନଥିଲି । ତୋ



Digitized by PPRACHIN, SOA

ମନ ବୁଝିବାକୁ କେବଳ ଟିକିଏ କଟାକଟି କରି ବ୍ୟାଣ୍ଡେଜ୍ ଭିଡି ଦେଇଥିଲି ।

ତପନ : ନା, ତୁ ମୋତେ ଲୁଚାଅନା ଅମର । ମୋ ପରିବାରରେ ଅଶାନ୍ତି ସୃଷ୍ଟି ହେବନି ଏମିତି କିଛି ଭାବି ତୁ ମୋତେ ଠକି ଦେଉଛୁ ।

ଅମର : ସେଦିନ ତୋତେ ଠକି ଥିଲି ତପନ-ଆଜି କିନ୍ତୁ ଯାହା ସତ୍ୟ ସେଇକଥା କହୁଛି । ତୋ ସ୍ତ୍ରୀ ଅଜାଣତରେ ତୁ ସେଦିନ ଅପରେସନ୍ ହେବୁ ବୋଲି ମୋତେ ବାଧ କଲୁ । ପ୍ରଥମେ ମୁଁ ତୋ କଥାରେ ସମ୍ମତି ଦେଲିନି । କିନ୍ତୁ ଦେଖିଲି ତୁ ଯେମିତି ମୁଡରେ ଅଛୁ ମୋ ପାଖରୁ ଚାଲିଯାଇ ଅନ୍ୟ କୋଉଠି ଅପରେସନ୍ କରିଦେବୁ । ସେଥିପାଇଁ ପଛରେ ତୋ ଅପରେସନ୍ କରିବାକୁ ରାଜି ହେଲି ଏବଂ ଅପରେସନ୍ ଟେବୁଲ୍‌କୁ ନେଇ ଅପରେସନ୍‌ର ଏକ ନାଟକ କରାଗଲା । କାରଣ ମୁଁ ଜାଣିଥିଲି ସ୍ତ୍ରୀକୁ ଲୁଚାଇ ତୁ ଅପରେସନ୍ ହେଉଛୁ ଜଣାପଡିଗଲେ ତୁମ ଘରେ ଅଶାନ୍ତି ସୃଷ୍ଟି ହେବ ।

ତପନ : ମିଛ କଥା । ତୁ ଅପରେସନ୍‌କୁ ନାଟକ କହି ଆଉ ଗୋଟେ କାହାଣୀ ତିଆରି କରୁଛୁ । ମୁଁ ଏତେ ବୋକା ନୁହେଁ ଅମର, ତୋ କଥାକୁ ଗୋଟେ ଅନ୍ଧ ଭଳି ବିଶ୍ୱାସ କରିଯିବି ।

ଅମର : ତୁ ମୋ କଥାକୁ କେବେ ବିଶ୍ୱାସ କରିବୁନି ସେଇଥି ପାଇଁ ମୁଁ ପ୍ରମାଣ ରଖିଛି ।

ତପନ : ପ୍ରମାଣ ।

ଅମର : ସେଦିନ ତୋତେ ଅପରେସନ୍ ନ କରି ଠକିଛି ବୋଲି ସେଦିନ ଡାଏରୀରେ ଲେଖି ଦେଇଛି । କେବଳ ସେତିକି ନୁହେଁ ଅପରେସନ୍‌ରେ ମୋତେ ସହାୟତା କରୁଥିବା ନର୍ସ ମିସେସ୍ ମେରିଙ୍କ ଆଗରେ ଏ କଥା ମଧ ମୁଁ କହିଛି । ତାଙ୍କୁ ତୁ ପଚାରିପାରୁ ।

ତପନ : ତୁ ସଚ କହୁଛୁ ଅମର ।



Digitized by PPRACHIN, SOA

ଅମର : ସେ ବର୍ଷର ସେ ଡାଏରୀ ଏବେବି ମୋ ପାଖରେ ମହଜୁଦ୍ ଅଛି । ତୁ ତାକୁ ଦେଖିପାରୁ ।

**(ଅମର ଭିତରକୁ ଯାଇ ତିନି ଚାରୋଟି ପୁରୁଣା ଡାଏରୀ ନେଇ ଆସେ ଏବଂ ତା ଭିତରୁ ଗୋଟିଏ ଡାଏରୀର ପୃଷ୍ଠା ଓଲଟାଇ ତପନ ହାତକୁ ଦିଏ । ତପନ ଡାଏରୀ ପଢି ଅମର ମୁହଁକୁ ଚାହିଁ ରହେ । ତପନର ଆଖିରେ ଲୁହ - ଅମର ମୁହଁରେ ହସ ଉକୁଟି ଉଠେ । ଦୁହେଁ ଦୁହିଁଙ୍କୁ କୁଣ୍ଢାଇ ଧରନ୍ତି ।)**

ତପନ : (କାନ୍ଦ କାନ୍ଦ ହୋଇ) ତୁ ମୋତେ ବଞ୍ଚେଇ ଦେଇଛୁ ଅମର । ତୁ ମୋର ଆଖି ଖୋଲି ଦେଇଛୁ । ମୋର ଅବିବେକି ପଣିଆ ଯୋଗୁ ଆଜି ସାବିତ୍ରୀ ଅମାବାସ୍ୟା ଭଳି ପବିତ୍ର ଦିନରେ ଶୀଳାକୁ ମୁଁ ସନ୍ଦେହ କରିଛି । ଅପମାନିତ କରିଛି । ତା ପାଖକୁ ଯାଇ ମୋତେ କ୍ଷମା ମାଗିବାକୁ ପଡିବ ।

ଅମର : ହଁ ସେୟା କରିବା ତୋ ପକ୍ଷରେ ଭଲ ହେବ । ସ୍ୱାମୀ ସ୍ତ୍ରୀ ଭିତରେ ଥରେ ସନ୍ଦେହର ମାୟାଜାଲ ସୃଷ୍ଟି ହେଲେ ତା'ର ପରିଣତି ବଡ ଭୟଙ୍କର ହୁଏ ତପନ । ଏ କଥା ତୋର ବୁଝିବା ଦରକାର ।

ତପନ : ମୁଁ ଆସୁଛି ଭାଇ । ତୋ ଉପକାର ପାଇଁ ବହୁତ ଧନ୍ୟବାଦ । ଆସୁଛି ।

ଅମର : ତୁ ଯା, ମୁଁ କ୍ଲିନିକ କାମ ସାରି ତୋ ଘରେ ପହଞ୍ଚିବି, ତୁମ ଦି' ଜଣଙ୍କୁ ଆନନ୍ଦ ଓ ଖୁସି ମୁଡରେ ଦେଖି ମୁଁ ଫେରି ଆସିବି ।

**(ତପନ ଚାଲିଯାଏ । ଅମର ହାତ ହଲେଇ ତାକୁ ବିଦାୟ ଦିଏ । ମଞ୍ଚ ଅନ୍ଧାର ହୁଏ ।)**





Digitized by PPRACHIN, SOA

## ଷଷ୍ଠ ଦୃଶ୍ୟ

(ତପନ ବାବୁଙ୍କର ସେଇ ପୂର୍ବ ବର୍ଣ୍ଣିତ ଡ୍ରଇଁରୁମ୍। ଝରକା ପାଖରେ ଶୀଳା ଠିଆ ହୋଇଛି । ବାଳ ମୁକୁଳା, କାନ୍ଦି କାନ୍ଦି ଆଖି ଫୁଲି ଯାଇଛି । ସକାଳ ବେଳା ତପନର ବ୍ୟବହାର ତା'ର ମନେ ପଡିଯାଉଛି। ତପନର କଡା କଥାଗୁଡାକ ତା' କାନରେ ପ୍ରତିଧ୍ୱନିତ ହେଉଛି ।)

ତପନ : (କଣ୍ଠସ୍ୱର) ଦରକାର ନାହିଁ। ଏ ପ୍ରକାର ପ୍ରବଞ୍ଚନା ଦରକାର ନାହିଁ।

ତପନ : (କଣ୍ଠସ୍ୱର) ଏଇ ପରିବାରର ମଙ୍ଗଳ ପାଇଁ ଯାହା କରିଛ ତୁମ ମନକୁ ପଚାର......

**(ବାହାରୁ ଆସିଛି ତପନ । ଶୀଳା ମୁହଁକୁ ଚାହିଁ ତା ପାଖକୁ ଆଗେଇ ଯାଇଛି । ଶୀଳା ପ୍ରଚଣ୍ଡ ଅଭିମାନରେ ସେ ଘରୁ ବାହାରି ଯାଇଛି । ତପନ ତା ହାତକୁ ଧରି ନେଇ ଡାକିଛି ।)**

ତପନ : ଶୀଳା !

ଶୀଳା : (କୋହ ସମ୍ଭାଳି ନପାରି, କାନ୍ଦି ଉଠିଛି)

ତପନ : ମୋତେ କ୍ଷମା କରିଦିଅ ଶୀଳା । ମୁଁ ତୁମ ପାଖରେ ହାତ ଯୋଡୁଛି। ମୋତେ କ୍ଷମା କରିଦିଅ । ମୋର ଭୁଲ ପାଇଁ ମୁଁ ଅନୁତପ୍ତ । ଜୀବନରେ ଏ ପ୍ରକାର ଭୁଲ ଆଉ କେବେ ହବନି ।

ଶୀଳା : ତୁମେ ମୋର କ'ଣ ଏମିତି ଦୋଷ ଦେଖିଲ ଯେ ଏତେ ବଡ ଶାସ୍ତି ଦେଲ । କୁହ... କୁହ... ।

ତପନ : ମୁଁ ଗୋଟେ ସାଧାରଣ ମଣିଷ ଶୀଳା । ମୋର ଭୁଲ ବୁଝାମଣା ପାଇଁ ତୁମେ ଦଣ୍ଡ ପାଇଲ । ତୁମର କୌଣସି ଭୁଲ ନାହିଁ । ତୁମେ ତୁଳସୀ ଭଳି ପବିତ୍ର । ସବୁ ଭୁଲ ମୋର । ଦେଖ, ଦିପ୍ତିମାନ ସୂର୍ଯ୍ୟ



Digitized by PPRACHIN, SOA

ଯାହାର ଆଲୋକରେ ସାରା ସଂସାର ଆଲୋକିତ-ସେ ବି ପରାଗଗ୍ରସ୍ତ ହେଉଛି । ମୁଁ ତ ସ୍ନେହ, ଶ୍ରଦ୍ଧା, ଶଙ୍କା, ସନ୍ଦେହରେ ଗଢା ଜଣେ ସାଧାରଣ ମଣିଷ । ମୁଁ ବାଦ୍ ଯିବି କେମିତି । ଥରେ ମାତ୍ର ମୋ ମୁହଁକୁ ଚାହିଁ ହସି ଦିଅ, ଭାବିବି ମୋତେ କ୍ଷମା କରିଦେଇଛ ।

**(ଶୀଳା - ଲୁହ ଭରା ଆଖିରେ ଚାହିଁ ହସିବାକୁ ଚେଷ୍ଟା କରେ .... ତପନ ତାକୁ ଛାତିରେ ଚାପି ଧରେ । ସଂଗୀତର ମଧୁର ମୂର୍ଚ୍ଛନାରେ ପରିବେଶ ଆନନ୍ଦ ମୁଖର ହୋଇଉଠେ । ହାତରେ ତାଳି ମାରି ମାରି ପ୍ରବେଶ କରନ୍ତି ଅମର ଓ ବାଦଲ ।)**

ଅମର : ସାବାସ, ଇଏ ହେଉଛି ମଧୁର ମିଳନର ବେଳା । ଜୀବନ ଆକାଶରେ ବେଳେ ବେଳେ ଏମିତି ସନ୍ଦେହର ବାଦଲ ଆସିବ । ମମତାର ଶୀତଳ ପବନ ଲାଗି ସେ ବାଦଲରୁ ଦୁଇ ବୁନ୍ଦା ପାଣି ଝରି ପଡିବ, ତା'ପରେ ଆକାଶ ସଫା ହୋଇଯିବ । ଉଜ୍ଜଳ ଆଲୋକରେ ଫର୍ଚ୍ଚା ଦିଶିବ ଦୁନିଆ ।

ବାଦଲ : ଆଉ ସେତେବେଳେ ବନ୍ଧୁମାନେ ବନ୍ଧୁବର ଓ ବନ୍ଧୁ ପତ୍ନୀଙ୍କ ମୁହଁରେ ଭରିଦେବେ ଗୋଟିଏ ଗୋଟିଏ ରସର ବଟିକା - ରସାବଳି ।

**(ବାଦଲ ଗୋଟିଏ ଗୋଟିଏ ମିଠା ନେଇ ପ୍ରଥମେ ତପନ ମୁହଁରେ ପରେ ଶୀଳା ମୁହଁରେ ଦେବାକୁ ଯାଏ । ତପନ ମିଠା ଖାଇ ନିଏ । ଶୀଳା ମୁହଁରେ ଦେଲା ବେଳକୁ ବାରଣ କରେ ।)**

ଶୀଳା : ଆରେ ପରାଗ ଶେଷ ହେଲେ ଯାଇ ଖିଆ ହେବ । ଏବେ ନୁହେଁ । ଏବେ ପରା ପାକ ନିଷେଧ ।

ବାଦଲ : ପାକ ନିଷେଧ ମାନେ ରୋଷେଇ ନିଷେଧ । ଖାଇବା ନିଷେଧ ନୁହେଁ ।

ଅଲେଖ (ଭିତରୁ) ମା ଆସନ୍ତୁ ଦେଖିବେ ପରାଗ ଶେଷ ହେଇଗଲାଣି ।



Digitized by PPRACHIN, SOA

ଦିନ ପୁରାପୁରି ଫରଚା । ବାବୁ ତ ଆସିଗଲେଣି ଏଥର ବଢ଼ାବଢ଼ି କରୁଛି ।

ଅମର : ଆରେ ହଁ ଏପଟେ ବି ତପନ ମନକୁ ଘାରିଥିବା ସାମୟିକ ପରାଗ ଶେଷ ହୋଇଗଲାଣି । ଆମେ ଚାରିଜଣଙ୍କ ପାଇଁ ବଢ଼ାବଢ଼ି କର । ସମସ୍ତେ ମିଶି ଆମେ ଏଇ ଲୋଭନୀୟ ମୁହୂର୍ତ୍ତକୁ ସେଲିବ୍ରେଟ୍ କରିବୁ ।

(ସମସ୍ତେ ହସି ଉଠିଛନ୍ତି ଏକ ସଙ୍ଗରେ)





Digitized by PPRACHIN, SOA

(୧୯୭୯ ମସିହାରେ ଆକାଶବାଣୀ କଟକ ଦ୍ୱାରା ପ୍ରଚାରିତ ଯୁବବାଣୀ କାର୍ଯ୍ୟକ୍ରମରେ ସୂର୍ଯ୍ୟପରାଗ ନାଟକରେ ବିଭିନ୍ନ ଚରିତ୍ର ପାଇଁ କଣ୍ଠଦାନ କରିଥିବା କଳାପରିଷଦ, ଢେଙ୍କାନାଳର ଶିଳ୍ପୀମାନେ)

| ଚରିତ୍ର | | ଶିଳ୍ପୀଙ୍କ ନାମ |
|---|---|---|
| ତପନ | : | ଦିଲ୍ଲୀଶ୍ୱର ମହାରଣା |
| ଅଲେଖ | | ଶତ୍ରୁଘ୍ନ ମାଟି |
| ବାଦଲ | | ଦୁର୍ଗା ମହାପାତ୍ର |
| ଅମର | | ଚନ୍ଦ୍ରମଣି ବେହେରା |
| ଶୀଳା | : | ଶର୍ମିଳୀ ବୋଷ |

•

**ଅନ୍ତରାଳେ**

ସଙ୍ଗୀତାଂଶରେ : ଦୀନବନ୍ଧୁ ସାହୁ

: ଦେବେନ୍ଦ୍ର ନାଥ ସିହ୍ନା



Digitized by PPRACHIN, SOA

# ସୂର୍ଯ୍ୟ ଉଇଁବାର ବେଳ

## ଚରିତ୍ର ଲିପି

ଅଖିଳବାବୁ

ଖଡିରତ୍ନ

ଡାକ୍ତର ବାବୁ

ଜଗନ୍ନାଥ

ଗୋକୁଳୀ

ପଦ୍ମା

ପଦ୍ମା ବୋଉ

ଆଶା ଦେବୀ

ହାରମଣି

ଅଭିନୟ ସମୟ ଅବଧି ତିରିଶ ମିନିଟ୍



Digitized by PPRACHIN, SOA

# ସୂର୍ଯ୍ୟ ଉଇଁବାର ବେଳ

## ପ୍ରଥମ ଦୃଶ୍ୟ

(ଅଖିଳବାବୁଙ୍କ ଘରର ଭିତର ପାଖ ଅଗଣା । ପୁରୁଣାକାଳିଆ ମାଟିକାନ୍ଥର ଚାଳ ଘର । ଅଗଣା ମଝିରେ ତୁଳସୀ ଚଉରା । ଅଗଣାକୁ ଲାଗି ଘରର ଭିତର ବାରଣ୍ଡା । ବାରଣ୍ଡାଟି ବେଶ ପ୍ରଶସ୍ତ । ବାରଣ୍ଡାରେ ପଡିଛି ଏକ ପୁରୁଣା ଡିଜାଇନ୍‌ର ଖଟ, ଖଟ ପାଖାପାଖି ଦୁଇଟି କାଠର ଚୌକି ଓ ଟୁଲ୍ ।

ସମୟ ଅପରାହ୍ନ । ସେଇ ବାରଣ୍ଡାର ଖଟ ପାଖକୁ ଗୋଟିଏ ଆସନରେ ବସି ଜ୍ୟୋତିଷ ବିଷାରଦ ଖଡିରତ୍ନ ମହାଶୟ ଗଣନା କରିବାରେ ଲାଗିଛନ୍ତି । ତାଙ୍କ ଠାରୁ ଅଳ୍ପ ଦୂରରେ ଗୃହସ୍ୱାମୀ ଅଖିଳବାବୁ ଓ ତାଙ୍କର ସହଧର୍ମିଣୀ ପଦ୍ମାବୋଉ ବସିରହିଛନ୍ତି । ମଝିରେ ମଝିରପେ ତାଙ୍କ ପାକୁଆ ପାଟିରୁ ହଁ, ହେଲା ଇତ୍ୟାଦି ଶବ୍ଦ ଅନାବଶ୍ୟକ ଭାବେ ବାହାରି ପଡୁଛି ।)

ଖଡିରତ୍ନ : ମେଷ, ବୃଷ, ମିଥୁନ, କର୍କଟ, ସିଂହ, ତୁଳା, କନ୍ୟା, ବିଛା, ଧନୁ, ମକର, କୁମ୍ଭ, ମିନ । (ସ୍ଲେଟ ଉପରେ ଗାର ଟାଣି) ମେଷ, ବୃଷ, ମିଥୁନ, କର୍କଟ, ସିଂହ, ତୁଳା.... । ହଁ, ହେଲା ଏଥର ହେଇଗଲା ବାବା ଅଖିଳ....।

ଅଖିଳ : ଆଜ୍ଞା... !

ଖଡିରତ୍ନ : ହଁ, ହେଲା । ତୋ ଝିଅର ରାଶି ହେଉଛି ତୁଳା । ଆସନ୍ତା ସଂକ୍ରାନ୍ତି ପାଖରୁ ଆସି ଶୁଭବେଳ ପହଞ୍ଚି ଯାଉଛି । ଅତିବଡରେ ଆସନ୍ତା ମାର୍ଗଶୀର ସୁଦ୍ଧା ବାହାଘରଟା ହେବ ହିଁ ହେବ । ହେଲା ।

ପଦ୍ମାବୋଉ : ଗତ ତିନିବର୍ଷ ଭିତରେ ଏମିତି ଗଣାନା କରି କହିଥିଲେ । ଚାରି ଚାରିଟା ଜାଗାରୁ ପ୍ରସ୍ତାବ ଆସିଲା । ସବୁ ଠିକ୍‌ଠାକ୍ ହେଲା, ଶେଷ



Digitized by PPRACHIN, SOA

ବେଳକୁ ଭାଙ୍ଗିଗଲା ।

ଖଡିରତ୍ନ : ହଁ ଭାଙ୍ଗିଗଲା । କାହିଁକି ଭାଙ୍ଗିଗଲା ? କାରଣ ଝିଅର ଗୁରୁ ଶୁଦ୍ଧି କି ରବି ଶୁଦ୍ଧି ନଥିଲା । ଆସନ୍ତା ୧୪ ତାରିଖରୁ ରବି ନବମ ଆଉ ବୃହସ୍ପତି ଦ୍ୱିତୀୟ ସ୍ଥାନରେ ଅବସ୍ଥାନ କରିବେ । ପାଠ କହୁଛି... ହଁ, ହେଲା...

ଜନ୍ମ ରାଶେଃ ଶୁଭ ସୂର୍ଯ୍ୟହି ଷଷ୍ଠଦଶ ଲାଭଗଃ
ଦ୍ୱିପଞ୍ଚେ ନବମୋଽପିଷ୍ଟ ତ୍ରୟୋଦଶ ବିନାପ୍ରମ ।

ଶୁଭକାର୍ଯ୍ୟ ହବାର ହିଁ ହବ । କାହାର ପାବାର ନାହିଁ ଅଟକାଇ ଦେବ । ହେଲା...।

ଅଖିଳ : ଗୋପାଳ ପ୍ରସାଦରୁ ଏବେ ଆସି ଝିଅକୁ ଦେଖି ପସନ୍ଦ କରି ଯାଇଛନ୍ତି । କାଲି ପୁଅର ମାମୁଁ ଆସି ପୁଣି କଥାବାର୍ତ୍ତା କରିବାକୁ ଖବର ଦେଇଛନ୍ତି । ସେଇଠି ହେବ କି ନାହିଁ ଟିକିଏ ଭଲ ଭାବରେ ଗଣନା କରି କୁହନ୍ତୁ ।

ଖଡିରତ୍ନ : ହଁ, ପାଠ ଡାକୁଛି ଶୁଭ ସମୟ ଲଗାତର ୮ ମାସ ରହିବ...। ହେଲା...।

ପଦ୍ମାବୋଉ : ଏଇ ଗୋପାଳ ପ୍ରସାଦ ପ୍ରସ୍ତାପଟା ହେବ କି ନାହିଁ କୁହନ୍ତୁ ଦାଦା, ଅନ୍ୟ ପ୍ରସ୍ତାବ ଭଳି ଭାଙ୍ଗିଯିବନି ?

ଖଡିରତ୍ନ : (ହାତରେ ପଦ୍ମାବୋଉଙ୍କୁ ଚୁପ୍ ରହିବାକୁ ଇଙ୍ଗିତ କରି ଆଙ୍ଗୁଠି ଦ୍ୱାରା ନିଜର ନିଶ୍ୱାସ ପ୍ରଶ୍ୱାସ ପରୀକ୍ଷା କରି)

ହଁ, ବୁଝିଲ ବହୁ - ତୁମ ଝିଅ ପଦ୍ମା ଏଇଠାରୁ ଦକ୍ଷିଣ ଦିଗରେ ରାଜରାଣୀ ହବାର ଯୋଗ ରହିଛି । ହେଲା...।

ଅଖିଳ : ସେ କଥା ଛାଡନ୍ତୁ । ପଦ୍ମା ବୋଉ ଯାହା ଜାଣିବାକୁ ଚାହୁଁଛି ସେ କଥା କୁହନ୍ତୁ ?

ଖଡିରତ୍ନ : ହଁ ହେଲା ! କହୁଛି ! ଆସନ୍ତା ସଂକ୍ରାନ୍ତି ଯାଏ, ଏ ପ୍ରସ୍ତାବଟା ତିଷ୍ଠି ରହିଲେ ହେବ । ନ ହେଲେ... ଜ୍ୟୋତିଷ ବିଷାରଦ ଅନ୍ତର୍ଯ୍ୟାମୀ ଖଡିରତ୍ନ ଏ ବିଦ୍ୟା ପରିତ୍ୟାଗ କରି ବାନପ୍ରସ୍ଥରେ ଚାଲିଯିବ... ହଁ ।



Digitized by PPRACHIN, SOA

ହେଲା...।
(ହାତରେ ଧରିଥିବା ଖଡିଟିକୁ ନାଟକୀୟ ଠାଣିରେ ଦୂରକୁ ଫୋପାଡି ଦେଇ ଗୋଟିଏ କନା ବ୍ୟାଗରେ ପାଞ୍ଜି ଇତ୍ୟାଦି ପୁରାଇବାରେ ଲାଗନ୍ତି । ହଠାତ୍ ଅଖିଳ ହାତରେ କୋଡିଏ ଟଙ୍କିଆ ନୋଟ୍‌କୁ ଦେଖି...)
ଏଇଟା ହେଲାନି ଅଖିଳ । ଦୁଇବର୍ଷ ତଳେ କୋଡିଏ ଟଙ୍କା ଦେଉଥିଲ, ଏବେକୁ ପଚାଶ ନହେଲେ ମହର୍ଗକାଳ ।

ଅଖିଳ : (ପୁଣି ଦଶ ଟଙ୍କା ଦିଅନ୍ତି)

ଖଡିରତ୍ନ : ହଁ ହେଲା...। ଏଥର ନିଧକ ରହ ବାପା...
(ପକେଟରୁ ପାନ ଡବା କାଢ଼ି ଦେଖନ୍ତି ପାନ ଶେଷ ହୋଇଯାଇଛି)
ହଁ ଇଏ ବି ଖତମ । ଘରେ ପାନ ଡାଲା ଆଉ ରହୁନି କି ବହୁ...

ପଦ୍ମାବୋଉ : ବସନ୍ତୁ ମୁଁ ପାନ ଭାଙ୍ଗି ଆଣୁଛି ! (ପଦ୍ମା ବୋଉ ବାରଣ୍ଡା ପାଖ ଦ୍ୱାର ଦେଇ ଭିତରକୁ ଯାଆନ୍ତି)

ଖଡିରତ୍ନ : ମୋ ପାନରେ ସରୁ ସରୁ ଗୁଣ୍ଡ ଗୁଆ ପକାଇବ ବହୁ (ଅଖିଳଙ୍କୁ)
ହଁ ଶତ୍ରୁରି ହେଲା... ଆଉ ଚୋବେଇ ହେଉନି...।
(ହଠାତ୍ ପାଟି ଆଁ କରି ଅଖିଳବାବୁଙ୍କୁ ଦେଖନ୍ତି)

ଅଖିଳ : ଏଁ ଆପଣଙ୍କର କ'ଣ ସବୁକଳ ଦାନ୍ତ ପଡିଗଲାଣି ଦାଦା...।

ଖଡିରତ୍ନ : ପଡି ନାହିଁରେ...ସବୁ ଡାକ୍ତର ପାଖରେ ଉପାଡି ଦେଲି । ଭାରି ଦପ୍ତର କଲେ – ଭାବିଲି ଦୁଷ୍ଟ ଗୋରୁ ଅପେକ୍ଷା ଶୂନ୍ୟ ଗୁହାଳ ଭଲ । ହେଲା...।

ଅଖିଳ : ଝିଅଟା କ'ଣ ସତରେ ପାରି ହୋଇଯିବ ଦାଦା... ମୋତେ ଟିକିଏ ଖୋଲିକରି କୁହନ୍ତୁ । କଂସା, ବାସନ, ଖଟ, ସୋଫା ସବୁ ରଖିଛି । ଜମି ଖଣ୍ଡେ ବିକ୍ରୀ କରି ସ୍କୁଟର ପାଇଁ ଟଙ୍କା ରଖିଛି । ହେଲେ ଯେତିକି ବୟସ ବଢିଯାଇଛି ସେତିକି ମାଡ଼ି ପଡୁଛି ।

ଖଡିରତ୍ନ : ହଁ ଆରେ ମାଡି ପଡିବ କାହିଁକି ? ସରକାର କହୁଛି ୨୦ ବର୍ଷ



Digitized by PPRACHIN, SOA

ପରେ ଝିଅକୁ ବାହାଦେଲେ ସାସ୍ଥ୍ୟ, ମନ, ଦେହ ସବୁ ଠିକ୍ ରହିବ । ତୁ କିଛି ବ୍ୟସ୍ତ ହଅନି - ସବୁ ଠିକ୍ ହେଇଯିବ । ହଁ... ପାନଟା କେତେଦୂର ଗଲା । ମୋତେ ପୁଣି ନୂଆ ଡାକ୍ତର ଘରକୁ ଯିବାକୁ ହେବ । ହେଲା...।

ଅଖିଳ : ନୂଆ ଡାକ୍ତରମାନେ... ଆପଣ କାହା କଥା କହୁଛନ୍ତି ?

ଖଡିରତ୍ନ : ଆମ ଗାଁ ସାସ୍ଥ୍ୟ କେନ୍ଦ୍ରର ସେ ଲାଞ୍ଜୁଆ ଡାକ୍ତର ଆଉ ଅଛି ? ତା ବଦଳରେ... ଜଣେ ନୂଆ ଡାକ୍ତର ଆସିଛନ୍ତି । ହଁ ତାଙ୍କର ମା ଡକେଇଛନ୍ତି । ହେଲା...।

(ବାହାରୁ ଆସିଛି ପଦ୍ମା - ହାତରେ ତା'ର କିଛି କାଗଜପତ୍ର । ସେ ଆସି ଖଡିରତ୍ନଙ୍କୁ ପ୍ରଣାମ କରିଛି - ଘର ଭିତରୁ ଆସିଛନ୍ତି ପଦ୍ମା ବୋଉ ହାତରେ ଖିଲ ପାନର ଥାଳିଆ)

ଖଡିରତ୍ନ : ହଁ ହେଲା... ଆୟୁଷ୍ମତୀ ଭବ । ଏତେବେଳେ କୁଆଡେ ଯାଇଥିଲୁ ମା ?

ପଦ୍ମା : ନାରୀ କଲ୍ୟାଣ ସମିତ ସଭାଥିଲା ଅଜା ।

ଖଡିରତ୍ନ : (ପାନ ଡବାରେ ପାନ ସଜାଉ ସଜାଉ) ହଁ ତୁ ସେକ୍ରେଟ୍ରି ହେଇଛୁ ପରା ।

ପଦ୍ମାବୋଉ : ସେ ଦି, ପ୍ରହରରୁ ଯାଇଛି ଯେ ଏବେ ଫେରୁଛି । ଅଖିଆ ଅପିଆ ସେଇ ନାରୀ କଲ୍ୟାଣ ସମିତିରୁ କ'ଣ ମିଳୁଛି କେଜାଣି ।

ଖଡିରତ୍ନ : ମୁଁ ଚାଲିଲି ବାପା ଅଖିଳ ।

ଅଖିଳ : ଚାଲନ୍ତୁ ମୁଁ ବାଟେଇ ଆସେ...।

(ଖଡିରତ୍ନ ଓ ଅଖିଳ ଦୁହେଁ ଚାଲିଯାଆନ୍ତି)

ପଦ୍ମାବୋଉ : ପଦ୍ମା ଆସନ୍ତା କାଲି ତୋର ନାରୀ କଲ୍ୟାଣ ସମିତି ଯିବାର ନାହିଁ । ତୋତେ ଘରେ ରହିବାକୁ ପଡିବ ।

ପଦ୍ମା : ନାଁ, କାଲି ମୁଁ ରହିପାରିବିନି । ଆମ ସମିତି ଦେଖିବାକୁ ଜଣେ ବାବୁ ଆସିବେ ବୋଲି ଚିଠି ଆସିଛି ।



Digitized by PPRACHIN, SOA

ପଦ୍ମାବୋଉ : ସେ ଗେଲବସର କଥା ଥାଉ । ଗୋପାଳପ୍ରସାଦରୁ ସେ ପୁଅର ମାମୁଁ ଆଉ ଜଣେ ଦି' ଜଣ ତେତେ ଦେଖିବାକୁ ଆସିବେ । ନିର୍ବନ୍ଧ ଆଉ ବାହାଘର ତାରିଖ ସ୍ଥିର ହେବ ।

ପଦ୍ମା : କେତେଥର ସେମାନେ ଦେଖିବାକୁ ଆସିବେ ବୋଉ । ହାଟରେ ଗୋରୁ ଗାଈ କିଣିଲା ଭଳି ଦାନ୍ତ, ଆଖି, ଚାଲି, ବାଳର ଲମ୍ବ ପରୀକ୍ଷା କରି ଦେଖୁଥିବେ । ମୁଁ ତ କହିଛି ମୋର ବାହାବବା ଦରକାର ନାହିଁ ।

ପଦ୍ମାବୋଉ : ବାହା ହେବୁନି, କ'ଣ କରିବୁ ?

ପଦ୍ମା : ଯାହା ମନ ତା, କରିବି । କିନ୍ତୁ ବାହା ହେବି ବୋଲି ସବୁଦିନ ଡ୍ରେସିଂ ପେଣ୍ଟିଂ ହେଇ ବାହାର ଲୋକଙ୍କ ସାମନାରେ ଫାର୍ସ କରିପାରିବିନି ।

(ପଦ୍ମା ପଛ ଦରଜା ଦେଇ ଘର ଭିତରକୁ ଚାଲିଗଲା । ପଦ୍ମାବୋଉ ତା ବାଟକୁ ଚାହିଁ ରହିଲେ । ଅଖିଳବାବୁ ଆସି ଏସବୁ ଦେଖି...)

ଅଖିଳ : କ'ଣ ହେଲା ? ପଦ୍ମାକୁ ତୁମେ କିଛି କହିଲ ?

ପଦ୍ମାବୋଉ : ଏକଥା ମେତେ ନପଚାରି ତୁମ ବି.ଏ. ପାସ କରା ଝିଅକୁ ପଚାର । କାଲି ସେ ଘରେ ରହିପାରିବନି । ତା'ର ମିଟିଂ ଅଛି ।

ଅଖିଳ : ଓଃ ସେଇଥିପାଇଁ ପାଟତୁଣ୍ଡ କାହିଁକି ? ନରହିଲେ ନ ରହିବ ।

ପଦ୍ମାବୋଉ : ନ ରହିବ ? କାଲିପରା ସେମାନେ ଆସିବେ ବୋଲି ଖବର ଦେଇଛନ୍ତି ।

ଅଖିଳ : ହେଲା ବାବୁ - ମୁଁ ତାକୁ ବୁଝେଇ ଦେବି । କିନ୍ତୁ ତୁମେ ତା' ମୁହଁରେ ଏମିତି ରୋକଠୋକ୍ କହିବା ଠିକ୍ ହେଉନି । ତା'ର କିଛି ଦୋଷ ନଥାଇ ସବୁ ଠିକ୍ ଠାକ୍ ହେଲାପରେ ପ୍ରସ୍ତାବ ଗୁଡାକ ଭାଙ୍ଗିଯିବ - ଏସବୁ କ'ଣ, ତାକୁ ଖରାପ ଲାଗୁନି ।

ପଦ୍ମାବୋଉ : ଏମିତି କଥା ମେତେ କାହିଁକି କୁହାଯାଉଛି ମୁଁ ଠିକ୍ ବୁଝିପାରୁଛି ।

ଅଖିଳ : କ'ଣ ବୁଝିପାରୁନ କହିଲ ? ସବୁ କଥାକୁ ନିଜ ଆଡକୁ ଟାଣି ନବା



Digitized by PPRACHIN, SOA

ତୁମର ଗୋଟେ ଅଭ୍ୟାସ ହେଇଗଲାଣି ।

ପଦ୍ମାବୋଉ : (ହଠାତ୍ ଆଖି ଛଳଛଳ କରି) ମୋ କପାଳ ଏମିତି ଯେ ଝିଅ ସୁଖରେ ମୁଁ କଣ୍ଟା ହେଇଛି । କଉ ଜନ୍ମରେ କି ପାପ କରିଥିଲି କେଜାଣି, ମୁହଁରେ ଏଇ ଧଳା ଦାଗ ଯୋଗୁ ଆମ ଘରେ କେହି ବନ୍ଧୁ ବାନ୍ଧିବାକୁ ରାଜି ହେଉ ନାହାଁନ୍ତି । ଯେମିତି ମୁଁ ଜାଣିଜାଣି ଏ ଧଳାଦାଗ କରିଛି ।

(ପଦ୍ମାବୋଉଙ୍କର କୋହଭରା କଣ୍ଠ ଶୁଣି ପଦ୍ମା ଆସିଛି)

ପଦ୍ମା : ଏସବୁ କ'ଣ ଚାଲିଛି କହିଲୁ ବୋଉ ! ଏମିତ କନ୍ଦାକଟା କରିବୁତ ଘରଛାଡି ପଳେଇ ଯିବି କହୁଛି । କାଲି କୁଆଡେ ନଯାଇ ଦିନସାରା ଘରେ ରହିବି । ବୋଉ ଦୟାକରି ତୁ ଏମିତି କନ୍ଦାକଟା ବନ୍ଦ କର । ସେପଟେ ଠାକୁର ଘରେ କେତେ କାମ ପଡିରହିଛି ଚାଲିଲୁ...।

(ପଦ୍ମାବୋଉ ଭିତରକୁ ଯାଆନ୍ତି)

ପଦ୍ମା : ମୋର ଗୋଟେ କଥା କହିବାର ଅଛି ବାପା !

ଅଖିଳ : କ'ଣ ?

ପଦ୍ମା : ମୋର ୫୦ ହଜାର ଟଙ୍କା ଦରକାର ।

ଅଖିଳ : ଏତେଗୁଡେ ଟଙ୍କା କ'ଣ ଦରକାର ?

ପଦ୍ମା : ଫାର୍ମାସିଷ୍ଟ ପଢିବା ପାଇଁ ବିଜ୍ଞାପନ ବାହାରିଥିଲା । ସେମାନେ ୫୦ ହଜାର ଡୋନେସନ୍ ଦେଲେ ଆଡ୍‌ମିସନ୍ କରିଦେବେ ବୋଲି ଲେଖିଛନ୍ତି ।

ଅଖିଳ : ତୁ କ'ଣ ଆପ୍ଲାଇ କରିଥିଲୁ ।

ପଦ୍ମା : ହଁ ଆପଣମାନଙ୍କୁ ନ ପଚାରି ଆପ୍ଲାଇ କରିଥିଲି । ପାସ୍ କଲାପରେ ଚାକିରି ନମିଳିଲେ ମେଡିସିନ୍ ଦୋକାନଟିଏ କରି ବସିହେବ ।

ଅଖିଳ : ତୋ ବାହାଘର ପାଇଁ ବିକାଭଙ୍ଗା କରି କିଛି ଟଙ୍କା ରଖାଯାଇଛି । ସେ ଟଙ୍କାରୁ ଦେବାକୁ ତୋ ବୋଉ ରାଜି ହବନି ।

ପଦ୍ମା : ଆପଣ ଜୋର କଲେ ବୋଉ ଆପତ୍ତି କରିବନି ବାପା । ତା'ପରେ



Digitized by PPRACHIN, SOA

ମୋର ବାହାଘର ନିକଟରେ ହେଇଯିବ । ମୁଁ ବିଶ୍ୱାସ କରିପାରୁନି ।

ଅଖିଳ : କିଛି ପ୍ରସ୍ତାବ ଭାଙ୍ଗିଯାଇଛି ବୋଲି ସବୁ ସେମିତି ହବ ବୋଲି କାହିଁକି ଭାବୁଛୁ ? ଗୋପାଳପ୍ରସାଦର ସେ ପିଲା ତୋତେ ଦେଖିଛି - ତୋ ବୋଉର ସେ ଦାଗ ଦେଖିଛି ତଥାପି ସେ ରାଜି ହେଇଛି । ଏଇ ପ୍ରସ୍ତାବଟା ନିଶ୍ଚୟ ହେବ ବୋଲି ମୋର ବିଶ୍ୱାସ ହଉଛି ।

ପଦ୍ମା : ଗତଥର ଆପଣ ଏମିତି ବିଶ୍ୱାସ କରୁଥିଲେ - କିନ୍ତୁ ଶେଷ ମୁହୂର୍ତ୍ତରେ ଓଲଟିଗଲା । ସେଇଥିପାଇଁ ଯାହା ସତ୍ୟ - ତାକୁ ମୁଁ ସାମନା କରିବାକୁ ଚାହୁଁଛି ବାପା । ଝିଅମାନେ ବାପ ମାଆଙ୍କ ଉପରେ ବୋଝ ନହୋଇ କିଛି କାମ କଲେ ଆତ୍ମବିଶ୍ୱାସ ବଢିବ । ମୋ ପଢା ପାଇଁ ଆପଣ ରାଜି ହେଇଯାଆନ୍ତୁ ।

ଅଖିଳ : ଠିକ୍ ଅଛି । ସେମାନେ କାଲି ଆସି ସବୁ ସ୍ଥିର କରିବାକୁ ଖବର ଦେଇଛନ୍ତି । ବାହାଘର ସ୍ଥିର ହେଇଗଲେ ଭଲ କଥା ନହେଲେ ତୁ ଯାହା ଚାହୁଁଛୁ ସେୟା କରିବି ।

(ଅନ୍ଧାର)





Digitized by PPRACHIN, SOA

## ଦ୍ୱିତୀୟ ଦୃଶ୍ୟ

(ସେଇ ପୂର୍ବ ବର୍ଣ୍ଣିତ ଘର । ଜଗନ୍ନାଥବାବୁ ଗୋଟିଏ ଚୌକିରେ ବସିଛନ୍ତି । ତାଙ୍କ ପାଖରେ ଅଛନ୍ତି ଅଖିଳ । ଜଗନ୍ନାଥଙ୍କ ବୟସ ୫୦ ଆରପାଖରେ । ହସଖୁସି ମିଜାସର ଲୋକ)

ଜଗନ୍ନାଥ : ବୁଝିଲ ସମୁଦି ମୁଁ ଏକା ଆସି ଦେଖିଯିବା ଅପେକ୍ଷା ଭାବିଲି ୟାଙ୍କୁ ନେଇ ଆସିଲେ ଭଲ ହେବ । ତା'ପରେ ଭଣଜା ଲଗେଇଲା ମାଇଁ ଯାଇ ଦେଖି ଆସିବେ ।

ଅଖିଳ. : ଆଜ୍ଞା ଠିକ୍ କରିଛନ୍ତି । ମୋ ଭଉଣୀଟା ଆକାଳରେ ଚାଲିଗଲାବେଳଠୁ ଇଏ, ଭଣଜାକୁ ପୁଅ ଭଳି ପାଳିଛନ୍ତି । (ଘର ଭିତର ପଟକୁ ଲକ୍ଷ କରି) ହଇହୋ - ସେପଟେ ରହିଯିବ ନା' କ'ଣ ? ଜଲଦି କାମ ଶେଷ କଲେ ବସ ଧରିବାକୁ ପଡିବ ଯେ...। ତୁମେ ଗଲତ ସମୁଦି ଭିତରେ ଦେଖିଲ...

(ଅଖିଳ ଉଠି ଘର ଭିତରକୁ ଯାଆନ୍ତି । ପରେ ପରେ ସେଇ ଘର ପଟରୁ ବାହାରି ଆସନ୍ତି ଜଗନ୍ନାଥଙ୍କ ସ୍ତ୍ରୀ, ହାରମଣି)

କିଓ ଘଣ୍ଟାଏ ହେଲା କ'ଣ କରୁଛ ? ପାତ୍ରୀଟି ମନକୁ ପାଇଲା ତ ?

ହାରମଣି : (ଚାପା ଗଳାରେ ଜଗନ୍ନାଥଙ୍କୁ ତାଗିଦ କରି) ଚୁପ କର । ବୁଢାଟିଏ ହେଲଣି, କୁଣିଆ ଘରଟାରେ ଏତେ ବଡ ପାଟିକରି କମ୍ପାଉଛ ।

ଜଗନ୍ନାଥ : ତୁମ ଭଣଜା ପସନ୍ଦକୁ ମାନିଲଟି । ଝିଅତ ନୁହେଁ - ହିରା ଖଣ୍ଡେ ।

ହାରମଣି : ସବୁ ଭଲ ଯେ କନ୍ୟାର ମା ମୁହଁଟାକୁ ଚାହିଁଦେଲେ ମନଟା ମରିଯାଉଛି ।

ଜଗନ୍ନାଥ : ସେ ଦାଗ କଥା କହୁଛତ, ତୁମ ଭଣଜା କହିଲା ସେଇଟା କିଛି ନୁହେଁ । ତା' ମନ ଯେତେବେଳେ ପାଇଛି, ତୁମେ କାହିଁକି ସେକଥା ଉଠଉଛ ?



Digitized by PPRACHIN, SOA

(ପଦ୍ମା ହାତରେ ଗୋଟିଏ ଟ୍ରେରେ କିଛି ମିଠା ଓ ଚା' ଇତ୍ୟାଦି ଧରି ପ୍ରବେଶ କରେ । ଜଗନ୍ନାଥଙ୍କ ସାମନା ଟୁଲ୍ ଉପରେ ରଖିଦେଇ ପ୍ରଣାମ କରେ ।)

ଜଗନ୍ନାଥ : ହେଲା ମା ହେଲା । ସେଇଠି ବସ ।

ହାରମଣି : ସେ ସାମନାରେ ବସିଯା । (ପଦ୍ମା ସାମନା ଚୌକିରେ ବସିଯାଏ । ଜଗନ୍ନାଥ ଜଳଖିଆ ଖାଇବାକୁ ଲାଗନ୍ତି ।)
ଝିଅଟା ବସିଲା ତୁମର ଯଦି କିଛି ପଚାରିବା କଥା ପଚାରୁନ ।

ଜଗନ୍ନାଥ : ଭଣଜା ଆସି ଯାହା ପଚାରିବା କଥା ପଚାରିଛି, ମୋର କିଛି ପଚାରିବାର ନାହିଁ । ତୁମେ ଯାହା ପଚାରିବା କଥା ପଚାର ।

ହାରମଣି : ମୁଁ ପରା ଆସିଲାବେଳୁ ଘର ଭିତରେ ତା' ପାଖରେ ଥିଲି ।

ଜଗନ୍ନାଥ : ତା' ହେଲେ ଏ ଜଳଖିଆଟା ଟିକିଏ ଖାଉନା - ନା ଝିଅ ମୁହଁକୁ ଦେଖି ପେଟ ପୁରିଗଲାଣି ହେ ହେ ହେ...।

ହାରମଣି : ତୁ ଯା ମା, ଭିତରକୁ ଯା ।

ଜଗନ୍ନାଥ : ହଁ, ଯା ମା ତୋ ବାପା ବୋଉଙ୍କୁ କହିଦେ ।
(ପଦ୍ମା ଭିତରକୁ ଚାଲିଯାଏ । ହାରମଣି ବଡ ବଡ ଆଖିରେ ଜଗନ୍ନାଥ ଆଡକୁ ଚାହିଁରୁହନ୍ତି)

ହାରମଣି : ପାଞ୍ଚ ମିନିଟ ଅପେକ୍ଷା କରିପାରୁନ । ବିକଳିଆ ଭଳିଆ ସାମନାରେ ରଖୁ ରଖୁ ଗିଳି ପକଉଛ ।

ଜଗନ୍ନାଥ : ଓହୋ ଏଥିରେ କ'ଣ ଏମିତି ଭୁଲ ହେଇଗଲା । ଚଞ୍ଚଳ କାମ ଶେଷ କଲେ ପୁରୀ ବାହାରି ଯିବାକୁ ପଡିବ । ସେଇଥିପାଇଁ... (ଅଖିଳ ବାବୁ ଘର ଭିତରୁ ଆସନ୍ତି) ଆସ ସମୁଦି ଆସ ।

ହାରମଣି : ଆମେ ତ ଝିଅ, ଘର, ବନ୍ଧୁ ସବୁ ଦେଖିଲୁ । ଏଥର ଖାଲି ବାହାଘର ତିଥି ଠିକ୍ କରିବା କଥା ।

ଅଖିଳ : ଆପଣମାନେ ଯାହା ଚାହିଁବେ ସେୟା ହେବ । ଆପଣ କହିଲେ ଆମ ଗାଁ ଜଉତିଷଙ୍କୁ ଖବର ଦେବି ।



Digitized by PPRACHIN, SOA

ହାରମଣି : ନାଇଁ ନାଇଁ ମୋର କାହାଠି ଭରସା ନାହିଁ । ଆମ ଗାଁର ରଘୁ ପଣ୍ଡିତଙ୍କ ପାଖରେ ଗଣନା କରି ମୁଁ ଖବର ଦେବି ।

ଜଗନ୍ନାଥ : ଝିଅର ଟିପଣା ଆମ ପାଖରେ ଅଛି । ତିଥି ବାର ଠିକ୍ ଠାକ୍ କରି ଆମେ ଜଣେଇ ଦେବୁନି । ଖୁବ୍ ହେଲେ ଏଇ ମାଘ ଫଗୁଣ ଭିତରେ କାମ ବଢେଇବାକୁ ପ୍ରସ୍ତୁତ ହେବା ।

ଅଖିଳ : ହଉ, ଯାହା ଭଗବାନଙ୍କ ବରାଦ । ଆମେ ଯେତେ ଯାହା କହିଲେ କ'ଣ ହେବ ।

ଜଗନ୍ନାଥ : ଠିକ୍ କଥା ସମୁଦି । ଭାଗବତରେ କହିନି "କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟଗତି ନାହିଁ । ହେ...ହେ...ହେ...।

(ଜଗନ୍ନାଥ ହୋ ହୋ ହୋ ହେଇ ହସିଉଠନ୍ତି । ହାରମଣି ବଡ ବଡ ଆଖିରେ ଚାହିଁରୁହନ୍ତି ) ଆମେ ବାହାରିଲୁ ।

(ହାରମଣି, ଜଗନ୍ନାଥଙ୍କ ସହିତ ଅଖିଳ ଚାଲିଯାଆନ୍ତି)

(ମଞ୍ଚ ଅନ୍ଧାର ହୁଏ)





Digitized by PPRACHIN, SOA

## ତୃତୀୟ ଦୃଶ୍ୟ

(ସେଇ ଘରର ଅଗଣା ! ପଦ୍ମା ଗୋଟିଏ ରୁମାଲରେ ଫୁଲ ପକାଉଛି । ବାହାରୁ ଗୋକୁଳୀ । ଗୋକୁଳୀ ପଦ୍ମାର ସାନ ଭାଇ । ବୟସ ୧୨/୧୩ ବର୍ଷ । କାନ୍ଧରେ ତା'ର ସ୍କୁଲ ବ୍ୟାଗ୍)

ପଦ୍ମା : କିରେ ଗୋକୁଳୀ, ଟ୍ୟୁସନ୍ ନଯାଇ ଫେରି ଆସିଲୁ ଯେ ।

ଗୋକୁଳୀ : ଫେରି ଆସିନି, ପୁଣି ଯିବି । ତେତେ ଗୋଟାଏ ଭଲ ଖବର ଦେବାକୁ ଆସିଛି ।

ପଦ୍ମା : ଖବର ? କ'ଣ ଖବର କହିଲୁ ।

ଗୋକୁଳୀ : ହରିଆ କାକା ଏ ଚିଠିଟା ବାପାଙ୍କୁ ଦେବାକୁ କହିଛନ୍ତି । ତେତେ ପୁଣି କିଏ ସବୁ ଦେଖି ଆସିବେ ନା' କ'ଣ ।

ପଦ୍ମା : ଏଇ କଥା କ'ଣ ସେ ଚିଠିରେ ଲେଖା ଅଛି ?

ଗୋକୁଳୀ : ମଧ୍ୟସ୍ଥି ଦେଇଛି ପରା । ସେ ଆଉ କ'ଣ ଖବର ଦେବ । ଯାହା ହେଉ ମିଠା ଖିଆ ହେବାର ବାଟ ଫିଟିଲା ।

ପଦ୍ମା : ମାନେ ?

ଗୋକୁଳୀ : ମୋର ଇଚ୍ଛା ତେତେ ସବୁଦିନ ଲୋକ ଦେଖିଆସୁଥିବେ । ମୋତେ ସେଇ ମଉକାରେ ଭଲ ଭଲ ଜିନିଷ ଖାଇବାକୁ ମିଳୁଥିବ ।

ପଦ୍ମା : ଚୁପ୍ ! ତୁ ମିଠା ଖାଇବୁ ବୋଲି ମୋର ଅମଙ୍ଗଳ ପାଞ୍ଚିବୁ ।

ଗୋକୁଳୀ : ବାହା ହେବା କ'ଣ ଅମଙ୍ଗଳ ?

ପଦ୍ମା : ହଁ ପୁଅମାନଙ୍କ ପାଇଁ ବାହାଘର ମଙ୍ଗଳ ହେଇପାରେ । କିନ୍ତୁ ଯୌତୁକ ଲୋଭି ଶାଶୁ ଶଶୁର ଯୋଗୁ, ବାହାଘର ହେଉଛି ଝିଅମାନଙ୍କ ପାଇଁ ଅଭିଶାପ ।

ଗୋକୁଳୀ : ତୁ ମଝିରେ ମଝିରେ କ'ଣ ଯେ କହୁ ଅପା, ମୁଁ ବୁଝିପାରେନି ।



Digitized by PPRACHIN, SOA

ପଦ୍ମା : ଦେଲୁ ଚିଠିଟା ମେତେ, ମୁଁ ଦେଖି କଉଠୁ ଆସିଛି ।

ଗୋକୁଳୀ : ନାଇଁ ହରିଆ କାକା କହିଛନ୍ତି ଏ ଚିଠି ବାପାଙ୍କ ଛଡା ମୁଁ କାହାକୁ ଦେବିନି ।

(ଅଖିଳ ବାବୁ ଘର ଭିତରୁ ବାହାରି ଆସନ୍ତି) ବାପା ଏଇଟା ହରିଆ କାକା ଦେଇଛନ୍ତି ।

(ଅଖିଳ ଚିଠି ନେଇ ଖୋଲିଛନ୍ତି କିନ୍ତୁ ପକେଟ୍‌ରେ ହାତମାରି ଚଷମା ଖୋଜିଛନ୍ତି ପାଇ ନାହାଁନ୍ତି)

ଅଖିଳ : ଏଇଟା ପଢିଲୁ ମା ପଦ୍ମା । ମତେ ଠିକ୍ ଦେଖାଯାଉନି ।

ପଦ୍ମା : ଚଷମାଟା ନେଇ ଆସିବି ବାପା ।

ଅଖିଳ : ନା' ଥାଉ । ତୋ ବୋଉ ଆସିବା ପୂର୍ବରୁ ପଢିଦେ ।

ପଦ୍ମା : (ଚିଠି ନେଇ ପଢିଛି) ଅଖିଳ ବାବୁ ମୋର ନମସ୍କାର ନେବେ । ମୋର ଅନେକ ଚେଷ୍ଟା ସତ୍ତ୍ୱେ ବି ସେମାନେ ଆପଣଙ୍କ ଘରେ ସଂବନ୍ଧ କରିବାକୁ ସନା କରି ଦେଲେ । ଏଥିପାଇଁ କୌଣସି ନୂଆ କାରଣ ନାହିଁ । ଆପଣଙ୍କ ସ୍ତ୍ରୀଙ୍କ ମୁହଁର ସେ ଦାଗଟି ହିଁ ଆପଣଙ୍କ ଝିଅର ବାହାଘର ଭାଙ୍ଗିଯିବାର କାରଣ । ତଥାପି ମୁଁ ଅନ୍ୟ ପ୍ରସ୍ତାବ ଯୋଗାଡରେ ଅଛି । ଯୋଗାଡ କଲେ ଚିଠି ଦେବି । ଇତି - ଦୟାନିଧି - "ମଧ୍ୟସ୍ଥି"

(ଏଇ ଚିଠି ପଢିଲାବେଳେ ଘର ଭିତରୁ ପଦ୍ମା ବୋଉ ଆସି ଦରଜା ପାଖରେ ପରଦା ଉହାଡରେ ଠିଆ ହୋଇ ରହିଥାନ୍ତି ।)

ଅଖିଳ : (ପଦ୍ମା ହାତରୁ ଚିଠି ନେଇ) ଏଇ କଥା ଯେମିତି ତୋ ବୋଉ କାନରେ ନ ପଡେ ମା !

(ଅଖିଳ ଚିଠିଟି ଚିକ୍ ଚିକ୍ କରି ଚିରିବାକୁ ଲାଗଗିଲେ । ପଦ୍ମା ବାପାଙ୍କର ଅସହାୟ ମୁହଁକୁ ଚାହିଁ ରହିଲା । ମଞ୍ଚ ଅନ୍ଧାର ହେବାକୁ ଲାଗିଲା ।)





Digitized by PPRACHIN, SOA

## ଚତୁର୍ଥ ଦୃଶ୍ୟ

(ସମୟ-ରାତ୍ରି କାନ୍ଥ ଘଣ୍ଟାରେ ୧୨ ବାଜିବାର ଶବ୍ଦ । ଡାକ୍ତର ସୂର୍ଯ୍ୟ କୁମାରଙ୍କ ସରକାରୀ ବାସଭବନର ବୈଠକ ଗୃହ । ଘର କାନ୍ଥରେ ମହାପୁରଷମାନଙ୍କର ଫଟୋ । ସେଇ ଫଟୋଗୁଡିକ ମଧ୍ୟରେ ଗାନ୍ଧିଜୀ, ଗୋପବନ୍ଧୁଙ୍କର ପ୍ରତିକୃତୀ, ଗାନ୍ଧିଜୀଙ୍କ କୋଷ୍ଠ ରୋଗିର ସେବା କରୁଥିବା ଫଟୋଟି ରଖାଯାଇଛି । ଘର ବାହାରୁ କଲିଂବେଲ୍‌ର ଶବ୍ଦ ଶୁଣାଯାଏ । ଡାକ୍ତର ନିଦ ମଳ ମଳ ଆଖିରେ ଆସି କବାଟ ଖୋଲନ୍ତି)

ଡାକ୍ତର : କିଏ ! ଏତେ ରାତିରେ Calling Bell କିଏ ମାରୁଛି ।

ପଦ୍ମା : (ବାହାରୁ କଣ୍ଠ ଶୁଣାଯିବ) କବାଟ ଖୋଲନ୍ତୁ ଡାକ୍ତର ବାବୁ ।
(ଡାକ୍ତର କବାଟ ଖୋଲନ୍ତି । ପଦ୍ମା ପ୍ରବେଶ କରେ । ହାତରେ ଟର୍ଚ୍ଚ)

ଡାକ୍ତର : କ'ଣ ହୋଇଛି ?

ପଦ୍ମା : ମୋ ବୋଉ ଅବସ୍ଥା ବଡ ଖରାପ ଡାକ୍ତର ବାବୁ-ତାକୁ ବଞ୍ଚେଇ ଦିଅନ୍ତୁ ।

ଡାକ୍ତର : ହସ୍‌ପିଟାଲକୁ ନେଇ ଆସିଛ ତ । ଚାଲ ମୁଁ ସାଙ୍ଗେ ସାଙ୍ଗେ ଯାଉଛି ।

ପଦ୍ମା : ଆମ ଘରକୁ ଯିବାକୁ ହେବ । ତା'ର ଅବସ୍ଥା ଯାହା ତାକୁ ଏଠାକୁ ଆଣି ହେବନି ।

ଡାକ୍ତର : ତୁମ ଘର ମାନେ ? ଏଇଠୁ କେତେ ଦୂର ?

ପଦ୍ମା : ଏଇ ଗାଁରେ । କିନ୍ତୁ ତୋଟା ଆରପଟ ନୂଆ ବସ୍ତିରେ ।

ଡାକ୍ତର : ତୁମ ସାଙ୍ଗରେ ଆଉ କିଏ ଅଛନ୍ତି ?

ପଦ୍ମା : ନା' ମୁଁ ଏକା ଆସିଛି । (ହଠାତ କାନ୍ଦ କାନ୍ଦ ହୋଇ) ମୋର



Digitized by PPRACHIN, SOA

ବୋଉ ବିଷ ଖାଇ ଦେଇଛି ଡାକ୍ତର ବାବୁ - ତାକୁ ବଞ୍ଚେଇ ଦିଅନ୍ତୁ ।
(ଗୋଡତଳେ ବସିଯାଇଛି)

ଡାକ୍ତର : ଉଠ । ମୁଁ ବାହାରି ପଡୁଛି । ତୁମେ ଅପେକ୍ଷା କର ।
(ଡାକ୍ତର ଭିତରକୁ ଯାଆନ୍ତି ମଞ୍ଚ ଅନ୍ଧାର ହେବାକୁ ଲାଗେ)





Digitized by PPRACHIN, SOA

## ପଞ୍ଚମ ଦୃଶ୍ୟ

(ସମୟ-ରାତ୍ରି - ଅଖିଳବାବୁଙ୍କ ସେ ପୂର୍ବ ବର୍ଣ୍ଣିତ ଘର । ସେଇ ଖଟ ଉପରେ ଶୋଇ ରହିଛନ୍ତି ପଦ୍ମା ବୋଉ । ଡାକ୍ତରଙ୍କ ଚିକିତ୍ସା ପରେ ସେ ଭିଷଣ ବାନ୍ତି କରି ଅବସ ହୋଇପଡିଛନ୍ତି । ଡାକ୍ତର ତାଙ୍କର B.P. ଓ ପଲ୍‌ସ ପରୀକ୍ଷା କରୁଛନ୍ତି । ପାଖରେ ଅଛନ୍ତି ପଦ୍ମା ଓ ଗୋକୁଳୀ)

ପଦ୍ମା : ମୋ ବୋଉ ବଞ୍ଚିବ ଡାକ୍ତର ବାବୁ ।

ଡାକ୍ତର : ଆଉ କିଛି ଭୟ କରିବାର ନାହିଁ । ମୋର ବିଶ୍ୱାସ ବାନ୍ତି ଦ୍ୱାରା ତାଙ୍କ ପେଟରୁ ସମସ୍ତ ବିଷ ବାହାରି ଯାଇଛି ।

ପଦ୍ମା : (କେବଳ ଚାହିଁ ରହିଛି)

ଡାକ୍ତର : ଆରେ ତୁମେ ବୋକାଙ୍କ ଭଳି ଚାହିଁ ରହିଛ କ'ଣ ? କେବଳ ତୁମରି ସାହସ ଯୋଗୁ ସେ ବଞ୍ଚି ଯାଇ ପାରିଲେ ।

ପଦ୍ମା : ଘରେ ବାପା ନାହାଁନ୍ତି - ଆପଣ ଆସିନଥିଲେ ଆମ ଅବସ୍ଥା କ'ଣ ହୋଇଥାନ୍ତା । (ଆଖି ତା'ର ଛଳ ଛଳ)

ଡାକ୍ତର : ଯାହା ହେଲେବି ତୁମେ ଜଣେ ସାଧାରଣ ଗାଉଁଲି ଝିଅ ହୋଇ ରାତି ଅଧରେ ମୋତେ ହସ୍‌ପିଟାଲରୁ ଧରି ଆଣିଲ । ସେଇଟା ହେଉଛି ବଡକଥା । ବିପଦ ସମୟର ବହୁତ କମଲୋକ ଏମିତି ସାହସ କରିବେ । (ହଠାତ୍ ଘଣ୍ଟା ଦେଖି) ରାତି ୩ଟା ହେଲାଣି ମୁଁ ଯାଉଛି ତା' ହେଲେ ଟିକିଏ ବିଶ୍ରାମ ନେଇପାରିବି ।

ପଦ୍ମା : କିନ୍ତୁ...।

ଡାକ୍ତର : କିଛି ବ୍ୟସ୍ତ ହେବାର ନାହିଁ । ଅବସ ହୋଇ ସେ ଶୋଇ ପଡିଛନ୍ତି । ଯଦି ଦରକାର କରିବେ କେବଳ ଥଣ୍ଡା ପାଣି ପିଇବାକୁ ଦିଆଯିବ ।



Digitized by PPRACHIN, SOA

ପଦ୍ମା : ଗୋକୁଳୀ ତୁ ସାଙ୍ଗରେ ଯା ଡାକ୍ତର ବାବୁଙ୍କୁ ଛାଡିଦେଇ ଫେରିବୁ ।

ଗୋକୁଳୀ : ଯିବି ଯେ- ସେ ତୋଟା ବାଟ ଦେଇ ଏକୁଟିଆ ଫେରିପାରିବିନି । ସେଇଠି ତେନ୍ତୁଳୀ ଗଛରେ କୁଆଡେ ବ୍ରହ୍ମ ରାକ୍ଷସ ଅଛି

ପଦ୍ମା : ଚୋପ୍ ।

ଡାକ୍ତର : କାହାରି ଯିବାର ଦରକାର ନାହିଁ । ମୁଁ ଏକା ଯିବି ।

ପଦ୍ମା : ଟିକିଏ ରୁହନ୍ତୁ ।

(ପଦ୍ମା ଭିତକୁ ଯାଇ ଗୋଟିଏ ୧୦୦ ଟଙ୍କାର ନୋଟ୍ ଆଣି ଡାକ୍ତରଙ୍କୁ ଦେବାକୁ ଚାହିଁଲା । ଏଇଟା ରଖନ୍ତୁ । ମୋ ପାଖରେ ଆଉ କିଛି ନାହିଁ । କାଲି ଆସିଲେ ଯାହା କହିବେ ଦେବି ।

ଡାକ୍ତର : ଏ ସବୁର କିଛି ଦରକାର ନାହିଁ ।

ପଦ୍ମା : ଆପଣ ଏତେ ରାତିରେ ବିଶ୍ରାମ ନନେଇ ଚିକିତ୍ସା କରିବାକୁ ଆସିଛନ୍ତି । ନିଜ ହାତରୁ ଔଷଧ ଦେଇଛନ୍ତି । ସମସ୍ତେ ନିଅନ୍ତି । ଆପଣ ନିଅନ୍ତୁ ।

ଡାକ୍ତର : ନା ସମସ୍ତଙ୍କୁ ସମାନ ଭାବିବା ଠିକ୍ ନୁହେଁ । ତା'ପରେ ମୁଁ ଯୋଉ ଔଷଧ ଦେଇଛି ସେଗୁଡିକ ମୋତେ କିଣିବାକୁ ପଡିନଥିଲା । କାଲି ସକାଳେ କାହାକୁ ପଠେଇ ଦେଲେ ମୁଁ ଆଉ କିଛି ଔଷଧ ପଠାଇ ଦେବି । ମୁଁ ଆସୁଛି

(ପଦ୍ମା ଓ ଗୋକୁଳୀ ଡାକ୍ତରଙ୍କୁ ନମସ୍କାର କରନ୍ତି । ଡାକ୍ତର ଚାଲିଯାଆନ୍ତି ମଞ୍ଚ ଅନ୍ଧାର ହୁଏ )





Digitized by PPRACHIN, SOA

## ଷଷ୍ଠ ଦୃଶ୍ୟ

(ସମୟ-ପୂର୍ବାହ୍ନ । ଡାକ୍ତର ବାବଙ୍କର ସେ ପୂର୍ବ ବର୍ଣ୍ଣିତ ବୈଠକ ଗୃହ । ଆଶାଲତା ଦେବୀ ଆସନ ଉପରେ ବସି ସକାଳୁ ଗୀତାପାଠ କରୁଛନ୍ତି । ସେ ଗାନ୍ଧୀ ଭକ୍ତ ସାଧୀନତା ସଂଗ୍ରାମୀ । ପିନ୍ଧିଛନ୍ତି ଖଦଡ ଶାଢୀ । ହଠାତ୍ ଗୀତା ପାଠ ବନ୍ଦ କରି...)

ଆଶା : କିଏ, ବାହାରେ କିଏ ଠିଆ ହେଇଛି । ଭିତରକୁ ଆସ । (ପଦ୍ମା ଆସିଛି)

ଡାକ୍ତର ବାବୁଙ୍କୁ ଖୋଜୁଛୁ ମା.... ? ସେଇଠି ସେଇ ସୋଫା ଉପରେ ବସ...(ଭିତରକୁ ଲକ୍ଷ କରି) ସୂର୍ଯ୍ୟ ।

ଡାକ୍ତର : (ଭିତରୁ) କ'ଣ ମା ?

ଆଶା : ତୋତେ ଦେଖାକରିବାକୁ ଝିଅଟିଏ ଅପେକ୍ଷା କରିଛି ।

ଡାକ୍ତର : (ପ୍ରବେଶ) ଏତେ ସକାଳୁ ପୁଣି କିଏ ଆସିଲା । ·

ଆରେ ତୁମେ ? ମା ଯାହା କଥା କହୁଥିଲି ଏଇ ହେଉଛନ୍ତି ସେ ଝିଅ ।

ଆଶା : ଆଛା ତୋ ବୋଉ ଅବସ୍ଥା କେମିତି ଅଛି ମା ?

ପଦ୍ମା : ପ୍ରାୟ ଭଲ ଅଛି, ହେଲେ ସକାଳୁ ଉଠିଲାବେଳୁ କିଛି କଥାବାର୍ତ୍ତା କରୁନି ।

ଡାକ୍ତର : ସେଇଥିପାଇଁ ତୁମେ ବ୍ୟସ୍ତ ହୋଇ ଚାଲିଆସିଲ ?

ଆଶା : ତୁ କ'ଣ କହୁଛୁ ସୂର୍ଯ୍ୟ । ମା'ର ଏମିତି ଅବସ୍ଥାରେ ଝିଅଟା ବ୍ୟସ୍ତ ହବନି ।

ଡାକ୍ତର : କୌଣସି ମାନସିକ ଅଶାନ୍ତି ନେଇ ସେ ବିଷପାନ କରିଥିଲେ । ଏବେ ବିଷସିନା ବାହାରି ଯାଇଛି କିନ୍ତୁ ମନଟା ଶାନ୍ତ ହେବାକୁ କିଛି ସମୟ ଲାଗିବ ।



Digitized by PPRACHIN, SOA

ଆଶା : ହଁ ରେ ମା ସେ କଥାବାର୍ତ୍ତା କରିବେ । ସେଥିପାଇଁ ଚିନ୍ତିତ ହବୁନି ।

ପଦ୍ମା : (ହଠାତ୍ କୋହଭରା କଣ୍ଠରେ), ଆପଣ ପୋଲିସି ପାଖରେ ଏସବୁ ରିପୋର୍ଟ କରିବେନି ଡାକ୍ତରବାବୁ । ପୋଲିସ୍ ଆମକୁ ହଇରାଣ କରିବ ।

ଡାକ୍ତର : ନା' ମୁଁ ରିପୋର୍ଟ କରିବିନି କିନ୍ତୁ ଗୋଟେ ସର୍ତ୍ତରେ । ତୁମେ ତୁମ ବୋଉଙ୍କୁ ଆଉ କେବେ ଆଘାତ ଦେବନି ।

ପଦ୍ମା : ଆମେ ! ଆମେ ଆଘାତ ଦେବାକୁ ଯିବୁ କାହିଁକି ?

ଡାକ୍ତର : ଗତକାଲି ତୁମେ ଆଉ ତୁମ ସାନଭାଇ ଛଡା କେହି ଘରେ ନଥିଲେ । ତୁମେମାନେ ନିଶ୍ଚୟ କିଛି କହିଥିବ କିମ୍ବା କିଛି କାମ କରିଥିବ ଯେଉଁଥିପାଇଁ ସେ ଆତ୍ମହତ୍ୟା କରିବାକୁ ଯାଉଥିଲେ ।

ପଦ୍ମା : ମୋ ସାନ ଭାଇ କିମ୍ବା ମୁଁ କେହି କିଛି କହିନୁ ଡାକ୍ତର ବାବୁ । କିନ୍ତୁ ମୋ ବାହାଘର ପ୍ରସ୍ତାବ ଭାଙ୍ଗି ଯାଉଛି ବୋଲି ସେ ଆତ୍ମହତ୍ୟା କରିବାକୁ ବସିଥିଲା ।

ଆଶା : ତୁ ତ ଦେଖିବାକୁ କୌଣସି ଅସୁନ୍ଦର ନୁହେଁ ମା । ତୋ ବାହାଘର ଭାଙ୍ଗିଯିବା କାରଣ କ'ଣ ?

ପଦ୍ମା : ମୋ ବୋଉ ମୁହଁରେ ଗୋଟିଏ ଧଳା ଛଉର ଦାଗ ରହିଛି । ସେଇଥିପାଇଁ...।

ଆଶା : ଓ ବୁଝିଗଲି । ଆତ୍ମହତ୍ୟା କରିଦେଲେ ସେ ଦାଗ ସବୁଦିନ ପାଇଁ ଲୁଚିଯିବ - ତୋ ବାହାଘର ପାଇଁ ଆଉ ଅସୁବିଧା ରହିବନି । ଏମିତି ଗୋଟେ ଧାରଣା ନେଇ ସେ ଏ ପ୍ରକାର କାମ କରିଥିଲେ ।

ଡାକ୍ତର : ତୁମ ବୋଉଙ୍କର ସେ ଦାସ କୌଣସି ସଂକ୍ରାମକ ବା ବଂଶାନୁଗତ ରୋଗ ନୁହେଁ । ଉପଯୁକ୍ତ ଚିକିତ୍ସା ଦ୍ୱାରା ଏ ଦାଗ ମଳିନ ପଡିଯିବ ।

ଆଶା : ତୁ, ସିନା ଡାକ୍ତର ବୋଲି ଏ କଥା ଜାଣିଛୁ । ସାଧାରଣ ଲୋକ କ'ଣ ଏ କଥା ବୁଝିବେ ।

ଡାକ୍ତର : ରୋଗୀର ଚେହେରା ସାମାନ୍ୟ ବେରଙ୍ଗ କରିବା ଛଡା ଏ ରୋଗ



Digitized by PPRACHIN, SOA

କାହାରି କିଛି କ୍ଷତି କରିବନି । ସାଧାରଣ ରୋଗ ଭଳି ଏ ଗୋଟାଏ ଚର୍ମ ରୋଗ । କୌଣସି ଜନ୍ମର ଅଭିଶାପର ଫଳ ନୁହେଁ । ଏଥିପାଇଁ ବ୍ୟସ୍ତ ହେବାର କିଛି ନାହିଁ ।

ପଦ୍ମା : ନା ବାବୁ । ଏ ସବୁ କଥା ସମସ୍ତେ କେବଳ ମୁହଁରେ କହୁଛନ୍ତି । କିନ୍ତୁ ବିଶ୍ୱାସ କରୁନାହାଁନ୍ତି । ବିଶେଷତଃ ଡାକ୍ତରମାନେ ନିଜେ ଏଇ ସତ୍ୟ ଉପରେ ସନ୍ଦେହ କରୁଛନ୍ତି ।

ଡାକ୍ତର : ତୁମେ କ'ଣ କହିବାକୁ ଚାହୁଁଛ ?

ପଦ୍ମା : ପ୍ରଥମେ ଜଣେ ଡାକ୍ତରଙ୍କ ସହିତ ମୋର ପ୍ରସ୍ତାବ ପଡିଥିଲା । ସେବି ଏ ରୋଗ କ୍ଷତିକାରକ ନୁହେଁ ବୋଲି କହୁଥିଲେ । ତାଙ୍କ କଥା ଅନୁସାରେ ଯୌତୁକ ଯୋଗଡ ହେଲା । କିନ୍ତୁ ଏଇ କାରଣ ଦର୍ଶାଇ ଶେଷରେ ସେ ଓହରିଗଲେ ।

ଆଶା : ଏ ଝିଅ ଠିକ୍ କହୁଛି ସୂର୍ଯ୍ୟ । ଜଣେ ଡାକ୍ତର ଯେତେବେଳେ ଏଇ କାରଣ ପାଇଁ ଦୂରେଇ ଗଲେ - ଅନ୍ୟମାନେ ସାହସ କରିବେ କେମିତି ।

ଡାକ୍ତର : କିନ୍ତୁ ଏ ସବୁ ଅନ୍ଧବିଶ୍ୱାସ ମା । ଏ ପ୍ରକାର ଭୁଲ ଧାରଣାକୁ ବଦଳାଇବା ପାଇଁ ସରକାର ବହୁତ ଖର୍ଚ୍ଚ କରୁଛନ୍ତି ।

ଆଶା : ହେଲେ ଯେଉଁମାନଙ୍କୁ ଏ ସବୁ ଅନ୍ଧବିଶ୍ୱାସ ଦୂର କରିବାକୁ ଦାୟିତ୍ୱ ଦିଆଯାଉଛି । ସେମାନଙ୍କର କଥା ଆଉ କାମ ଭିତରେ ଫରକ ରହୁଛି । ତେଣୁ ଲୋକଙ୍କ ପାଖରେ ଏକଥା ଠିକ୍ ଢଙ୍ଗରେ ପହଞ୍ଚି ପାରୁନି । ଉଚ୍ଚାରଣ ଓ ଆଚରଣ ଭିତରେ ଫରକ ରହୁଛି ।

ଡାକ୍ତର : ହଁ ମା, ସେଇଟା ଅଭାବ ରହୁଛି । ତୁମେ ହସ୍‌ପିଟାଲକୁ ଚାଲ ପଦ୍ମା ତୁମ ବୋଉ ପାଇଁ ଔଷଦ ଦେବି ।

(ଡାକ୍ତର ଓ ପଦ୍ମା ଯାଆନ୍ତି । ଆଲୋକ କାନ୍ଥରେ ଟଙ୍ଗା ହୋଇଥିବା "ଗାନ୍ଧୀ କୋଷ୍ଠ ରୋଗୀର ସେବା କରୁଛନ୍ତି" ଫଟୋ ଉପରେ କେନ୍ଦ୍ରିଭୂତ ହୋଇ ଧୀରେ ଧୀରେ ଅନ୍ଧାର ହେଲା)





Digitized by PPRACHIN, SOA

## ସପ୍ତମ ଦୃଶ୍ୟ

(ଅଖିଳବାବୁଙ୍କ ସେ ପୂର୍ବ ବର୍ଣ୍ଣିତ ଘର । ସମୟ ସକାଳ ହେବାକୁ ଆହୁରି ବାକି ଅଛି । ଠିକ୍ ସୂର୍ଯ୍ୟ ଉଇଁବାର ପୂର୍ବ ସମୟ । ପକ୍ଷୀର କାକଳୀ, କୁକୁଡା ରାବିବାର ଶବ୍ଦ ଦୂରରୁ ଭାସିଆସୁଛି । ସକାଳୁ ସମସ୍ତ ନିତ୍ୟକର୍ମ ଶେଷ କରି ଅଖିଳବାବୁ କୌଣସି ଏକ କାମ ପାଇଁ ବାହାରକୁ ଯିବାକୁ ପ୍ରସ୍ତୁତ ହେଉଛନ୍ତି । ପଦ୍ମା ବୋଉ ଚା' ଧରି ଆସିଛନ୍ତି । ଅଖିଳ ବାବୁ ଚା' ପିଉ ପିଉ...)

ଅଖିଳ : ପଦ୍ମାକୁ କୁହ ଜଲଦି ଜଲଦି ବାହାରି ପଡୁ - ସକାଳ ବସ୍‌ଟା ସାଢେ ଛ'ଟାରେ ଛାଡିଦେବ ।

ପଦ୍ମାବୋଉ : ସେ ଶାଢି ପିନ୍ଧାପିନ୍ଧି କରୁଛି । ସୂର୍ଯ୍ୟତ ଉଦୟ ହେଇନି ଏତେ ତରତର କାହିଁକି ?

ଅଖିଳ : (ହାତ ଘଣ୍ଟା ଦେଖି) ସମୟ ଅବଶ୍ୟ ହେଇନି । ଆହୁରି ଘଣ୍ଟାଏ ବାକି ଅଛି ।

ପଦ୍ମା ବୋଉ : ନା ଲେଖା ପୂର୍ବରୁ ଝିଅ ପିଲାମାନଙ୍କର ରହିବାର କ'ଣ ସୁବିଧା ଅଛି ପ୍ରଥମେ ଦେଖିବ । ଭଲ ଅଛିତ ନାଁ ଲେଖେଇବ... ନହେଲେ ଫେରିଆସିବ । ଆମର ସେ ପାଠ ଦରକାର ନାହିଁ ।

(ବାହାରୁ ଖଡିରତ୍ନ ଆସିଛନ୍ତି)

ଖଡିରତ୍ନ : ଅଖିଳ ଘରେ ଅଛୁନା ବାପା ।

ଅଖିଳ : ଦାଦା - ଏତେ ସକାଳୁ ସକାଳୁ ଆପଣ କୁଆଡେ ?

ଖଡିରତ୍ନ : ଆରେ ଡାକ୍ତର ବାବୁଙ୍କ ମା' ବାହାରେ ଠିଆ ହୋଇଛନ୍ତି ତାଙ୍କୁ ପ୍ରଥମେ ଭିତରକୁ ଆଣେ...।

(ଆଶା ଦେବୀ ଆସିଛନ୍ତି)



Digitized by PPRACHIN, SOA

ଆଶାଦେବୀ : ବିନା ଡାକରାରେ କ'ଣ ଆସିବାକୁ କିଏ ମନା କରିବ ଖଡିରତ୍ନ ମହାଶୟ ।

ଅଖିଳ : ଆଜ୍ଞା ଆପଣ (ନମସ୍କାର କରି) ଆମର ପରମ ସୌଭାଗ୍ୟ ଆପଣ ସକାଳୁ ସକାଳୁ ଆମ ଘରେ ପାଦ ଦେଇଛନ୍ତି ।

ଆଶା : ଇଏ ତା'ହେଲେ ପଦ୍ମାର ବୋଉ । ମୁଁ ଆପଣମାନଙ୍କ ସହିତ ଦୁଇପଦ କଥା ହେବାକୁ ଚାଲିଆସିଲି । (ପଦ୍ମା ବୋଉ ନମସ୍କାର କରିଛନ୍ତି) ସକାଳୁ ସକାଳୁ ଆପଣ କୁଆଡେ ବାହାରିଛନ୍ତି ବୋଧ ହୁଏ ?

ଅଖିଳ : ପଦ୍ମା ଫାର୍ମାସିଷ୍ଟ ପଢିବାକୁ ଚାହୁଁଛି । ତା'ର ଆଡମିସନ୍ ବିଷୟରେ ବୁଝାସୁଝା କରିବାକୁ ବାହାରିଥିଲୁ । ବସନ୍ତୁ, ବସ୍ ସମୟ ଆହୁରି ଘଣ୍ଟେ ବାକି ଅଛି ।

ଆଶା : ଠିକ୍ ଅଛି - ମୋର ପାଞ୍ଚ ମିନିଟର କାମ । ଆପଣ ଆରମ୍ଭ କରନ୍ତୁ ଖଡିରତ୍ନ ମହାଶୟ । ଆପଣଙ୍କ କହିବା ମୁତାବକ ମାହେନ୍ଦ୍ର ବେଳାରୁ ତ ଘରୁ ଗୋଡ କାଢିଛେ । ଦେଖିବା ଆପଣଙ୍କ ଗଣନା କ'ଣ ହେଉଛି ।

ଖଡିରତ୍ନ : ହଁ ହେଲା । ବୁଝିଲୁ ଅଖିଳ - ତୋ ଝିଅ ପଦ୍ମାକୁ ଡାକ୍ତର ବାବୁ - ଆଉ ବାବୁଙ୍କ ମା ପସନ୍ଦ କରିଛନ୍ତି ।

ଆଶା : ମୁଁ ତାକୁ ମୋ ଘରକୁ ବୋହୂ କରିନେବାକୁ ଚାହେଁ । ଆପଣ ଦୁଇଜଣ ସମ୍ମତି ଦେଲେ ହେଲା ।

(ହଠାତ୍ ଯେମିତି ସବୁକିଛି ବଦଳିଗଲା । ଯନ୍ତ୍ର ସଂଗୀତ ହଠାତ୍ ମଧ୍ୟ ଲୟରୁ ଦ୍ରୁତ ଲୟକୁ ପରିବର୍ତ୍ତନ କରି ଦୋଳିବା ଭଳି ପରିବେଷ ହେଇ ମନେ ହେଲା । ଅଖିଳ ଓ ପଦ୍ମାବୋଉ ଯେମିତି ସ୍ପନ୍ଦନହୀନ ହୋଇଗଲେ ।

ଖଡିରତ୍ନ : ଆରେ ତୁମେ ଦି' ଜଣ ବୋକାଙ୍କ ଭଳି ଚାହିଁଛ ଯେ କିଛି ଉତ୍ତର ଦେବନି ନା କାହିଁକି ?

ଅଖିଳ : ଆପଣ ବୋଧହୁଏ ଜାଣି ନାହାଁନ୍ତି । ଏ ଅଞ୍ଚଳରେ କୌଣସି ଲୋକ ଆମ ଘରେ ବନ୍ଧୁତା କରିବାକୁ ଚାହାଁନ୍ତି ନି ।



Digitized by PPRACHIN, SOA

ଆଶା : ଜାଣିଛି । କ'ଣ କାରଣ ପାଇଁ ସେମାନେ ବନ୍ଧୁ ବାନ୍ଧିବାକୁ ଚାହାଁନ୍ତି ନାହିଁ ସେ କଥା ମଧ୍ୟ ଜାଣିଛି । ପଦ୍ମା ବୋଉଙ୍କର ଏଇ ଦାଗ ମୋ ପୁଅ ମଧ୍ୟ ଦେଖିଛି । ସାଧାରଣ ରୋଗ ଭଳି ଏ ଗୋଟିଏ ରୋଗ ମାତ୍ର ।

ଅଖିଳ : ଏ କଥା ସମସ୍ତେ ମୁହଁରେ କହୁଛନ୍ତି କିନ୍ତୁ ଅସଲ ବେଳକୁ....।

ଆଶା : ମୋ ପୁଅ ସୂର୍ଯ୍ୟ କିନ୍ତୁ ଡାକ୍ତରୀ ବିଜ୍ଞାନର ଏ ସତ୍ୟକୁ ନିଷ୍ଠାର ସହ ବିଶ୍ୱାସ କରେ । ସେଇଥିପାଇଁ ଏ ପ୍ରସ୍ତାବରେ ସେ ରାଜି ହେଇଛି । ଆପଣମାନେ କୌଣସି ସନ୍ଦେହ ନ ରଖି କେବଳ ହଁ କରନ୍ତୁ ।
(ଅଖିଳ ଓ ପଦ୍ମା ବୋଉ ପରସ୍ପରକୁ ଚାହିଁ ରୁହନ୍ତି । ଉଭୟଙ୍କ ଆଖିରେ ଲୁହ ଜମିଯାଏ । ସେମାନେ ସେମାନଙ୍କ ଅନ୍ତରର କୋହ ଚାପି ରଖିବାକୁ ଯେମିତି ଅକ୍ଷମ....)

ଖଡିରତ୍ନ : ମୁଁ ଗଣନା କରି ଦେଖିଛି ଗତ କାଲିଠାରୁ ପଦ୍ମାର ଦ୍ୱିତୀୟରେ ବୃହସ୍ପତି ଆଉ ନବମରେ ରବି ପ୍ରବେଶ କରିଛନ୍ତି । ସେମାନେ ହିଁ କରିବାକୁ ବାଧ୍ୟ । ଏ ବାହାଘର ବନ୍ଦ କରିବାକୁ କାହାର ପାବାର ନାହିଁ । ହେଲା...।

ଅଖିଳ : ସକାଳୁ ସକାଳୁ ଆମ ପାଇଁ ଏମିତି ଖୁସି ଖବର ନେଇ ଆପଣ ପହଁଞ୍ଚିବେ, ଆମେ ବିଶ୍ୱାସ କରିପାରିନୁ ଦାଦା....।

ଆଶା : ବାସ୍, କଥା ପକ୍‌କା ହେଲା ବୋଲି ମୁଁ ଧରି ନେଲି । ହେଲେ ଏ ଆନନ୍ଦ ମୁହୂର୍ତ୍ତରେ ମୋର ଝିଅ ଦେଖା ହେବା କଥା, ସେଇଟା ବାକି ରହିଲା ।

ଅଖିଳ : ପଦ୍ମା ମା ପଦ୍ମା....।
(ପଦ୍ମା ବଡ ଲଜ୍ଜାର ସହ ଆସି ଆଶା ଦେବୀଙ୍କ ପାଦ ଛୁଇଁ ପ୍ରଣାମ କରିଛି । ସେ ତାକୁ କୋଳକୁ ନେଇଛନ୍ତି ।)

ଆଶା : ମୋ ଘରେ ମୋ ଝିଅ ହେଇ ରହିବାକୁ ତୋର ଆପତ୍ତି ନାହିଁତ ମା ?

ଖଡିରତ୍ନ : ଆପତ୍ତି କରିବାକୁ ତା'ର ପାବାର ଅଛି ଯେ କରିବ । ଯା ନାଁ



Digitized by PPRACHIN, SOA

ପଦ୍ମାକୁ ଆପଣଙ୍କ ପୁଅଙ୍କ ନାଁ ସୂର୍ଯ୍ୟ । ସୂର୍ଯ୍ୟ କିରଣ ପଡିଲେ ପଦ୍ମ ପାଖୁଡା ମେଲେଇ ହସିବ ହିଁ ହସିବ । ହେଇ ଏପଟକୁ ଚାହାଁନ୍ତୁ ସୂର୍ଯ୍ୟ ଉଦୟର ବେଳ ହେଇଗଲାଣି । ପୂର୍ବରେ ସିନ୍ଦୁରାଫାଟି ଲାଲ ହୋଇଗଲାଣି । ଆଉ ଏପଟେ ଦେଖନ୍ତୁ ଯା ମୁହଁରେ ହସର ପାଖୁଡା ଖୋଲିବାକୁ ଆରମ୍ଭ କଲାଣି । ଏପଟେ ମନ୍ଦିରରୁ ଶୁଭ ଶଙ୍ଖର ମଧୁର ଧ୍ୱନି ସହିତ ମଙ୍ଗଳ ଆଳତୀ ଭାଷି ଆସିଲାଣି । ତା'ମାନେ ଏ ଯୋଡିକୁ ଭଗବାନ ଆଗରୁ ଠିକ୍ କରିଦେଇଛନ୍ତି ବୋଲି ସଙ୍କେତ ଦେଲେଣି । ଏ ବାହାଘର କେହିବି ଅଟକାଇ ଦେବାର ପାବର ନାହିଁ । ହେଲା...।

(ପଦ୍ମ ତଳକୁ ମୁହଁ କରି ଚାହିଁ ରହିଥିଲା ଖଡିରତ୍ନ ଯାଇ ତା' ମୁହଁକୁ ଟେକି ଧରନ୍ତି । ପଦ୍ମା ଲାଜରେ ଝାଉଁଳି ପଡେ । ଅଖିଳ ଓ ପଦ୍ମାବୋଉ ଆଖିରୁ ଝର ଝର ଆନନ୍ଦାଶ୍ରୁ ଝରିବାକୁ ଲାଗେ । ପାଖ ମନ୍ଦିରର ଶଙ୍ଖଧ୍ୱନି ସହ ଘଣ୍ଟା, ଘଣ୍ଟିର ଶବ୍ଦ ଭାସିଆସେ । ମଞ୍ଚ ଅନ୍ଧାର ହେବାକୁ ଲାଗେ)







Digitized by PPRACHIN, SOA



## ଶ୍ରୀ ଦିଲ୍ଲୀଶ୍ୱର ମହାରଣା

ଜନ୍ମ : ୫ ନଭେମ୍ବର ୧୯୪୭
ପିତା : ୰ ଟଙ୍କଧର
ମାତା : ୰ ଇନ୍ଦୁମତୀ
ଗ୍ରାମ : ଗୋଡିଡିହ, ବଳରାମ ପ୍ରସାଦ
ଜି : ଢେଙ୍କାନାଳ

ସଙ୍ଗୀତ, ଚିତ୍ରାଙ୍କନ, କବିତା, ଅଭିନୟ, ନାଟ୍ୟନିର୍ଦ୍ଦେଶନା ଓ ନାଟ୍ୟରଚନା ଭଳି ବହୁବିଧ ସୃଜନାତ୍ମକ କଳାବିଭବରେ ନିଜର ଦକ୍ଷତା ଜାହିର କରି ନିଜ ପାଇଁ ଏକ ସତନ୍ତ୍ର ପରିଚୟ ସୃଷ୍ଟିକରିପାରିଥିବା ପ୍ରତିଭାଧର ବ୍ୟକ୍ତିତ୍ୱ ଶ୍ରୀଯୁକ୍ତ ମହାରଣା- ଓଡିଆ ନାଟ୍ୟଜଗତ ପାଇଁ ଏକ ସମ୍ମାନୀୟ ଶ୍ରଦ୍ଧା ମଣ୍ଡିତ ନାମ । ରାଜ୍ୟ ଓ ଜାତୀୟ ସ୍ତରରେ ବହୁବାର ପୁରସ୍କୃତ ଏଇ ଶିଳ୍ପୀ ନାଟ୍ୟ ନିର୍ଦ୍ଦେଶନା କ୍ଷେତ୍ରରେ ଜୀବନବ୍ୟାପି ଅବଦାନ ପାଇଁ " ଓଡିଶା ସଂଗୀତ ନାଟକ ଏକାଡେମୀ ପୁରସ୍କାର ୨୦୦୨" ଓ ନାଟକ 'ବାର୍ତ୍ତା' ପାଇଁ "ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ୨୦୦୪" ମଧ୍ୟ ହାସଲ କରିଛନ୍ତି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ନାଟ୍ୟାନୁଷ୍ଠାନ "କଳାପରିଷଦ", ଢେଙ୍କାନାଳ ଉଚ୍ଚାଙ୍ଗ ନାଟ୍ୟ ମଂଚନ ପାଇଁ ରାଜ୍ୟ ଓ ସର୍ବଭାରତୀୟ ସ୍ତରରେ କ୍ରମାଗତ ଭାବରେ ପୁରସ୍କୃତ ହୋଇ ସମକାଳୀନ ନାଟ୍ୟ ଜଗତରେ ଏକ ସତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି ।

ଏଇ ସଂକଳନରେ ସ୍ଥାନିତ ତାଙ୍କ ନାଟକ ଗୁଡିକ ବିତର୍କିତ ଦ୍ୱନ୍ଦ୍ୱ, ବୁକୁଭରା ହସ ଓ ନାଟକୀୟ ଉତ୍କଣ୍ଠା ଆଦି ଭାବ ଚେତନାରେ ଭରପୁର । ଆଶା ଏହାର ମଞ୍ଚ ପ୍ରଦର୍ଶନ ଦର୍ଶକମାନଙ୍କୁ ଯେମିତି ବିମୋହିତ କରିବ ପାଠକମାନଙ୍କୁ ସେମିତି ଆନନ୍ଦ ଦେବାରେ ସକ୍ଷମ ହେବ ।

ପ୍ରକାଶିକା

Digitized by PPRACHIN, SOA